ସଞ୍ଜ ହୋଇ ଗଲାଣି । ଜହ୍ନ ଉରାସି ଆସୁଛି । ସମୁଦ୍ର ଲହଡ଼ି ଅସମ୍ଭାଳ ହୋଇ, ଏତେ କୂଳ ଡେଇଁ ଗଲାଭଳି ହେଉଛି । କୂଳରେ ବୁଲୁଥିବା ଲୋକମାନଙ୍କ ଭିତରୁ ଯେଉଁମାନେ କଥାବାର୍ତ୍ତାରେ ବା ନିଜ ଚିନ୍ତାରେ ନିମଗ୍ନ ହୋଇ ସମୁଦ୍ରର ପ୍ରେମୋଲ୍ଲାସକୁ ଲକ୍ଷ୍ୟ କରୁ ନାହାନ୍ତି, ସେମାନଙ୍କୁ ଗର୍ବୀ ଅଥବା ଗମାର ଭାବି ତାଙ୍କ ଉପରକୁ ଲହଡ଼ି ମାଡ଼ିଯାଉଛି । ଯୋତା, ଲୁଗାପଟା ଭିଜିଯାଇ ସେମାନେ ହାଉଳି ଖାଇ ଉପରକୁ ପଳାଉଛନ୍ତି ଓ ବାଧ ହୋଇ ଥରେ ତରଙ୍ଗର ଲୀଳା ଆଡ଼କୁ ଆଖି ପକାଉଛନ୍ତି ।

କୁମୁଦିନୀ ଓ ଲାଲମୋହନ ନିଜ ଭିତରେ କଥାବାର୍ତ୍ତାରେ ଏପରି ତଦ୍‌ଗତ ଯେ ଥରେ ନୁହେଁ, ଦୁଇଥର ନୁହେଁ, କେଜାଣେ କେତେଥର ତାଙ୍କର ଦୃଷ୍ଟି ନିଜ ପ୍ରତି ଆକର୍ଷଣ କରିବାପାଇଁ ଲହଡ଼ି ଚେଷ୍ଟା କଲାଣି । ମାତ୍ର ସେଥିରେ ବ୍ୟର୍ଥ ହୋଇ ଶେଷରେ ସେମାନଙ୍କୁ ବୁଡ଼ାଇ ଦେବ ବୋଲି ଭାବି ଅଣ୍ଟା ପର୍ଯ୍ୟନ୍ତ ଉଠିଗଲା । ଏଥର ସେ ଦୁଇଜଣ ଚମକିପଡ଼ି ହାତ ଧରାଧରି ହୋଇ ଉପରକୁ ପଳାଇଲେ ଓ ନିଜର ଓଦା ଲୁଗାପଟାକୁ ସାଉଁଟିବାରେ ଲାଗିଲେ । ଲାଲମୋହନ ଲୁଗାକୁ ଚିପୁଡ଼ୁ ଚିପୁଡ଼ୁ କହିଲେ—'ସମୁଦ୍ର ଭଲ ଥରେ ମାଡ଼ି ଆସନ୍ତା—ଯେତେ ଆବର୍ଜନା ଏ ଦେହରେ ଅଛି

ସବୁକୁ ଧୋଇ ପୋଛି ନେଇ ନିଜ ଗର୍ଭରେ ପକାଇ ଦଅନ୍ତା । ପୁଣି ଏକ ନୂତନ ନିର୍ମଳ ସୃଷ୍ଟି ମଣିଷ ଉପଭୋଗ କରନ୍ତା ।' କୁମୁଦିନୀ ଜାଗି ଉଠି କହିଲା, 'ସେ କିଏ ନୀଚ ଲୋକ କି, ଯେ ନିଜ ମର୍ଯ୍ୟାଦା ଲଙ୍ଘନ କରିବ ?

ଏକ ବାଲିକୂଦ ଉପରକୁ ଯାଇ ଲାଲମୋହନ କୁମୁଦିନୀର ହାତ ଧରି ଟାଣି ନିଜେ ବସିଲେ ଓ ତାକୁ ବସାଇ ଦେଲେ । ବସିପଡି ପୁଣି ଦୁହିଙ୍କ ପୂର୍ବ କଥାବାର୍ତ୍ତା ଚଳାଇଲେ । ଧୀରେ ଧୀରେ ଲାଲମୋହନ ଆରମ୍ଭ କଲେ—"କେଜାଣେ କାହିଁକି ତୁମକୁ ଛାଡ଼ି ଯିବାକୁ ମନ ହୁଏ ନାହିଁ । ତୁମେ ପାଖରେ ଥିଲେ ଜୀବନ ପରିପୂର୍ଣ୍ଣ ଜଣା ପଡେ, ଅନ୍ୟଥା ଯେପରି ସବୁ ଅସମ୍ପୂର୍ଣ୍ଣ, କେହି ମରି ବା ହଜିଗଲେ ଯେପରି ଖାଲି ଖାଲି ଜଣାଯାଏ ।" କୁମୁଦିନୀ ଟିକିଏ ସଙ୍କୋଚ ଭାବରେ କହିଲେ, 'କାହିଁକି ତୁମେ ଏତେ କାମରେ ବ୍ୟସ୍ତ, ଏତେ ଉତ୍ତେଜନା ଭିତରେ ଜୀବନ ବିତାଉଛ—ତଥାପି କାହିଁକି ଆଉ ଜଣକ ସାଙ୍ଗ ଲୋଡୁଛ ?"

ଲାଲମୋହନ—"ସବୁ କାମ, ସବୁ ଉତ୍ତେଜନା ଭିତରେ ସେହି ଶୂନ୍ୟତା ଟିକକ ପ୍ରାଣପଣେ ଚେଷ୍ଟା କରି ନିଜର ପ୍ରତିଷ୍ଠା ଅକ୍ଷୁଣ୍ଣ ରଖି ଆସୁଛି ।"

କୁମୁଦିନୀ—"ଭଲ କରି ଭାବି ଦେଖ, ସେ କେବଳ ତୁମର ମନର ବିକାର । ଦେଶର ମୁକ୍ତି, ଦରିଦ୍ରଙ୍କ ସେବା, ଅତ୍ୟାଚାରର ପ୍ରତିରୋଧ—ଏ ସବୁ କାମରେ ଜଣେ ମାତି ରହିଲେ ବିନ୍ଦୁମାତ୍ର ଶୂନ୍ୟତା ଜୀବନରେ ରହିବ ନାହିଁ । ଯଦି ରହେ ତେବେ ଜଣାଯିବ ଯେ ତାର ସମସ୍ତ ପ୍ରାଣ ସେ ସବୁ କାମରେ ଲାଗି ନାହିଁ ।"

ଏ କଥାରେ ଲାଲମୋହନଙ୍କ ମନରେ ଟିକିଏ ଆଘାତ ଲାଗିଲା ପରି ହେଲା । ସେ ଟିକିଏ ଗମ୍ଭୀର ହୋଇଯାଇ କହିଲେ, "କୁମୁଦିନୀ ! ମୋ ନିଜ କଥା ମୁଁ କହିବି କଅଣ ? ମୁଁ ଯେତେବେଳେ ଦେଶ କାମରେ ଯୋଗ ଦିଏ, ସେତେବେଳେ ମୋତେ କମ ଭାବିବାକୁ ହୋଇ ନାହିଁ କେତେ ଆଶାର ମୂଳ କାଟି କରି, ମୁଁ ନିଜ ବଗିଚା ନିଜେ ଉଜାଡ଼

ଯାଉଛି, [illegible] ଉପାର୍ଜନ ଓ ସୁଖର ଜୀବନ ଯେ ଅତି ଦୂରରେ କାଳକାଳ ଦ୍ୱନ୍ଦ୍ୱଳ ବଳ ଦଣ୍ଡୁଥିବା ଅସ୍ପଷ୍ଟ ଗଛ ପରି ଆଗ ଭଗବାନଙ୍କୁ ବ ଦେଖାଯାଉଥିଲା ତା ନୁହେଁ, ଫଳନ୍ତି ଗଛ ମୂଳେ ଛିଡା ହୋଇ ହାତ ବଢ଼ାଇଲେହିଁ ଫଳ ଆଗ ଆଗ ହାତକୁ ଆସିଯାନ୍ତା, ଓ ଖାଇବାହିଁ ଯା ପରିଶ୍ରମ—ଏହି ଅବସ୍ଥାରେ ମୁଁ ସେ ଗଛ ଛାଡି ଦେଇଛି । ଗୃହସ୍ଥଙ୍କ ନିରାହାରଙ୍କ ହା ହା ଧ୍ୱନି—ଓ ହା ହା କାରରେ ସାନ୍ତ୍ୱନା ମିଳୁଛି, ଅନ୍ୟ ବାଟରେ ଅଭ୍ୟସ୍ତ ହେବାପାଇଁ ଉପଦେଶ । ଏହା ମୁଁ ସହ୍ୟ କରି ପାରିଲି ନାହିଁ । ଭାବିଲି ଏ ଜୀବନ ଯେହି ବୁଭୁକ୍ଷିତଙ୍କରହିଁ ସେବାରେ ଲାଗୁ—ଦଶବର୍ଷକାଳ ମୁଁ ସେଇଥିରେ ଲାଗିଛି । ଅନାହାର ଓ ଉଦ୍ବେଗ ରାଶି ଆପେ ଆପେ ଆସି ମୋର ସହଚର ହୋଇଛନ୍ତି । ଅନ୍ୟାୟର ନିରୋଧରେ ଲାଗି କେତେ ଯେ ଅପମାନ ମୋ ଭାଗ୍ୟରେ ଘଟିଛି ତାର ହିସାବ ନାହିଁ । ଥରେ ଦୁଇଥର ଜୀବନକୁ ମୁଁ ବିପଦାପନ୍ନ ମଧ କରିଛି···।”

କୁମୁଦନୀ—“ବର୍ତ୍ତମାନ କଣ ସେ ସବୁ କାମ ସରିଗଲାଣି ? ବର୍ତ୍ତମାନ କଣ ଦେଶରେ ଆଉ କିଛି ନାହିଁ ? ଅତ୍ୟାଗୃହ ପୂରାପୂରି ଲୋପ ପାଇ ଯାଇଛି ?”

ଲଲମୋହନ—“ସେ କାମର ତ ଆରମ୍ଭ ସୁଦ୍ଧା ହୋଇ ନାହିଁ । କିନ୍ତୁ ମୋ ପକ୍ଷରେ ମୁଁ ଏ ସବୁ କାମରେ ଜୀବନକୁ ଢାଳି ଦେଇ ମଧ୍ୟ ଦେଖାଣେ କାହିଁକି ମୋ ମନ ଡାକୁଛି କାହାରି ଜଣକ ସହିତ ଏହିପରି ନିଭୃତ ଆଳାପ କରନ୍ତି—କାହାରି ପାଖରେ ମନକୁ ଚିନ୍ତାଶୂନ୍ୟ ଭାବରେ ସମର୍ପି ଦିଅନ୍ତି, ସେହି ଅଭାବ·····ତା ତୁମ୍ଭଙ୍କୁ ପାଇଲେ ଯେପରି ମେଣ୍ଟି ଯାଏ ।”

କୁମୁଦନୀ—“ବୁଝୁଛି ତୁମର ମନୋଭାବ । ଏ ସମୁଦ୍ର ଲହରୀର ଘୁ ଘୁ ଗର୍ଜନ ଭିତରେ ପଦେ ଅଧେ ମଧୁର ସଙ୍ଗୀତ ଶୁଣିବାର ଅଭିଳାଷ କ'ଣ ମୋ ମନରେ ନାହିଁ—ମନୁଷ୍ୟ ମାତ୍ରକେ ସମସ୍ତଙ୍କର ସେ ଆକାଂକ୍ଷା ଅଛି !

କିନ୍ତୁ ସେ ସଙ୍ଗୀତର ଅଭାବରେ ମନକୁ ମାର ଦେଇ ଏହି ଜୀବନ ଭିତରେହିଁ ସରସତା ଖୋଜିବାକୁ ହେବ ।”

ଲଲମୋହନ କୁମୁଦିନୀଙ୍କର ହାତ ଧରି ହଲାଇ କହିଲେ, “ସତ କହ କୁମୁଦିନୀ, ମୋର ପ୍ରାଣ ତୁମ ପାଇଁ ଯେପରି ବ୍ୟାକୁଳ, ମୋ ପାଇଁ ସେହିପରି ତୁମର ହୁଏ କି ନା—ସତ କହ—ତୁମେ ଯଦି ନ କର ସେଥିରେ ମଧ୍ୟ ମୋର ଦୁଃଖ ନାହିଁ । କାରଣ କୌଣସି ପ୍ରତିଦାନର ଆଶା ନ ରଖି ତୁମ୍ଭଙ୍କୁ ମୋ ହୃଦୟ ଦାନ କରି ଯଥେଷ୍ଟ ଆନନ୍ଦ ପାଉଛି ।”

କୁମୁଦିନୀ ତଳକୁ ମୁହଁ କରି ବାଲି ଉପରେ ଆଙ୍ଗୁଳିରେ ଗାର କାଟିବାକୁ ଲାଗିଲେ—ମୁରୁକି ମୁରୁକି ହସୁଥାଏ—ମାତ୍ର ଆଖି ସଙ୍କୋଚରେ ବନ୍ଦ ହୋଇ ଯାଉଥାଏ । କିଛି ଉତ୍ତର ନ ମିଳିବାରୁ ଲଲମୋହନ ହାତ ବଢ଼ାଇ କୁମୁଦିନୀକୁ ପାଖକୁ ନେଇ ଆବେଗଭରେ ପଚାରିଲେ— “ସତ କହ, ମୁଁ କିଛି ମନେ କରିବି ନାହିଁ ।” କୁମୁଦିନୀ ସେହିପରି ଚାହିଁ ଅନାଇ ଅସ୍ପଷ୍ଟ ଭାବରେ କହିଲେ “ଭାଷାରୁ ତା ହୃଦୟ ଜାଣିବାର କଅଣ ଆଉ କିଛି ଉପାୟ ନାହିଁ ।” ଲଲମୋହନ ବ୍ୟଗ୍ର ହୋଇ କହିଲେ, “ଭାଷାହିଁ ହୃଦୟକୁ ନିର୍ଦ୍ଦିଷ୍ଟ ଆକାର ଦିଏ ।”

ହସି ହସି କୁମୁଦିନୀ କହିଲେ, “ଭାଷା ପରା ହୃଦୟକୁ ଲୁଚାଇବ ପାଇଁ, ପ୍ରତାରଣା ପାଇଁ ସିନା ଭାଷାର ଦରକାର ।” ଲଲମୋହନ ସେହିପରି ଜିଦ୍ କରି କହିଲେ, “ନା ଏ କ୍ଷେତ୍ରରେ ତା ହୁଏ ନାହିଁ—ଥରେ ତୁମ ନିଜ ମୁହଁରୁ ଶୁଣିବାକୁ ଚାହେଁ ।” କୁମୁଦିନୀ ସିଧା ହୋଇ ବସି ଟିକିଏ ଲଲମୋହନଙ୍କଠାରୁ ଘୁଞ୍ଚି ଗଲେ । ଗମ୍ଭୀର ହୋଇ କହିଲେ, “ମୋର ଜୀବନର କାହାଣୀ ମୁଁ ତୁମଙ୍କୁ କହି ନାହିଁ”—କେବେ କାହାଠାରେ କହିବି କି ଏ ଜୀବନରେ ତାହା କେବେ ଘଟିବ ନାହିଁ—ତାହା ସୁଦ୍ଧା ମୁଁ ଜାଣେ ନାହିଁ । ତେଣୁ ମୁଁ ଯେତେବେଳେ ତୁମର ପ୍ରଶ୍ନର ଉତ୍ତର କରିବାକୁ ବସୁଛି—କେତେ ଲହରୀ ଯେ ଏ ଛାତିରେ ଆଘାତ କରୁଛି

ତାହାଁ ତୁମେ ବୁଝିପାରିବ ନାହିଁ ।" ଏତିକି କହି ସେ ନୀରବ ହୋଇ
ଗଲା । ଲାଲମୋହନ ତା ମୁହଁକୁ ନିରେଖିକି ଅନାଇ ତାର ମନୋଭାବ
ବୁଝିବା ପାଇଁ ଚେଷ୍ଟା କରୁଥାନ୍ତି । କଅଣ ସେ ବୁଝିଲେ କେଜାଣେ,
ସେ ପୁଣି କିଛି ପଚାରିଲେ "କଅଣ କହିବ ନାହିଁ ?" କୁମୁଦିନୀ
ଆଡେଇକି ଲାଲମୋହନଙ୍କୁ ଅନାଇ ପୁଣି ମୁହଁ ବୁଲେଇ ଦେଇ କହିଲେ,
"ତୁମ ସାଙ୍ଗରେ ଆଳାପ କଲେ ବାସ୍ତବିକ ଜୀବନର ଅନେକ ଚିନ୍ତା
ଭୁଲିଯାଏ—" ଏହା କହି ଦୀର୍ଘ ନିଶ୍ୱାସ ପକାଇଲେ । ଲାଲମୋହନ
ନିକଟକୁ ଘୁଞ୍ଚି ଯାଇ ତା ହାତ ଆଉଁସିବାକୁ ଲାଗିଲେ । ଭାବିଲେ
ବୋଧହୁଏ ତାଙ୍କର କୌଣସି ପୂର୍ବ ଘଟଣା ମନେ ପଡ଼ୁଛି । କୋମଳ-
ଭାବରେ ଧୀରେ ଧୀରେ କହିଲେ, "ସ୍ମୃତି ହିଁ ମନୁଷ୍ୟର ପ୍ରଧାନ ଶତ୍ରୁ ।
ବର୍ଷା ପଡିଲା ବା ସଫା ଆକାଶରେ ଖଣ୍ଡେ ଖଣ୍ଡେ ବାଦଲ ବୁଲିଗଲା ପରି,
ତାର ଦୁଆରେ ଅତୀତ ଆସି ବଳେ ବଳେ ଉଙ୍କି ମାରି ବର୍ତ୍ତମାନ
ଆନନ୍ଦକୁ ବାଧା ଦିଏ—ଭୁଲିଯାଅ ଅତୀତକୁ । ବର୍ତ୍ତମାନକୁ ଉପଭୋଗ କର,
ଭବିଷ୍ୟତ ତ ସମୁଦ୍ର ପରି ଆଗରେ ପଡିଛି ।" କୁମୁଦିନୀ ହସି ହସି କହିଲା,
"ତୁମେ ତ ମୋତେ ପ୍ରଥମେ ହିନ୍ଦୁସ୍ଥାନୀ ବାଳିକା ବୋଲି ଜାଣିଥିଲ ।"

ଲାଲମୋହନ—"ତୁମେ ସେହିପରି ପରିଷ୍କାର ଭାବେ ଉର୍ଦ୍ଦୁ କହୁଥିଲ ।"

କୁମୁଦିନୀ—"ପୁଣି ଯେତେବେଳେ ଓଡିଆଣି ବୋଲି ଜାଣିଲ, ତୁମର କୁତୁହଳ ଏତେ ସହଜରେ ଶାନ୍ତ କପରି ହୋଇଗଲା ।"

ଲାଲମୋହନ—"ଯେତିକି ତୁମ ସମ୍ବନ୍ଧେ ଜାଣିଲି ସେହିଥିରେ ମୁଁ ବୋଧ ହୋଇଗଲି । ଆଉ ମୁଁ ବେଶୀ କିଛି ଜାଣିବା ପାଇଁ ଇଚ୍ଛା କଲି ନାହିଁ ।"

କୁମୁଦିନୀ—"ମୋର ସମ୍ବନ୍ଧେ କଣ ଜାଣିଛ ?"

ଲାଲମୋହନ—"କହିବି, ତୁମ ମୁହଁ ଉପରେ କହୁଛି ବୋଲି ନୁହେଁ, ମୋର ବିଶ୍ୱାସ—ଓଡ଼ିଶାରେ ତୁମଭଳି ସ୍ତ୍ରୀ ନାହାନ୍ତି କହିଲେ ଚଳେ । କାହାର ପ୍ରାଣ ଗଢିବାର ଦୀର୍ଘ ନିଶ୍ୱାସରେ ଏତେ ବିଚଳିତ ହୋଇ

ଉଠେ ? କିଏ ତା ଜୀବନକୁ ସ୍ୱପ୍ନବର ଘୁଣ୍ଡିବାସୁ ଭିତରେ ପଶାଇ ଦେବାକୁ ଇଚ୍ଛାକରେ ! ଏହି ଗୁଣ ତୁମର ଅଛି ବୋଲି ମୋର ଆଶା । ତୁମଠି ତାର ପ୍ରତିବିମ୍ବ ଦେଖିବାକୁ ପାଇଲି । ତେଣୁ ପରସ୍ପର ସହିତ ଆହୁରି ମିଶିବା ପାଇଁ ପ୍ରବଳ ବାସନା ଜାଗି ଉଠିଲା ।"

କୁମୁଦିନୀ—"କିନ୍ତୁ ମୋର ପୂର୍ବ ବୃତ୍ତାନ୍ତ ଶୁଣିଲେ ତୁମର ବୋଧହୁଏ ମୋ ପ୍ରତି ଘୃଣା ହେବ ।"

ଲଳିତମୋହନ—"କେବେହେଁ ନୁହେଁ ! ଯେଉଁ ଦିନ ତୁମକୁ ଘୃଣା କରିବାକୁ ଏ ମନ ଚାହିଁବ ତା ପୂର୍ବରୁ ସେ ମୃତ୍ୟୁକୁ ଧରି ରଖିଥିବା ଏ ଶରୀର ନ ଥିବ ।"

କୁମୁଦିନୀ—"ମୁଁ ଜାଣେ ମୋର ଅତୀତ ଘୃଣ୍ୟ—" ଲଳିତମୋହନ କୁମୁଦିନୀର ପାଟିରେ ହାତ ଦେଇ କହିଲେ, "ଆଉ, ଆଉ, କହିବାର ପ୍ରୟୋଜନ ନାହିଁ । ଫୁଲଟିକୁ ଦେଖିଲେ ଯା ମନରେ ପ୍ରଶ୍ନ ଉଠେ ଯେ କି ଖତ ସେ ଗଛ ମୂଳରେ ଦିଆ ହୋଇଥିଲା, ଯେଉଁଥିରୁ ଏ ଫୁଲ ଫୁଟିଛି, ସେ ମଣିଷ ନୁହେଁ, ସେ ମାଛଠାରୁ ଆହୁରି ହୀନ ।" କୁମୁଦିନୀ ଲଳିତମୋହନଙ୍କ ବେକରେ ହାତ ପକାଇ କହିଲେ—"ନାଁ, ନାଁ-ମୋର ଅତୀତ ତୁମ୍ଭେ କଳ୍ପନା କରି ପାରିବ ନାହିଁ ।"

ଲଳିତ ମୋହନ—"ମୁଁ କଳ୍ପନା କରିବାକୁ ଚାହେଁ ନାହିଁ । ତମେ ଭାବୁଛ ଯେ ଏପରି କହିଲେ ମୁଁ କୁତୂହଳୀ ହୋଇ ତୁମର ଇତିହାସ ଜାଣିବା ପାଇଁ ଇଚ୍ଛା କରିବି ଓ ତେଣିକି ତୁମେ ନାହିଁ କରି ମୋର କୁତୂହଳରେ ବାଧା ଦେଇ ଆନନ୍ଦ ଉପଭୋଗ କରିବ— ମୁଁ ଏ ଫାନ୍ଦରେ ପଡ଼ିବି ନାହିଁ ।"

କୁମୁଦିନୀ ହସି ହସି କହିଲେ, "ମୁଁ ଚାହେଁ ତୁମ୍ଭେ ମୋ ଫାନ୍ଦରେ ନ ପଡ଼— ତୁମ୍ଭେ ଫାନ୍ଦ ଭିତରକୁ ପଶି ଆସୁଛ—ମୁଁ ତୁମକୁ ବାହାର କରିବାକୁ ଚାହେଁ ।"

ଲାଲ ମୋହନ କୁମୁଦିନୀଙ୍କୁ ପାଖକୁ ଅଉଜାଇ ଦେଇ ହସି ହସି କହିଲେ, "କଥା କହିବାର ଏତେ ତୃଷ୍ଣା—ମୁଁ ହାର ମାନୁଛି ।"

କୁମୁଦିନୀ କହିଲେ, "ଆସିଲ ଏ ଓଦା ଲୁଗା ପିନ୍ଧି—କେତେ ସମୟ ଏଠି ବସିଥିବ ।"

ଲାଲ ମୋହନ ଘଡ଼ି ଦେଖିଲେ ଯେ ଆଠଟା ବାଜିବାକୁ ପନ୍ଦର ମିନିଟ ଅଛି । ତର ତର ହୋଇ ଉଠି ପଡ଼ି କହିଲେ, "ବେଳ ହୋଇ ଗଲାଣି —ଚାଲଯିବା । ମୋତେ ଆଜ ରାତ୍ରରେ ବାଲେଶ୍ୱର ଯିବାକୁ ହେବ ।" କୁମୁଦିନୀ ଛିଡ଼ାହୋଇ 'ପଚାରିଲେ, କାମ ?' ଲାଲମୋହନ ଟିକିଏ ବ୍ୟସ୍ତହୋଇ ପଡ଼ି କହିଲେ "ନୀଳଗିରି ଗଡ଼ଜାତରେ ଜବର ପ୍ରଜା ଆନ୍ଦୋଳନ ଲାଗିଛି—ବର୍ତ୍ତମାନ ସବୁଆଡ଼େ ଗଡ଼ଜାତରେ ପ୍ରଜା ଜାଗି ଉଠୁଛନ୍ତି । ଅମୂହୁଁା ଘର ଭିତରେ ପଥର କାଲି ଭାଙ୍ଗି ଟିକିଏ ଆଲୁଅ ପହଞ୍ଚିଛି ।" ଏତିକି କହି କୁମୁଦିନୀର ହାତ ଧରି ଯିବାକୁ ଆରମ୍ଭ କଲେ । କୁମୁଦିନୀ ଧୀରେ ଧୀରେ କହିଲେ, "କାଲି ନ ଗଲେ କଣ ଚଳିବ ନାହିଁ ? କି ସୁନ୍ଦର ଆଜିକାଲି ପୁରୀରେ ଏ ସମୁଦ୍ର କୂଳରେ ଚନ୍ଦ୍ରିକା ରାତ୍ରି ଉପଭୋଗ ଖୋଜୁଛି, ଅଥଚ ପୁଣି ତାକୁ ଫୋପାଡ଼ି ଦେଉଛ ।" ଲାଲ ମୋହନ ତାଙ୍କୁ ଚାପିଧରି ଛିଡ଼ାହୋଇ ଯାଇ କହିଲେ "କୁମୁଦିନୀ, ମୁଁ ଜାଣେ ତୁମେ ମୋ କର୍ତ୍ତବ୍ୟରେ କେବେ ବାଧା ଦେବ ନାହିଁ । ପବନ କହିବ—ଶ୍ରାନ୍ତ କ୍ଲାନ୍ତ ହୋଇ ପଡ଼ି କେତେ ବେଳେ ଫୁଲକୁ ଚୁମ୍ବି ଦେଇଯିବ— ମାତ୍ର ସେ ଫୁଲ ଯୋଗୁଁ ବହିବା ବନ୍ଦ କରି ପାରିବ ନାହିଁ ।" ଏତିକି କହି ଚାଲିଲେ ।

କୁମୁଦିନୀ ହସି କହିଲେ, "ମୁଁ ଜାଣେ ସେ କଥା, କର୍ତ୍ତବ୍ୟରେ ତ୍ରୁଟି କର ନାହିଁ ବୋଲି ମୁଁ ତୁମକୁ ସ୍ନେହ କରେ ।

ଲାଲମୋହନ ଜାଗି ଉଠି ତାଳିମାରି କହିଲେ, "ଶେଷରେ ଭାଷାରେ ହୃଦୟ ପ୍ରକାଶ ପାଇଲା ତ ?"

---

ସହର ପାଖ ହୋଇ ଆସୁଥାଏ ଓ ଲୋକ ଗହଳ ବଢୁଥାଏ । ଲାଲ ମୋହନ ଓ କୁମୁଦିନୀ ନିଜକୁ ସଂଯତ କରି ଶେଷରେ ଦୋଳମଣ୍ଡପ ସାହି ଛକ ଉପରେ ପହଞ୍ଚିବା ବେଳକୁ ଦୁହେଁ ଯେପରି ପରସ୍ପର ଅପରିଚିତ ଦୁଇଜଣ, ଏପରି ହୋଇଗଲେ । ବିବାହିତ ସ୍ତ୍ରୀ ପୁରୁଷ ନିଜ ଦେଶରେ ପ୍ରକାଶ୍ୟ ଭାବରେ ଆମୋଦ ପ୍ରମୋଦ ବା ଘନିଷ୍ଠ ଆଳାପ କଲେ ଯେତେବେଳେ ଲୋକଙ୍କ ଆଖିକୁ ଠେକୁଛି, ସେତେବେଳେ ପ୍ରଚଳିତ ରୀତିକୁ ମାନି ଲାଲ ମୋହନ ଓ କୁମୁଦିନୀ ସଂଯତ ହୋଇ ଯିବାରେ ବିଚିତ୍ର କିଛି ନାହିଁ । ଛକ ଉପରେ ଲାଲ ମୋହନ ଅଳ୍ପ କଥାରେ ବିଦାୟ ନେଲେ—"ମୁଁ ଯାଉଛି, କେବେ ଫେରିବି ଠିକଣା ନାହିଁ-ଚିଠି ଦେବି" —ଏତିକି କହି ଦ୍ରୁତଗତିରେ ହଜାରମଲ୍ଲ ଧର୍ମଶାଳା ଆଡ଼କୁ ଚାଲିଲେ । ଛକଠୁ ଅଳ୍ପ ଦୂରରେ ଉଚପକା ପିଣ୍ଡା ଥିବା ଗୋଟିଏ ଘରକୁ କୁମୁଦିନୀ ଗଲେ । ଏହି ଘରେ ତାଙ୍କର ଅବସ୍ଥାନ । ଘରଟି ଭଡ଼ା ନେଇଛନ୍ତି । ଏପାଖ ସେପାଖ ନାନା ସ୍ଥାନର ଯାତ୍ରୀ ଆସି ଭଡ଼ା ଦେଇ ରହୁଛନ୍ତି ଓ ଯାଉଛନ୍ତି । ମାତ୍ର କୁମୁଦିନୀ ପ୍ରାୟ ଛଅମାସ ହେଲା ଏ ଘରଭଡ଼ା ନେଇଅଛନ୍ତି । ସାଙ୍ଗରେ ଜଣେ ହିନ୍ଦୁସ୍ଥାନୀ ଚାକର ଅଛି । ଆଉ ସେ ଘରେ କେହି ନାହାନ୍ତି । ଆଖ

ପାଖ-ସବୁଲୋକେ କୁମୁଦିନୀଙ୍କୁ ଜାଣନ୍ତି ଯେ ସେ ଜଣେ ପଶ୍ଚିମା ବିଧବା ଓ ନିଜର କର୍ମଦୋଷ ମୋଚନ ପାଇଁ ଶ୍ରୀକ୍ଷେତ୍ରରେ ଆସି ଅଛନ୍ତି । ଏହିପରି ଶହ ଶହ ବିଧବା ପୁରୀରେ ଆସି ଅଛନ୍ତି—କିଏ କାହା ଖବର ବୁଝୁଛି । ତହିଁରେ ପୁଣି ଜଣେ ପଶ୍ଚିମା ସ୍ତ୍ରୀ ଲୋକ । ଏଣୁ କୁମୁଦିନୀ ପ୍ରତି କାହାର ସେପରି ନଜର ନାହିଁ । ପ୍ରଥମେ ଆସି ରହିବା ବେଳେ କେତେକ ପଣ୍ଡା ପଡ଼ିଆରି ମନେ କରିଥିଲେ ଯେ ଏ ପଶ୍ଚିମା ଯାତ୍ରୀଠୁଁ କିଛି ଲାଭ ଉଠାଇବେ । ମାତ୍ର ସେମାନେ ନିଜ ବ୍ୟବସାୟରେ ଏତେ ଧୂର୍ତ୍ତ ଯେ ଯେତେ-ବେଳେ ସେମାନେ କୁମୁଦିନୀକୁ ଜଣେ ଶିକ୍ଷିତା ରମଣୀ ବୋଲି ଜାଣିଲେ ଓ ଏକଥା ଜାଣିବାକୁ ବେଶୀ ଡେରି ହେଲା ନାହିଁ ସେତେବେଳେ ସେମାନେ ନିରସ୍ତ ପଡ଼ିଲେ । ତା ପରେ ଆଉ କେହି ଲକ୍ଷ୍ୟ କରି ନାହାନ୍ତି ଯେ, କୁମୁଦିନୀ ଦିନେ ହେଲେ ସୁଦ୍ଧା ମନ୍ଦିରକୁ ଦର୍ଶନ ପାଇଁ ଯାଆନ୍ତି ନାହିଁ କିମ୍ବା ସକାଳୁ ଗାଧୋଇ 'ମାଳା ଜପ ଇତ୍ୟାଦି କରନ୍ତି ନାହିଁ । ନାମାବଳି ଉପରେ ପକାଇ କୁଆଡ଼େ ବାହାରନ୍ତି ନାହିଁ । 'ମୋଟ କଥା ଜଣେ କେହି ପଶ୍ଚିମା ଯାତ୍ରୀ କୁଆଡ଼ୁ ଆସିଅଛି, ଏତିକି ଛଡ଼ା କୁମୁଦିନୀ ସମ୍ବନ୍ଧରେ ଆଉ କେହି କିଛି ଜାଣନ୍ତି ନାହିଁ ବା ଜାଣିବାରେ କାହାର କିଛି ସ୍ପୃହା ନାହିଁ ।

ବାସ୍ତବିକ ଏତେ ପରିଷ୍କାର ଭାବରେ କୁମୁଦିନୀ ହିନ୍ଦୀ କହନ୍ତି ଯେ ତାକୁ 'ସହଜରେ ଜଣେ ଓଡ଼ିଆଣି ବୋଲି କେହି ଜାଣି ପାରିବ ନାହିଁ । ଏପରିକି ତାଙ୍କର ଯେଉଁ ହିନ୍ଦୁସ୍ଥାନୀ ଚାକର ଅଛି, ସେ ମଧ୍ୟ ତାକୁ ଓଡ଼ିଆଣି ବୋଲି ବହୁ ଦିନପରେ ଜାଣିଲା । ଚାଲି ଚଳଣ ସବୁ ହିନ୍ଦୁସ୍ଥାନୀ ଢଙ୍ଗରେ । ବେଶଭୂଷା ମଧ୍ୟ ସେହି ପରି । ବୟସ ୨୪।୨୫ ବର୍ଷ ହେବ । ଗୋରା ମୁହଁରେ କୌଣସି ଅଳଙ୍କାର ନ ଥିବାରୁ ତାଙ୍କୁ ବିଧବା ବୋଲି ଭାବିବା ସ୍ୱାଭାବିକ । ମାତ୍ର ତାଙ୍କ ମୁହଁରେ ଏକ ପ୍ରକାର ଗାମ୍ଭୀର୍ଯ୍ୟ ଅଛି ଯାହା ତାଙ୍କ ଯୁବତୀର ମୁଖ ମଣ୍ଡଳରେ ପ୍ରୌଢତ୍ୱର ଛାୟା ପକାଇ ଦେଇଛି ।

ସମୁଦ୍ର କୂଳରୁ ଫେରିବାପରେ ଲୁଗାପଟା ପାଲଟି ଗୃକଟାକୁ 'ବାହାଦୁର' ଡକେଲ, "ସୁଦର୍ଶନ : ଖାନା ଲେଆଓ—" "ଜୀ ହୁଜୁର"। ସୁଦର୍ଶନ ତୟାର ହେବାରେ ଲାଗିଲା । ପିଣ୍ଡାରେ ଖଣ୍ଡେ ଚୌକି ପଡ଼ିଥିଲା । ତାରି ଉପରେ ବସି ବହୁକ୍ଷଣ କଅଣ କୁମୁଦନୀ ଚିନ୍ତା କରିବାରେ ଲାଗିଲା । ଏପରି କି ସୁଦର୍ଶନ ବାରମ୍ବାର "ଖାନା ତୟାର ହୈ" କହିଲେ ସୁଦ୍ଧା ଚିନ୍ତା ମଗ୍ନ କୁମୁଦନୀ କୌଣସି ଉତ୍ତର ଦେଲେ ନାହିଁ । ଶେଷରେ ଉଠି ଯାଇ ତର ତରେ ହୋଇ ଖାଇ ପିଇ ଦେଇ ପୁଣି ସେଇଠି ବସି 'ସେହିପରି ଜଳକୁ ଅନାଇ ଭାବିବାରେ ଲାଗିଥାନ୍ତି । ପୁଣି ହଠାତ୍ ଉଠିଯାଇ ଭିତରେ ଚମଡ଼ା ହାତବାକ୍ସରୁ ଚିଠି ଲେଖା କାଗଜ ଓ ଫାଉଣ୍ଟେନ୍ ପେନ୍ କାଢ଼ି ଏକ ପତ୍ର ଲେଖିଲେ । ଲେଖିସାରି ଲଫାପାରେ ବନ୍ଦକରି ସୁଦର୍ଶନକୁ ଡାକି କହିଲେ, "ତୋମ୍ହାର ଖାନା ପିନା ହୋ ଗୟା ହୈ ?" ସୁଦର୍ଶନ "ଜୀ ହୁଜୁର" କହିବାରୁ ସେ ଚିଠି ଖଣ୍ଡିକ ତା ହାତକୁ ବଢ଼ାଇ ଦେଇ କହିଲେ, "ଧରମ ଶାଳା ମେଁ ଓ ଯୋ ବାବୁ ହୈ ଉନ୍‌କୋ ଏ ଚିଠି ଦେବୋ ।" "ଜୀ ହୁଜୁର" କହି ସୁଦର୍ଶନ ସାଙ୍ଗେ ସାଙ୍ଗେ ବାହାରି ଗଲା ।

ଲାଲ ମୋହନ ବରାବର ଆସି ଧର୍ମଶାଳାରେ ରହନ୍ତି ଓ ଧର୍ମ-ଶାଳାର ତତ୍ତ୍ୱାବଧାରକଙ୍କ ସହିତ ବନ୍ଦୋବସ୍ତ କରି ଦୋତାଲା ଉପରେ କୋଠିଏ ବଖରାରେ ସେ ନିଜ ପାଇଁ ପୃଥକ କରି ରଖିଛନ୍ତି । ଯେବେ ଆସିଲେ ସେଇଠି ରହନ୍ତି । କେତେଥର ସୁଦର୍ଶନ ସେଠିକି ଯାଇଛି । ଏଥର ମଧ୍ୟ ସିଧା ଯାଇ ଲାଲ ମୋହନଙ୍କୁ ତାଙ୍କ ବଖରାରେ ଚିଠିଦେଇ ଆସିଲା । ସେଠି ଆହୁରି କେତେ ଲୋକ ବସିଥିଲେ । ସୁଦର୍ଶନକୁ ଅନାଇ ଦେଇ ଲାଲ ମୋହନ ବାହାରକୁ ଚାଲି ଆସିଲେ ଓ ଚିଠି ଖଣ୍ଡିକ ନେଇ କହିଲେ, "ବୋଲ ଦେନା, ମେଁ ରାତେର ଗାଡ଼ି ଫେଲ ହୋ ଗୟା— ଖାଲଟେର ଗାଡ଼ି ମେ ଯାଉଁଗା ।" "ଜୀ ହୁଜୁର" କହି ସୁଦର୍ଶନ ସଲାମ କରି ଚାଲିଲା । ଚିଠିଖଣ୍ଡ ହଠାତ୍ ଖୋଲି ପଢ଼ିବେ ବୋଲି ମନ କରୁଥିଲେ, ଉପସ୍ଥିତ ଲୋକଙ୍କ ସଙ୍ଗରେ ଆଲୋଚନାକୁ ବଡ଼ ମନେ କରି ଚିଠିଖଣ୍ଡିକ ନିଜ ପକେଟରେ ରଖିଲେ । ଯେଉଁମାନେ ସେଠାରେ ଥିଲେ ସେମାନେ

ସମସ୍ତେ ପ୍ରାୟ ଦେଶର କାମ କରନ୍ତି । ସମସ୍ତଙ୍କୁ ନାନାଭାବେ ଉତ୍ସାହ ଓ ପରାମର୍ଶ ଦେଇ ବିଦାୟ ଦେବା ପରେ ଚିଠିଖଣ୍ଡ କାଢି ପଢ଼ିଲେ ।

## ପ୍ରିୟ ବନ୍ଧୁ—

"ଏଇ କଥାବାର୍ତ୍ତା କରିଆସି ପୁଣି ସାଙ୍ଗେ ସାଙ୍ଗେ ଚିଠି ଲେଖିବାକୁ ସଙ୍କୋଚ ବୋଧ ହେଉଛି । ମାତ୍ର କରିବି କଣ ? ମନ ମାନୁ ନାହିଁ ତେଣୁ ଲେଖୁଛି—କେ ଜାଣେ କାହିଁକି ଆଜି ତୁମ ଚାଲି ଯିବାଟା ମୋତେ ଦୁଃଖ ଦେଲା । କେତେଦିନ ଏପରି ଆସୁଥିବ ଯାଉଥିବ; ମୋତେ ବାରମ୍ବାର ପଚାରୁ ଆଜି ମଧ୍ୟ ପଚାରୁଥିଲ । ମୁଁ ତୁମଙ୍କୁ ହୃଦୟର ସହ ସ୍ନେହ କରେ କି ନାଁ ? ସେ କଥା କଣ ଜାଣିବାକୁ ବାକି ଅଛି । ଯେଉଁ ଦିନ କଲିକତାରେ ସେ ସଭାରେ ପ୍ରଥମ ଦେଖା ହେଲା, ତା ପରେ କ୍ରମଶଃ ତୁମର ମୋର ଯେଉଁ ଆଳାପ ପରିଚୟ ହେଲା, ସେହିଦିନଠୁ ମୋ ମନ କହୁଛି ଯେ ମୁଁ ଜଣେ ସାଥି ପାଇଛି । ତଥାପି ପୁଣି ଯେପରି ମନରୁ ଆଉ ଗୋଟିଏ କିଛି କହୁଛି, ନାଁ ଏକାକୀ ଜୀବନ ହିଁ ଶ୍ରେୟସ୍କର । ଏ ଦୁଇ ପ୍ରକାର ଅନ୍ତର୍ନିନାଦ ଭିତରେ ମୁଁ ଟଣା ଟଣି ହେଉଛି । ତୁମର ମଧ୍ୟ ଏ ଆସିବା ଓ ପୁଣି ଚାଲିଯିବା, ଏ ଟଣା ଟଣିକୁ ବଢ଼ାଇ ଦେଉଛି । ମୋର ମନେ ହୁଏ ତୁମେ ଯଦି କିଛି କାଳ ରହି ଯାଆନ୍ତ ତେବେ ମୁଁ ଗୋଟିଏ ସିଦ୍ଧାନ୍ତରେ ପହୁଞ୍ଚି ଯାଆନ୍ତି । ସେ ସିଦ୍ଧାନ୍ତ କଣ ତାହା ତୁମେ ବୁଝି ପାରୁଥିବ ।

ଆଉ ଏକ କଥା ମୋ ମନରେ ଆଘାତ ଦେଉଛି, ତୁମେ ଜାଣ ମୋର ଜୀବନ ସମାଜର ହେବା ପାଇଁ ଉତ୍ସର୍ଗୀକୃତ । ମୁଁ ମଧ୍ୟ ଅତ୍ୟାଚାରିରେ ସହାୟ ହେବା ପାଇଁ ଓ ଦୁଃଖୀର ସେବା କରିବା ପାଇଁ ଜୀବନର ବ୍ରତ କରିଛି; ମାତ୍ର ତୁମ ସହିତ ମୋର ଯେବେ ଦେଖାହୁଏ, ବହୁ ସରସ କଥା ତୁମେ କହ, କିନ୍ତୁ କେବେ ତ ସେ ବିଷୟ ଆଲୋଚନା କର ନାହିଁ । ସେହି ହେତୁରୁ ବୋଧହୁଏ ତୁମ ଭିତରେ ଓ ମୋ ଭିତରେ ବ୍ୟବଧାନ ରହି ଯାଉଛି । ଗଡ଼ଜାତ ଅତ୍ୟାଚାରର ପ୍ରତିରୋଧ କରିବାକୁ ତୁମେ

ଯାଉଛ । ମୁଁ କଅଣ ସେଥିରେ ସହାୟ ହୋଇ ପାରନ୍ତି ନାହିଁ—'ଦେଶ ପାଇଁ ତୁମେ ଜୀବନ ଦେଇପାର ! ମୁଁ କଅଣ ସେଥିରେ ଅକ୍ଷମ ବୋଲି ଭାବ ?

ଆଉ ବେଶୀ ଅଭାବ ନାହିଁ । ତୁମର ବଚନ ଉପରେ ମୁଁ ସବୁ ଛାଡ଼ ଦେଉଛି । ଇତି ।

ତୁମର

କୁମୁଦିନୀ

ଚିଠିଖଣ୍ଡ ଦୁଇ ତିନି ଥର ଲାଲ ମୋହନ ପଢ଼ି ଖଟିଆ ଉପରେ ପଡ଼ି ବହୁ ସମୟ ଚିନ୍ତା କଲେ । ମନ ହେଉଥାଏ ଯିବା ବନ୍ଦ କରି ଦେବା ପାଇଁ—ବାସ୍ତବିକ୍ ଜଣେ ନାନା କାମରେ ବ୍ୟାପୃତ । ମଝିରେ ମଝିରେ ଥରେ ଅଧେ ଆସି ପ୍ରେମର ଆଲୋଚନା ଗୋଟାଏ ଖାପ ଛଡ଼ା କଥା ଭଳି ତାଙ୍କୁ ବୋଧ ହେଉଥାଏ । ବହୁ ସମୟ ଚିନ୍ତା କରି ସେ ସ୍ଥିର କଲେ ଯେ, ନାଁ, ସେ ରହିବେ ନାହିଁ । ଯିବେ ଓ ବୁଝାଇ ସୁଝାଇ ବାଲେଶ୍ୱରରୁ ଖଣ୍ଡେ ପତ୍ର ସେ କୁମୁଦିନୀଙ୍କୁ ଦେବେ । ଉଠି ପଡ଼ି ଘଡ଼ି ଦେଖିଲେ ଯେ, ତାଳଚେର ଗାଡ଼ି ସମୟ ହୋଇ ଆସୁଛି—ଆଗରୁ ବନ୍ଦୋବସ୍ତ କରିଥିବା ଗାଡ଼ି ବାଲା ତଳେ ପାହି ଜାଲଣି । ଆଉ ଡେରି ନକରି ସେ ବାହାରି ଗଲେ ।

---

ନୀଳଗିରିର ପ୍ରଜାଏ ଏପରି ମେଳି କରିଛନ୍ତି ଯେ ହାଟ ବାଟ, ଦୋକାନ, ବଜାର ସବୁ ବନ୍ଦ । ରଜା ଘରକୁ ଓ କର୍ମଚାରୀଙ୍କୁ କାହାରିକୁ କେହି ପଇସାଠା କର ଜିନିଷ ସୁଦ୍ଧା ଦେଉ ନାହାନ୍ତି । ଏପରି କି ରଜା ଘରେ ଯେଉଁମାନେ ଚାକିରି କରୁଥିଲେ, ସେମାନେ ଅଧେ କଣା ଚାକର ପରି ନୁହେଁ, ପୁରୁଷାନୁକ୍ରମେ ଯେଉଁମାନେ ଜାହାଗିରି ଭୋଗି ଦେହଲଗା ଚାକର ହୋଇ ରହିଥିଲେ ସେମାନେ ସୁଦ୍ଧା କେ କୁଆଡ଼େ ଚାଲି ଗଲେଣି । ନଗଲେ ଦେଖେ ସେମାନଙ୍କୁ ସେମାନଙ୍କ ଗାଁରେ ଏପରି ବାସନ୍ଦ ହେବ ଯେ ତାଙ୍କ ପରିବାର ଚଳି ପାରିବେ ନାହିଁ । ରଜାଘରେ ଝାଡୁ ଦେବାପାଇଁ ଲୋକଟିଏ ସୁଦ୍ଧା ନାହିଁ । ଗୋରୁ, ଘୋଡ଼ା, ହାତୀ ସେହିପରି ବନ୍ଧା ହୋଇ ପଡ଼ିଛନ୍ତି । ଗୁହାଳ, ଶାଳ ସଫା କରିବାକୁ ଲୋକ ନାହାନ୍ତି କି ପଶୁମାନଙ୍କୁ ଖାଇବାକୁ ଦେବାକୁ କେହି ନାହିଁ । ଗାଈ ଦୁହାଁ ହେଉ ନଥିବାରୁ ରଜାଘର ଦୁଧ ସୁଦ୍ଧା ପାଉ ନାହାନ୍ତି । ପାଣି ପରିବା କିଛି ମିଳୁ ନାହିଁ । ଯେ କେତେ ଜଣ ପରଦେଶୀ ଚାକର ଥିଲେ ସେହିମାନଙ୍କୁ ଲଗାଇ ମଟରରେ କୋଡ଼ିଏ ମାଇଲ ଦୂର ବାଲେଶ୍ୱରରୁ ପାଣି ପରିବା କାଠ ପ୍ରଭୃତି ଆଣି ରଜାଘର ଉପବାସକୁ ଏଡ଼ିଦେଇ ପାରିଛନ୍ତି । ପ୍ରଜାଙ୍କ ମେଳି ଭାଙ୍ଗିବା ପାଇଁ ରଜା କେତେଥର ହାଇଦରାବାଦୀ ପାଇକ ନେଇ ଗାଁମାନଙ୍କୁ ଯାଇ

ଧମକା ଚମକା କଲେଣି; ମାତ୍ର ଲୋକେ ସେ ଧମକା ଚମକା ପାଖ . ପଶୁ ନାହାନ୍ତି । ଏଣୁ ଭୟଗ୍ରସ୍ତ ହେବାର ଅବକାଶ ସୁଦ୍ଧା ମିଳୁ ନାହିଁ । ଯେଉଁ ଗାଁକୁ ପାଇକ ଗଲେ ସେ ଗାଁବାଲା କବାଟ କିଳି ଘରେ ପଶୁଛନ୍ତି । କାହାରି ମୁହଁ ନଦେଖି ପାଇକ ବଚରା ଫେରି ଆସୁଛି । କିମ୍ବା ଯଦି ଦରମା ସାଙ୍ଗକୁ ଆଉ କିଛି ଉପୁରି ରୋଜଗାର ମନ ହେଲା, ସେ ଗାଁ ଛେଳି କୁକୁଡ଼ା ଇତ୍ୟାଦି ଯାହା ପାଇଲେ ନେଇ ଆସୁଛି ।

ଲାଲମୋହନ ଏ ଅବସ୍ଥା ଦେଖି, ଉତ୍ସାହିତ ହୋଇଗଲେ । ଏହି ପରି ମେଳି ହେଲେ କିଏ ଏପରି ରଜା ଅଛି ଯେ ପ୍ରଜାଙ୍କ ମତ ବିରୋଧରେ ଶାସନ ଚଳାଇବ ? ଏହାହିଁ ତାଙ୍କ ଉତ୍ସାହର କାରଣ ହେଲା । ମୁଖିଆ ମୁଖିଆ ପ୍ରଜାମାନଙ୍କ ସହିତ ଲାଲମୋହନ ପରାମର୍ଶ କରି ଆନ୍ଦୋଳନକୁ ଆହୁରି ଉତ୍କଟ କରିବା ପାଇଁ ଇଚ୍ଛାକଲେ । ଗାଁର ଲୋକେ, ଦେଶ ବିଦେଶର ଖବର କିଛି ଜାଣି ନାହାନ୍ତି । ଆନ୍ଦୋଳନ ଚଳାଇବା ପାଇଁ ଯେ ବିଚକ୍ଷଣତା ଅଧ୍ୟୟନ ଯୋଗେ ଅର୍ଜିତ ହୁଏ ତା ସେମାନଙ୍କଠାରେ କିଛି ନାହିଁ । ସେମାନେ ଗୃହଲକ୍ଷ୍ମୀ ଅନ୍ତର୍ଜାତ ପ୍ରବୃତ୍ତି ଘେନି; ମାତ୍ର ଲାଲମୋହନ ସେମାନଙ୍କୁ ବୁଝାଇଲେ,"ଜନତାର ସଂକଳ୍ପକୁ ଠେଲି ଦେବ ଏପରି ଶକ୍ତି କୌଣସି ଶାସନର ନାହିଁ । ସେ ସଂକଳ୍ପ ଯେତେବେଳେ ନିର୍ଭୀକ ଭାବେ ଆଶା ପ୍ରକାଶ କରେ, ସେତେବେଳେ ପ୍ରବଳ ଶକ୍ତି ମଧ୍ୟ ତାଠାରେ ମୁଣ୍ଡ ନୁଆଁଇ ଦିଏ । ଆପଣମାନେ ଯେପରି ସଂକଳ୍ପ ପ୍ରକାଶ କରିଛନ୍ତି ତାହା ବାସ୍ତବିକ ପ୍ରଶଂସାଜନକ । ମାତ୍ର ଆହୁରି କିଛି କରିବାକୁ ହେବ । ନିସ୍ପୃହତାର ପରାକାଷ୍ଠା ଦ୍ୱାରା ଯେ ସଂକଳ୍ପ ରାଜ ଦରବାରକୁ ଦେଖାଇ ପାରିଛନ୍ତି, ସେହି ସଂକଳ୍ପକୁ ଆହୁରି କାର୍ଯ୍ୟ ଦ୍ୱାରା ଦେଖାଇବାକୁ ହେବ । ଦରବାରଙ୍କ ହୁକୁମ ହୋଇଛି, କେହି କଳିଗିରିରେ ସଭା ବା ଶୋଭାଯାତ୍ରା କରି ପାରିବେ ନାହିଁ । ଶହ ଶହ ହଜାର ହଜାର ଏ ଅନ୍ୟାୟ ଆଦେଶକୁ ଅମାନ୍ୟ କଲେ ସଂକଳ୍ପର ସକ୍ରିୟ ପ୍ରକାଶ ହେବ । ଦରବାରଙ୍କ ପାଇକମାନେ ଲାଠି ମାରି ଆପଣମାନଙ୍କ ମୁଣ୍ଡ

ଫଟାଇ ଦେଇ ପାରନ୍ତି । ଗୁଳିମାଡ଼ି ଜୀବନ ନେଇ ପାରନ୍ତି । ମାତ୍ର ସେ ସବୁ ସହ୍ୟ ଅନ୍ୟାୟ ବିରୋଧରେ ଛିଡା ହୋଇ ଓ ନିଜର ଦାବୀ ପୂରଣ କରିବାର ସଂକଳ୍ପକୁ ଜଗତ ଆଗରେ ସାବ୍ୟସ୍ତ କରିବାକୁ ହେବ ।"

ଲାଲମୋହନଙ୍କ ଉତ୍ସାହରେ ଲୋକମାନେ ମଧ୍ୟ ଉତ୍ସାହିତ ହେଲେ । ଗୋଟିଏ ଦିନ ନିର୍ଦ୍ଧାରିତ ହେଲା—ଯେଉଁ ଦିନ ସବୁ ଗାଁରୁ ଶହ ଶହ ଲୋକ ଆସି ରୁଣ୍ଡହେବେ ଓ ଏକ ସମୟରେ ଶୋଭାଯାତ୍ରା କରି କାଲଗିରିକୁ ଯିବେ । ଏ କାର୍ଯ୍ୟର ବନ୍ଦୋବସ୍ତ କରିବା ପାଇଁ ଲାଲ ମୋହନ ରାତି ଦିନ ପରିଶ୍ରମ କରି ଖାଇବା, ଶୋଇବା ପାଶୋରି ଯାଇ ଗାଁରୁ ଗାଁ ବୁଲିବାରେ ଲାଗି ପଡିଲେ । ସାନ୍ତାଳ ପ୍ରଜା, ସେମାନେ ବନ୍ୟ ପଶୁ ଶିକାର କରିବାକୁ ଖୁବ୍ ସମର୍ଥ । ସବୁବେଳେ ଧନୁଶରରେ କାରବାର ତାଙ୍କର । ସେମାନଙ୍କୁ କୌଣସି ପ୍ରକାରେ ଅହିଂସାର ତାତ୍ପର୍ଯ୍ୟ ବୁଝାଇବାରେ ଲାଲ-ମୋହନ ଯଥା ଶକ୍ତି ଲାଗିଛନ୍ତି । ମରିବ, କିନ୍ତୁ—ମାରିବ ନାହିଁ । ମନ୍ତ୍ରଟି ସମସ୍ତଙ୍କୁ କାନେ କାନେ ଶୁଣାଉଛନ୍ତି । ଚାରିଆଡେ ପ୍ରବଳ ଉତ୍ତେଜନା । ସମସ୍ତେ ସଜ ବାଜ ହେଉଛନ୍ତି ସେହି ନିର୍ଦ୍ଧିଷ୍ଟ ଦିନ ରଜାର ଆଦେଶ ନ ମାନି ପ୍ରଜାଙ୍କ ସଂକଳ୍ପ କାଲଗିରିରେ ଜାହିର କରିବେ । ସେତେବେଳେ ରାଜା ଦରବାର ମଧ୍ୟ ଖବର ପାଇ ପ୍ରସ୍ତୁତ ହେଉଛନ୍ତି, କିପରି ଜନତାର ସଂକଳ୍ପକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦେବେ ।

ଶେଷରେ ନିର୍ଦ୍ଧିଷ୍ଟ ଦିନ ସନ୍ଧ୍ୟାର କିଛି ସମୟ ପୂର୍ବରୁ ପ୍ରାୟ କୋଡିଏ ହଜାର ଲୋକ ଏକତ୍ର ହୋଇ ମହା ଉତ୍ତେଜନାରେ କାଲଗିରି ଅଭିମୁଖରେ ଯାତ୍ରା କଲେ । ଲାଲ ମୋହନ ନିଜେ ସେ ଶୋଭାଯାତ୍ରାର ଅଗ୍ରଣୀ ହେବା ପାଇଁ ଭାରି ମନ କରିଥିଲେ । ମାତ୍ର ଲୋକେ ତାହା କରିବାକୁ ଦେଲେ ନାହିଁ । "ଆପଣ କାଲଗିରିର ଲୋକ ନୁହନ୍ତି, ଯାହା କରିବୁ କାଲଗିରି ଲୋକ କରିବୁଁ । ଆପଣ ପରାମର୍ଶ ଦିଅନ୍ତୁ, ଆପଣଙ୍କର ଯଦି କିଛି ଭଲମନ୍ଦ ଘଟେ ତେବେ ଆମର ସବୁ ଯିବ ।" ନିତାନ୍ତ ଜିଦ୍ କରିମଧ୍ୟ ଲାଲ ମୋହନ ସେ ଶୋଭାଯାତ୍ରା ସହିତ ଯିବାର ସୁବିଧା ପାଇଲେ ନାହିଁ ।

ସାଧାରଣ ଜନତାଙ୍କ ଅଦ୍ଭୁତ ଉତ୍ତେଜନା ଓ କୋଳାହଳ ଭିତରେ ଶୋଭାଯାତ୍ରା ଯେତେବେଳେ ଖାଲଗିରିରେ ପହଞ୍ଚିଲା, ସେତେବେଳେ ଗୁରିଖା ପାଇକମାନେ ଲାଠି ପ୍ରହାର କରିବାକୁ ଲାଗିଲେ । ସେମାନଙ୍କ ଉପରେ ଗାଡ଼ି ମଡ଼ାଇ ଦିଆଗଲା । ନିରସ୍ତ୍ର ଜନ-ତାର ସକଳ ବ୍ରତରେ ସଂଘର୍ଷ ପ୍ରାୟ ଅଧଘଣ୍ଟାଏ ଚାଲିଛି, ତାପରେ ସବୁ ଶୂନ ଶାନ ହୋଇଗଲା । ପ୍ରାୟ ଶହେ ଲୋକ ଭୀଷଣ ଭାବରେ ଆଘାତ ପ୍ରାପ୍ତ ହୋଇ ଚଳତ୍ ଶକ୍ତି ବିହୀନ ହୋଇ ପଡ଼ିଛନ୍ତି । ଶହେ ଶହେ ଲୋକଙ୍କୁ ହାଣ ମାଡ଼ ଦେଇ ସେମାନଙ୍କୁ ମୃତପ୍ରାୟ କରିଛନ୍ତି । ବାକୀ ସମସ୍ତେ କେ କୁଆଡ଼େ ପଳାଇଛନ୍ତି—ତାର ଠିକଣା ନାହିଁ । ଯେଉଁ-ମାନେ ଆହତ ହୋଇ ପଡ଼ିଛନ୍ତି, ସେମାନଙ୍କୁ ପାଣି ଟୋପାଏ ଦେବାକୁ ସୁଦ୍ଧା କେହ ନାହାନ୍ତି । ରାଜ ଦରବାର ବିଜୟ ଉଲ୍ଲାସ ଉପଭୋଗ କରିବାରେ ଲାଗିଛନ୍ତି । ପଳାଇ ଯାଇଥିବା ଲୋକମାନଙ୍କର ଲୁଗାପଟା ପ୍ରଭୃତି ସଂଗ୍ରହରେ ପାଇକ ମାନେ ବ୍ୟସ୍ତ । ଲୋକେ ନିଜ ନିଜ ପ୍ରାଣ ବଞ୍ଚାଇବାରେ କିଏ କୁଆଡ଼େ ପଳାଇ ନିଜ ସାଙ୍ଗ କଥା ଭୁଲି ଯାଇଛନ୍ତି । ଏହି ଅବସ୍ଥାରେ ଆହତ ଲୋକେ ପଡ଼ି ପଡ଼ି ରାତି ହୋଇଗଲା । ଶେଷରେ ଦୂରରେ ଥିବା ଲାଲ ମୋହନ ଏ ଖବର ପାଇ କେତେକ ଲୋକଙ୍କୁ ସାହସ ଦେଇ ଏକତ୍ର କରି ଆହତ ଲୋକମାନଙ୍କୁ ଖାଲଗିରି ଇଲାକାର ବାହାରେ ଥିବା ଗୋଟିଏ ସ୍ଥାନକୁ ନେଇ ଗଲେ । କଅଣ କହି ସେମାନଙ୍କୁ ଉତ୍ସାହ ଦେବେ ତାଙ୍କୁ ବୁଦ୍ଧି ଦେଖାଯାଉ ନ ଥାଏ । ଅନେକ ସାରା ଜୀବନ ପାଇଁ ଖଣ୍ଡ ହୋଇ ଯାଇ-ଛନ୍ତି । କେତେକଙ୍କର ବଞ୍ଚିବାର ଆଶା ନାହିଁ । ତଥାପି ନିଜକୁ ଦୃଢ଼କରି ଲାଲ ମୋହନ ସମସ୍ତଙ୍କର ଚିକିତ୍ସାର ବନ୍ଦୋବସ୍ତ କୌଣସି ପ୍ରକାରେ କରାଇଲେ । ମାତ୍ର ସକଳର ସକ୍ରିୟ ବିକାଶ ସମ୍ବନ୍ଧରେ ଲାଲ ମୋହନଙ୍କ ମସ୍ତିଷ୍କ ପ୍ରଥମେ ଯେପରି କାମ କରୁଥିଲା, ବର୍ତ୍ତମାନ ଆଉ ସେପରି କରୁନାହିଁ । ନିରସ୍ତ୍ର ଜନତା ସମସ୍ତ ଶକ୍ତିର ସମ୍ମୁଖୀନ ହୋଇ ପାରେ । ଏ ବିଶ୍ୱାସ ତାଙ୍କର ଅଛି । କାରଣ ସେ ଜାଣନ୍ତି ଥରେ ନେପୋଲିଅନ୍‌ଙ୍କ ଗୁଳି ବାରୁଦ ଶେଷ ହୋଇ ଯାଇଥିଲା । ପ୍ରତି ପକ୍ଷ ଯେତେବେଳେ ଏହିପରି ଅବସ୍ଥାରେ ତାଙ୍କୁ

ଆକ୍ରମଣ କଲା ସେ ନିଜର ପଚିଶ ହଜାର ସୈନ୍ୟଙ୍କୁ ବାନା ଅସ୍ତ୍ରରେ ଶତ୍ରୁର ସମ୍ମୁଖୀନ ହେବାକୁ ଆଦେଶ ଦେଇଥିଲେ । ଏହି ପଚିଶ ହଜାର ସୈନ୍ୟ ଏପରି ଭାବରେ ଶତ୍ରୁ ସୈନ୍ୟ ସହିତ ଯାଇ ବେଢ଼ି ଗଲେ ଯେ, ସେମାନେ ବନ୍ଧୁକ ମାରିବା ପାଇଁ ଯଥେଷ୍ଟ ବ୍ୟବଧାନ ପାଇଲେ ନାହିଁ । ପଚିଶ ହଜାରରୁ ପନ୍ଦର ହଜାର ସୈନ୍ୟ ମରିଗଲେ ସତ, ମାତ୍ର ଅବଶିଷ୍ଟ ଦଶ ହଜାର ବିଜୟ ଲାଭ କଲେ । ତେଣୁ ଲାଲ ମୋହନ ଭାବଲେ ଯେ, ଲୋକେ ସେତେ ସାହସୀ ଓ ଠାଣ ନୁହନ୍ତି । ତାଙ୍କର ଅନୁତାପ ହେଲା, ସେ ନିଜେ କାହିଁକି ଲୋକଙ୍କ ସାଙ୍ଗରେ ନ ଗଲେ । ଲାଠି ଓ ବନ୍ଧୁକର ସମ୍ମୁଖୀନ ହେବାର ଯେ ଆନନ୍ଦ ଅଛି ଓ ସେଥିରେ ଆଘାତ ପାଇବାର ଯେ ସୁଖ ଅଛି, ତା ସେ ଉପଭୋଗ କରି ପାରିଲେ ନାହିଁ ? ଜୀବନର ଗୋଟାଏ ବଡ଼ ସୁବିଧା ହରାଇଲେ ବୋଲି ସେ ଭାବ ହେଲେ ।

ଏ ଘଟଣା ପରେ ଜଙ୍ଗଲଗିରି ରାଜା ପ୍ରଜାଙ୍କ ଭିତରେ ଗୋଟାଏ ମିଳା-ମିଶା ହୋଇଗଲା । ଲୋକେ ଠାଣ ନୁହନ୍ତି ଭାବି ଲାଲମୋହନ ଆଉ ଏ ମେଳକୁ ବେଶୀ ଦୂରକୁ ନେବାକୁ ଉଚିତ ମନେ କଲେ ନାହିଁ । କିପରି ମିଳା ମିଶା ହେଲା, ପ୍ରଜାଙ୍କ ଲାଭ କେତେ ହେଲା, କଣ ହେଲା, ସେଥିରେ ଏ ଉପନ୍ୟାସର ସମ୍ପର୍କ ନାହିଁ । ଏଠାରେ ଏତିକି ଜାଣିବାର କଥା ଯେ, ଲାଲ ମୋହନ ଏହି ଜଙ୍ଗଲଗିରି ବ୍ୟାପାରରେ ବ୍ୟାପୃତ ରହି କୁମୁଦିନୀ କଥା ପୁରାପୁରି ଭୁଲି ଯାଇଛନ୍ତି । ଏପରି କି ବାଲେଶ୍ୱରରୁ ପତ୍ର ଦେବେ ବୋଲି ଯେ କହି ଆସିଥିଲେ ସେ କଥା ସୁଦ୍ଧା ତାଙ୍କର ମନେ ନାହିଁ । ଇତିମଧ୍ୟରେ ପ୍ରାୟ ଦେଢ଼ ମାସ ଅତୀତ ହୋଇ ଗଲାଣି । ଯେତେବେଳେ ଆନ୍ଦୋ-ଳନରେ ଉତ୍ତେଜନା କମି ଆସିଲା ସେତେବେଳେ ହଠାତ୍ ତାଙ୍କ ମନରେ ଲାଲମୋହନଙ୍କର କୁମୁଦିନୀ କଥା ମନେ ପଡ଼ିଗଲା । ଚିଠି ଖଣ୍ଡେ ଲେଖି ଦେଇ ପାରିଲେ ନାହିଁ—କଅଣ ସେ ଭାବୁଥିବ—ସେ ପୁରୀରେ ଥିବ ନା କଲିକତା ଚାଲିଗଲାଣି—ପୁଣି କେଉଁ ମୁହଁରେ ଯାଇ ତାକୁ କଥା କହିବ ?

ମୁଁ ଏତେ ଅସ୍ଥିର ପ୍ରକୃତିର ଲୋକ, ଏତେ ଉଦ୍ଧତ, ଯେଉଁଠି ମାତିଲି·ସେଠି ଭାସିଗଲି, ଆଉ ସବୁ ଭୁଲିଗଲି—ଏହିପରି ନିଜକୁ ବହୁତ ଧିକ୍କାର·କଲେ । ଆତ୍ମ ଗ୍ଳାନିରେ ସେ ଏତେ ଅସ୍ଥିର ବୋଧ ହେଲେ ଯେ ତାଙ୍କ ମନ ହେଉଥାଏ ଉଡ଼ିଯାଇ କୁମୁଦିନୀ ପାଖରେ ପହଞ୍ଚି ତା ଗୋଡ଼ ତଳେ ପଡ଼ି କ୍ଷମା ମାଗନ୍ତେ । ଏହି ଅନୁଶୋଚନା ମଧ୍ୟରେ ସେ ତାଙ୍କ ମନକୁ ଦୃଢ଼ କଲେ·ଯେ ସେ କୁମୁଦିନୀକୁ ଯଥାବିଧି· ବିବାହ କରିବେ ଓ ସେ କାର୍ଯ୍ୟ ଶେଷ ନ ହେବା ଯାଏଁ ସେ ଅନ୍ୟ କୌଣସି କାର୍ଯ୍ୟରେ ମାତିବେ ନାହିଁ ।

---

ନୀଳଗିରି ପ୍ରଜାମେଳିର କାର୍ଯ୍ୟକାରଣ ପୁଙ୍ଖାନୁପୁଙ୍ଖରୂପେ ଆଲୋଚନା କରି ଲାଲମୋହନ ମନେ ମନେ ଠିକ୍ କଲେ ଯେ ସବୁ ଗଡ଼ଜାତରେ ଅଳ୍ପ ବହୁତ ମେଳି ନିଶ୍ଚୟ ହେବ । କାରଣ ସବୁ ଗଡ଼ଜାତ ଏକ କାର୍ଯ୍ୟକାରଣର ଅଧୀନ । ଚାରିଆଡେ ପ୍ରଜା ମେଳିର ଛବି ଯେତେ-ବେଳେ ସେ ମନରେ ଆଙ୍କି ଦେଲେ, ସେ ନିଜେ ଭାବବିହ୍ୱଳ ହୋଇଗଲେ । ଘରପୋଡ଼ି ସମୟରେ ଖଣ୍ଡ ଖଣ୍ଡ ହୋଇ ରୁଅ ବାଉଁଶ ଠକ ଠକ ଫୁଟି ଖସି ପଡ଼ିଲାପରି ଯେତେବେଳେ ଗଡ଼ଜାତ ଅତ୍ୟାଚାରୀ ରାଜ ଦରବାର ସବୁ ଖସି ପଡ଼ିବେ—ହୁ.ହୁ ହୋଇ ଚାରିଆଡେ଼ ନିଆଁ ଲାଗିଯିବ, ସେତେବେଳେ ସେ ନିଜେ କି ଉତ୍ତେଜନା ଭିତରେ ଥିବେ ଭାବି ଉଲ୍ଲସିତ ହେଉଥାନ୍ତି । ଯଦି ସେ ଦାବାନଳରେ ନିଜେ ମଧ୍ୟ ଆହୁତି ହୋଇଯାନ୍ତି ତେବେ ତ ପରମ ସୌଭାଗ୍ୟ । ଅତ୍ୟାଚାର ବିରୁଦ୍ଧରେ ଛିଡ଼ା ହୋଇ ଜୀବନ ଦେବାର ଅବସର କେତେ ଲୋକଙ୍କ ଭାଗ୍ୟରେ ଘଟେ ? ଏ ଉଲ୍ଲାସ ମଧ୍ୟରେ କୁମୁଦିନୀ କଥା ମନେ ପଡ଼ି ଯାଉଥାଏ । କି ବେଳରେ ତା ସହିତ କଲିକତାରେ ଦେଖା ହେଲା । ଧୀରେ ଧୀରେ ସେ ତ ମନ ଭିତରେ ବହୁତ ସ୍ଥାନ ଦଖଲ କରି ନେଇ ଯାଇଛି । କଲିକତାରେ ଦେଖା ହେଲାଠାରୁ ତା ସହିତ ସମ୍ପର୍କ କିପରି କ୍ରମଶଃ ବଢ଼ିବାରେ ଲାଗିଛି ସେ ବିଷୟ ସେ ମନେ ମନେ ଚିନ୍ତା କଲେ । ଶ୍ରମିକ-ମାନଙ୍କର ଏକ ସଭାରେ ଲାଲମୋହନ ଓଡ଼ିଶା ଶ୍ରମଜୀବୀମାନଙ୍କ ପାଇଁ ଓଡ଼ିଆରେ ବକ୍ତୃତା ଦେଇଥିଲେ । ତାପରେ କୁମୁଦିନୀ ମଧ୍ୟ ଏକ ସୁନ୍ଦର ବକ୍ତୃତା ଦେଇଥିଲେ । ସଭା ଶେଷରେ କୁମୁଦିନୀ ଲାଲମୋହନଙ୍କ ପାଖକୁ

ଆସି ଓଡ଼ିଆରେ କହୁଥିଲେ, "ଆପଣଙ୍କ ବକ୍ତୃତା ଖୁବ୍ ସୁନ୍ଦର ହୋଇଥିଲା ।" ବିସ୍ମିତ ହୋଇ ଲାଲମୋହନ ପଚାରିଥିଲେ, "ଆପଣ କଣ ଓଡ଼ିଆଣୀ ।" ଅଳ୍ପ ହସି କୁମୁଦିନୀ ଉତ୍ତର ଦେଇଥିଲେ, "ମୁଁ ଓଡ଼ିଆର ଝିଅ । ମାତ୍ର ଅବସ୍ଥା ଚକ୍ରରେ ପଡ଼ି ହତଭାଗ୍ୟା ହୋଇ ଦେଶର କିଛି କାମ କରିବାକୁ ମୋ କପାଳରେ ଲେଖା ଥିଲା ।" ତାପରେ କୁମୁଦିନୀ ଯେଉଁଠାରେ ରହୁଥିଲେ ସେଠିକି ଲାଲମୋହନ କେତେ ଥର ଯା ଆସ କରିଥିଲେ । କଲିକତାରେ ଆର୍ଯ୍ୟ-ସମାଜୀମାନଙ୍କର ଏକ ଆଡ୍ଡା ଅଛି । ସେଇଠାରେ କୁମୁଦିନୀ ଅବସ୍ଥାନ କରୁଥିଲେ । ଧୀରେ ଧୀରେ ଲାଲମୋହନଙ୍କ ମନେହେଲା ସେ ଯେପରି କୁମୁଦିନୀଙ୍କ ଆଡକୁ ଆକୃଷ୍ଟ ହେଉଛନ୍ତି, ସେ ମଧ୍ୟ ସେହିପରି ତାଙ୍କ ଆଡ଼କୁ ଆକୃଷ୍ଟ ହେଉଛନ୍ତି । ତାପରେ କୁମୁଦିନୀ ପୁରୀକୁ ଆସିଲେ । ତାଙ୍କ ନିଜ କାର୍ଯ୍ୟକ୍ରମ ଅନୁସାରେ ।' ଦୁଷ୍ଟ ଲୋକେ ସମାଜର କେତେକ କୁପ୍ରଥାର ସୁବିଧା ନେଇ ନାରୀମାନଙ୍କୁ ଭୁଲାଇ ଘରୁ ବାହାର କରି ନେଇ ବଡ଼ ବଡ଼ ସହରରେ ବିକ୍ରି କରି ଯେଉଁ ବିରାଟ ବ୍ୟବସାୟ ଚଳାଇଛନ୍ତି ତା ବିରୁଦ୍ଧରେ କୁମୁଦିନୀ କିଛି କରିବେ ବୋଲି ସ୍ଥିର କଲେ ।

ବହୁ ସଂଖ୍ୟାରେ ଓଡ଼ିଶାରେ ନାରୀ କଲିକତାରେ ବିକ୍ରି ହୋଇ ଯାଉଛନ୍ତି । ମାତାଜୀ ବେଶରେ କେତେକ ଦୁଷ୍ଟା ରମଣୀ ଗୁଣ୍ଡାମାନଙ୍କ ଦ୍ୱାରା ନିଯୁକ୍ତ ହୋଇ ଘରୁ ବୋହୂଝିଅମାନଙ୍କୁ ଶିଖାଇ ନେଇ ଯାଉଛନ୍ତି ବା ସମାଜ ଦ୍ୱାରା ଅନାଦୃତ ଓ ଅତ୍ୟାଚାରିତ ଯୁବତୀମାନଙ୍କୁ ମଧ୍ୟ ସେମାନେ ଶିଖାଇ ନେଇ ଯାଉଛନ୍ତି—କୌଣସି ପ୍ରକାରେ କଲିକତାରେ ପହଞ୍ଚିବା ପରେ ସେମାନଙ୍କୁ ରୂପ ଓ ବୟସ ଅନୁସାରେ ଦାମ୍ ଦେଇ ଗୁଣ୍ଡାମାନେ ଖରିଦ କରି ନେଇ କେତେକଙ୍କ ଦ୍ୱାରା ସେଠାରେ ବେଶ୍ୟା ବ୍ୟବସାୟ ଖୋଲିଛନ୍ତି । ଆଉ କେତେକଙ୍କୁ କନ୍ୟା ନ ମିଳୁଥିବା ଲୋକଙ୍କୁ ବିବାହପାଇଁ ବିକ୍ରି କରି ଦେଉଛନ୍ତି । ଅନୁସନ୍ଧାନ କରି ଜାଣିଲେ ଯେ ଅନେକ ଓଡ଼ିଆ ନାରୀ ଏହି ସୂତ୍ରରେ ପଞ୍ଜାବର ଶିଖମାନଙ୍କର ଗୃହିଣୀ ହୋଇଛନ୍ତି ଓ ଅନେକ ମୁସଲମାନ ହୋଇ ଯାଇଛନ୍ତି । ଯେଉଁମାନେ ବିବାହିତ

ହୋଇଗଲେ ସେମାନଙ୍କ ପାଇଁ ଚିନ୍ତା କିଛି ନାହିଁ । ମାତ୍ର ଯେଉଁମାନେ ବେଶ୍ୟା ବ୍ୟବସାୟ ପାଇଁ ରହିଗଲେ ସେମାନଙ୍କ ଦୁଃଖ କହିଲେ ନ ସରେ । କେବଳ ଖାଇବାକୁ ପିନ୍ଧିବାକୁ ପାଇଁ, ପଶୁପରି ଏମାନେ ପୋଷା ହୋଇଛନ୍ତି । ସକାଳ ହେବା ମାତ୍ରକେ ମାଲିକ ଗୁଣ୍ଡା ଆସି ରାତିକ ରୋଜଗାର ପ୍ରତ୍ୟେକ ସ୍ତ୍ରୀଠାରୁ ନେଇ ଯାଉଛି । ଯେ ବେମାରି ପଡ଼ିଲା ତାର ଚିକିତ୍ସାର ବ୍ୟବସ୍ଥା ନାହିଁ । ଯାହାର ରୂପ ଓ ବୟସ ଖରାପ ହୋଇଗଲା ତାକୁ ବାହାର କରି ଦିଆଗଲା—ତାପରେ ସେ ପଥର ଭିକାରୁଣୀ । ନାରୀ ଜାତି ପ୍ରତି ଏ ଯେଉଁ ବିଭତ୍ସ ଅତ୍ୟାଚାର ହେଉଛି ତା ବିରୋଧରେ କିଛି କରିବାକୁ ହେବ; ଏ ସିଦ୍ଧାନ୍ତ କୁମୁଦିନୀ କଲାପରେ ସେ କଲିକତାରେ ଏ ସମ୍ପର୍କରେ ବହୁତ ସଭା କରିଛନ୍ତି । ଶ୍ରମିକମାନଙ୍କ ମଧ୍ୟରେ ବୁଲି ପ୍ରଚାର କରିଛନ୍ତି ଯେ ସେମାନେ ଘରେ ନିଜେ ସ୍ତ୍ରୀମାନଙ୍କୁ ଛାଡ଼ି ଦେଇ ଆସିବା ଉଚିତ ନୁହେଁ । ସଙ୍ଗେ ସଙ୍ଗେ ସ୍ତ୍ରୀକୁ ରଖିବା କର୍ତ୍ତବ୍ୟ । ତାପରେ ସେ ପୁରୀ ଆସିଲେ ମାତାଜୀମାନଙ୍କ କାର୍ଯ୍ୟ କଳାପ ଲକ୍ଷ୍ୟ କରି ତାର କିଛି ପ୍ରତିବିଧାନ କରିବାପାଇଁ । ତୀର୍ଥ କ୍ଷେତ୍ରହିଁ ନାରୀ ବ୍ୟବସାୟର କେନ୍ଦ୍ର ସ୍ଥଳ । କାରଣ ଜୀବନରେ କିଛି ଅଶାନ୍ତି ଘଟିଲେ ଧର୍ମର ସାନ୍ତ୍ୱନା ନେବାପାଇଁ ସେଠାକୁ ଅନେକ ଆସନ୍ତି—ସେଇଠି ପ୍ରଲୋଭନର ପସରା ମେଲାଇ, ଆଯଥା ଯୁବତୀଙ୍କୁ କରଗତ କରିବାପାଇଁ ଦୁଷ୍ଟମାନେ ମଧ୍ୟ ଚେଷ୍ଟା କରନ୍ତି । ତେଣୁ କିଛିଦିନ ପୁରୀରେ ରହି ଅବସ୍ଥାର ଅନୁସନ୍ଧାନ କରିବେ ବୋଲି କୁମୁଦିନୀ ସ୍ଥିର କଲେ ।

ପୁରୀ ଆସିବା ପରେ ଲାଲମୋହନ ତାଙ୍କ ସହିତ ଅନେକ ଥର ଦେଖା ସାକ୍ଷାତ୍ କଲେଣି । ଯେବେ ସେ କୁମୁଦିନୀ ସହିତ ଆଳାପ କରନ୍ତି, ତାଙ୍କର ମନେ ହୁଏ ଯେପରି ତାଙ୍କର ହୃଦୟର ଏକ ତପ୍ତ ପ୍ରଦେଶ ଶୀତଳ ହୋଇଗଲା । ତାପରେ ସେ ନିଜ କାମରେ ଅଧିକ ଉତ୍ସାହ ଅନୁଭବ କରନ୍ତି । ପୁଣି କାମର ଉତ୍ସାହ ମଧ୍ୟରେ ଆଳାପର ଗୁରୁତ୍ୱ ସେ ଭୁଲିଯାନ୍ତି । ଏହିପରି ଚାଲିଥିଲା; ମାତ୍ର ଏଥର ସେ ସ୍ଥିର କଲେ ଯେ କୁମୁଦିନୀଙ୍କ

ଜୀବନ ସହିତ ନିଜ ଜୀବନକୁ ସଂଲଗ୍ନ କରିବେ—ତାର ଫଳାଫଳ ଯା ହେଉ ପଛକେ ।

ଏ ନିଷ୍ପତ୍ତିକୁ ସେ ଆସି ପାରୁ ନଥିଲେ । ତାହାର କାରଣ ହେଉଛି ଯେ ବିବାହ ଓ ତାର ଆନୁସଙ୍ଗିକ ଦାୟିତ୍ୱ ପାଇଁ ସେ ପ୍ରସ୍ତୁତ ନଥିଲେ । ଓକିଲାତି ଆରମ୍ଭ କରିବା ମାତ୍ରକେ ତାକୁ ସେ ଛାଡିଛନ୍ତି ଦେଶର କାମ କରିବାପାଇଁ । ଘରେ ଯାହା କିଛି ସାମାନ୍ୟ ବିଷୟ ଆଶ୍ରୟ ଅଛି ତାକୁ ଭାଇମାନେ ବୁଝନ୍ତି ଓ ସେଥିରେ ସେମାନେ ଚଳାଚଳ କରୁଛନ୍ତି । ଘରର ଦାୟିତ୍ୱ କୌଣସି ପ୍ରକାରେ ଲାଲମୋହନଙ୍କ ଉପରେ ନାହିଁ ବା ଘରୁ ସେ ନିଜପାଇଁ କିଛି ଆଶା କରନ୍ତି ନାହିଁ । ଭାରତରେ ଯେପରି ଅବସ୍ଥା ସେଥିରେ ଦେଶର କାମ କରିବାକୁ ହେଲେ ନିଜେ ଚଳିବାପାଇଁ ଯାହା କିଛି ଦରକାର ତାହା ହୁଏତ ପାଇ ହେବ; ମାତ୍ର ବିବାହ କଲା ମାତ୍ରକେ ବ୍ୟକ୍ତି ବିଶେଷ, ଧୀରେ ଧୀରେ ଏକ ଅନୁଷ୍ଠାନ ହୋଇ ଛିଡ଼ା ହେବ । ଯାହାକୁ ପରିବାର କୁହାଯାଏ—ତାହାର ଚଳିବାର ବ୍ୟବସ୍ଥା କିପରି କେଉଁଠୁ କରିହେବ ? ଏହାହିଁ ଲାଲମୋହନଙ୍କ ବିବାହ ବିଷୟରେ ବାଧା ଥିଲା । ଏ ବାଧା ସାମାନ୍ୟ ନୁହେଁ, ଭାବିଲେ ଏହା ଗୁରୁତର ମନେ ହେବାର କଥା । ମାତ୍ର ଲାଲମୋହନ ଭାବି ଦେଖିଲେ ଯେ ସେ କୃଷ୍ଣପ୍ରିୟାଙ୍କୁ ବିବାହ କରି କୌଣସି ଗୋଟିଏ ଗ୍ରାମରେ ଆଶ୍ରମ କରି ତହିଁରୁ ସମସ୍ତ ସମୟ ଦେଇ ଦେଶର କାମ କରିବେ ଓ ଏପ୍ରକାର କର୍ମୀମାନଙ୍କୁ ସାହାଯ୍ୟ କରିବାପାଇଁ ଅନେକ ଅନୁଷ୍ଠାନ ଅଛି । ଯେ ବାଧା ପ୍ରଥମେ ଅତିବଡ଼ ପର୍ବତ ବୋଲି ମନେ ହେଉଥିଲା, ଶେଷରେ ତାହା ଗୋଟା ପରି ମନେ ହେଲା । ମନ ଯେଉଁ ଆଡ଼କୁ ଝୁଙ୍କିଲା ସେ ଦିଗରେ ନିଜର ସମର୍ଥନ ପାଇଁ ଅନେକ ସାମଗ୍ରୀ ପାଇଲା ।

---

—୪—

ପୁରୀର ଧର୍ମଶାଳାରେ ପହଞ୍ଚିଲା ମାତ୍ରକେ ଲାଲମୋହନ ବୁଝିଲେ ଯେ ସୁଦର୍ଶନ ଅନେକ ଥର ଆସି ତାଙ୍କୁ ଖୋଜି ଯାଇଛି । ତାଙ୍କର ମନର ଆବେଗକୁ ସେ ସମ୍ଭାଳି ପାରୁ ନାହାନ୍ତି । ମନେମନେ ଭାବୁଥାନ୍ତି କି କେମିତି ସେ ବୃନ୍ଦାବନକୁ ଦେବେ । ଦୋଷ କାମରେ ସେ ତାଙ୍କର ପ୍ରବଳ ଉତ୍ତେଜନା ଓ ସେଥିରେ ତାଙ୍କ ଆତ୍ମ ବିସ୍ମରଣ ସେ କଥା ବୃନ୍ଦାବନ ଜାଣନ୍ତି ଓ ସେଥିପାଇଁ ସେ ତାଙ୍କୁ ପ୍ରଶଂସା କରନ୍ତି । ମାତ୍ର ସେତିକି କଅଣ ଯଥେଷ୍ଟ ହେବ ? ହୁଏତ ଦେଖାହେଲା ମାତ୍ରକେ ସେ କଥା କହିବେ ନାହିଁ—ମାନ କରିବେ—କଅଣ କହି ସେ ମାନ ଦୂର କରିବେ ? ତା ପରେ ବିବାହର ପ୍ରସ୍ତାବକୁ କି ଆକାରରେ ଉତ୍ଥାପିତ କଲେ ତାହା ସହଜରେ ଘେନା ହେବ ? ନା ବିବାହର ପ୍ରସ୍ତାବକୁ ମୋଟେ ଉଠାଇବେ ନାହିଁ । ବାଲେଶ୍ୱରରେ ବିବାହ ବିଷୟରେ ମନ ଯେପରି ଦୃଢ଼ ଥିଲା ପୁରୀରେ ଆସି ପହଞ୍ଚୁ ପହଞ୍ଚୁ ସେ ଦୃଢ଼ତା ବହୁତ କମି ଗଲାଣି—ଏ କଥା ନିଜେ ଜାଣିପାରି ଲାଲମୋହନ ବିସ୍ମିତ ହେଲେ । ନିଜ ମନକୁ ପୁଣି ଦୃଢ଼ କରିବାରେ ଲାଗିଲେ । ଶେଷରେ ସନ୍ଧ୍ୟାବେଳେ ଦୋଳମଣ୍ଡପ ସାହିକୁ ବାହାରିଲେ ।

କୁମୁଦନୀ ବସାପାଖରେ ସୁଦର୍ଶନକୁ ଦେଖି ତାଠାରୁ ଶୁଣିଲେ ଯେ ସେ ଅଳ୍ପ ସମୟ ହେଲା ସମୁଦ୍ର କୂଳକୁ ବୁଲି ବାହାରି ଯାଇଛନ୍ତି । ଦ୍ରୁତପଦକ୍ଷେପରେ ଲଳମୋହନ ଅଳ୍ପ ଦୂରରେ କୁମୁଦନୀକୁ ଦେଖିଲେ । ମୁହଁ ଦେଇ କୁମୁଦନୀ ଅଳ୍ପ ହସି ପଚାରିଲେ, 'କଅଣ ଖବର ? ନୀଳଗିରି ବିଷୟରେ ସମାଧାନ ହୋଇଗଲା ?' ଲଳମୋହନ ନିଜକୁ ନିଜେ ଅପରାଧୀ ବୋଲି ମନେ କରୁଥାନ୍ତି । ସେ ପ୍ରଶ୍ନର ଉତ୍ତରରେ 'ହଁ, ଏକ ପ୍ରକାର ହୋଇଗଲା ।' ଏତିକି କହି ସେ ନିଜର କୈଫିୟତ ଦେବାପାଇଁ ଉଦ୍ୟମ ହେଲା ମାତ୍ରକେ କୁମୁଦନୀ ପୁଣି ପଚାରିଲେ, "କଅଣ ସେଠା ଖବର ଭଲକରି କହନ୍ତୁ । ଖବରକାଗଜରୁ ଯେତିକି ଜାଣିଛି ସେତିକିରୁ ବୁଝିଛି ଯେ ସେଠାଲୋକେ ଖୁବ୍ କଷ୍ଟ କରୁଛନ୍ତି ।" ଲଳମୋହନ ଧୀରେ ଧୀରେ କହିଲେ, "ହଁ ଖୁବ୍ ସଂଗଠନ ସେମାନେ; ମାତ୍ର ବଡ଼ ଦୁଃଖ, ଲାଠି ମାଡ଼ରେ ଯେପରି ବ୍ୟତିବ୍ୟସ୍ତ ହୋଇ ସେମାନେ ପଳାଇଗଲେ ତାହା ଅତ୍ୟନ୍ତ ଲଜ୍ଜାଜନକ ।" କୁମୁଦନୀ ଟିକିଏ ବ୍ୟଙ୍ଗୋକ୍ତି କରି କହିଲେ," ତୁମର ଲାଠି ମାଡ଼ରେ କେଉଁଠି କଅଣ ହୋଇଛି ?" ଲଳମୋହନ ଟିକିଏ ବିଚଳିତ ହୋଇ କହିଲେ, "ମୁଁ ସେ ଶୋଭାଯାତ୍ରାର ଆଗରେ ଯିବାପାଇଁ ବାହାରିଥିଲି; ମାତ୍ର ମୋତେ ସେଠାରେ ସମସ୍ତେ ମନାକଲେ ।" କୁମୁଦନୀ ପୁଣିପଚାରି କହିଲେ,"ତୁମେ ତ ନିଶ୍ଚୟ ପଛେ ପଛେ ଯାଇଥିବ । ଦେଖିବା ପାଇଁ କଣ ହେଲା । ତାପରେ ଗୋଳ ମାଳରେ ହୁଏତ ତୁମ ଉପରେ ଲାଠିମାଡ଼ ବସି ଯାଇଥିବ । ମୁଁ ସେ ଖବର ପଢୁଥିଲା ବେଳେ ମୋ ଛାତି ଦକ ଦକ ହେଉଥାଏ, କାଳେ ଆହତ ବ୍ୟକ୍ତିଙ୍କ ନାମ ଭିତରେ ତୁମ ନାମକୁ ପାଇବି; ମାତ୍ର ଯେତେବେଳେ ନ ପାଇଲି ସେତେବେଳେ ମନେ ମନେ ଭାବିଲି ରଜାଘର ଲାଠି ଲୋକ ଚିହ୍ନେ । ପାଇକମାନେ ଆଖିବୁଜି ଲାଠି ଚଳାଇଲେ ମଧ୍ୟ ଲାଠି ତୁମକୁ ଚିହ୍ନିପାରି ତୁମ ଉପରେ ବାଜିଲା ନାହିଁ ।" ଏ ପରିହାସ ଶୁଣି ଲଳମୋହନ ଉତ୍ତେଜିତ ହୋଇ କହିଲେ, "ତୁମେ କଣ ଭାବୁଛ ମୁଁ ଲାଠି ମାଡ଼ ଭୟରେ ଲୁଚିଲି ।" କୁମୁଦନୀ ହସି ହସି କହିଲେ, "ମୁଁ କିଛି ଭାବୁନାହିଁ ।

କଣ ହେଲା ତୁମଠୁ ଶୁଣିବ ବୋଲି ପଚାରୁଛି ।” ଲାଲମୋହନ ଗମ୍ଭୀର ହୋଇ ଯାଇ କଣ କହିବେ ଠିକ ଭାବି ପାରିଲେ ନାହିଁ । ଦୁହେଁଯାକ ଧୀରେ ଧୀରେ ଚାଲିଛନ୍ତି । ଶେଷରେ ସମୁଦ୍ର କୂଳରେ ପହଞ୍ଚିବା ମାତ୍ରକେ ଲାଲମୋହନ କହିଲେ, “ଚାଲ ଆଜି କୂଳେ କୂଳେ ଅନେକ ଦୂରକୁ ବୁଲିବାକୁ ଯିବା ।” କୁମୁଦିନୀ ହଠାତ୍ ଉତ୍ତର କଲେ, “ଆଜି ମୋର ଅନେକ କାମ ଅଛି । ଆଜି ଜଗତ୍‌ସିଂହ ବାବୁ ଆସିଛନ୍ତି । ତାଙ୍କ ସହିତ ରାତି ଆଠଟା ବେଳେ ସାକ୍ଷାତ ହେବାର କଥା ଅଛି, ଏଣୁ ମୁଁ ଶୀଘ୍ର ଫେରିବି ।”

ବାଲି ଉପରେ ଦଳ ଦଳ ହୋଇ ଲୋକ ବୁଲୁଛନ୍ତି । ଏକପାଖିଆ ହୋଇ ଲାଲମୋହନ ଓ କୁମୁଦିନୀ ନୀରବରେ କିଛିଦୂର ଗଲା ପରେ ଲାଲମୋହନ ଆରମ୍ଭ କଲେ, “ତୁମେ ବୋଧହୁଏ ମୋ ଉପରେ ବଡ଼ ରାଗିଛ ?”

କୁମୁଦିନୀ—“ମୁଁ ନିଜ ଉପରେ ବଡ଼ ରାଗିଛି ।”

ଲାଲମୋହନ—“ମୁଁ ସେଠି କାମରେ ଏପରି ମାତିଗଲି ଯେ ମୋର ଆଉ କିଛି ମନେ ରହିଲା ନାହିଁ । ମୋର ତ ଏ ଦୋଷ ପୂର୍ବରୁ ଅଛି, ତୁମେ ଜାଣ ।”

କୁମୁଦିନୀ ସମୁଦ୍ର ଆଡ଼କୁ ଚାହିଁ କହିଲେ, “ତାକୁ ଦୋଷ ବୋଲି କିପରି ବା କୁହାଯିବ, ହଁ ସେକଥା ତ କିଛି କହିଲ ନାହିଁ । ଶୋଭାଯାତ୍ରା ସାଙ୍ଗରେ ତୁମେ ଥିଲ ନା ନାହିଁ ? ଥିଲ ଯେବେ ଲାଠି ମାଡ଼ରୁ କିପରି ଅବ୍ୟାହତି ପାଇଲ ?”

ପୁଣି ସେ ଅପ୍ରୀତିକର କଥା ଉଠିବାରୁ ଲାଲମୋହନ ଟିକିଏ ଇତସ୍ତତଃ ହୋଇ କହିଲେ, “ମୁଁ ଶୋଭାଯାତ୍ରା ସଙ୍ଗରେ ଯାଇ ନ ଥିଲି ।” ଏତିକି ଉତ୍ତର କାଳେ ଯଥେଷ୍ଟ ନ ହେବ ସେଥିପାଇଁ କହିବାରେ ଲାଗିଲେ କିପରି ଅଖିଆ ଅପିଆ ବୁଲି ସେ ଲୋକଙ୍କୁ ମତାଇ ଥିଲେ ।

ସବୁ କଥା ଶୁଣିସାରି କିଛି ସମୟ ନୀରବ ରହି କୁମୁଦିନୀ କହିଲେ, "ଉତ୍ତେଜନା ତୁମ୍ଭଙ୍କୁ ଖୁବ୍ ସୁଖ ଲାଗେ । କିନ୍ତୁ ତାର ପରିଣାମ ଆଜି ସୁଦ୍ଧା ଭୋଗିବାର ଅବକାଶ ପାଇନାହଁ । ତେଣୁ ସେ ଉତ୍ତେଜନା ଉପଭୋଗ ପ୍ରକୃତ ପରିପକ୍ୱ ହୋଇନାହିଁ ।" ଏ କଥା ଲାଲମୋହନଙ୍କୁ ସହ୍ୟ ହେଉ ନ ଥାଏ । ସେ ବ୍ୟସ୍ତ ହୋଇ କହିଲେ, "ସମସ୍ତ ପରିଣାମ ସହ୍ୟ କରିବା ପାଇଁ ମୁଁ ପ୍ରସ୍ତୁତ । ମୋତେ କଣ କାପୁରୁଷ ବୋଲି ମନେ କରୁଛ ?" ଏ କଥାରେ କୁମୁଦିନୀ କିଛି ନ କହି ସମୁଦ୍ର ସେ ପାରିରେ ଆକାଶରେ ଖଣ୍ଡେ ମେଘ କିପରି ସୁନ୍ଦର ଦେଖା ଯାଉଛି ସେ ଆଡ଼କୁ ଲାଲମୋହନଙ୍କ ଦୃଷ୍ଟି ଆକର୍ଷଣ କଲେ । ଲାଲମୋହନ ମଧ୍ୟ ସେ ସୌନ୍ଦର୍ଯ୍ୟର ଉପଲବ୍ଧିରେ ସାଥୀ ହେଲେ । ତା' ପରେ ପୁଣି ଲାଲମୋହନ ଆରମ୍ଭ କଲେ, "ମୁଁ ଏଠୁ ଗିବା ଦିନ ଯେ ଚିଠି ଖଣ୍ଡ ଦେଇଥିଲି ସେ ବିଷୟ ମୁଁ ବହୁତ ଭାବୁଛି ।" କୁମୁଦିନୀ ଗମ୍ଭୀର ହୋଇ କହିଲେ, 'କଣ ଭାବୁଛ ?' ଲାଲମୋହନ ପ୍ରସନ୍ନ ଭାବରେ କହିଲେ "ଭାବୁଛି ମୁଁ ନିଜକୁ ତୁମ୍ଭଠାରେ ପୂରାପୂରି ସମର୍ପଣ କରିବି ।" କୁମୁଦିନୀ ସେହିପରି ଗମ୍ଭୀର ହୋଇ କହିଲେ, "ଅର୍ଥାତ୍ କଣ କରିବେ ?" ଲାଲମୋହନ ହସି ଦେଇ କହିଲେ, "ତାର ଅର୍ଥ ମୁଁ କିଛି କହି ପାରିବି ନାହିଁ । ଯେତିକି କହିଲି ସେତିକି ।" କିଛିକ୍ଷଣ ନୀରବ ରହି କୁମୁଦିନୀ କହିଲେ, "ବାସ୍ତବିକ ସେ ମୋର ଦୁର୍ବଳତା । ମୁଁ ସେ ପତ୍ର ପ୍ରତ୍ୟାହାର କରି ନେଉଛି ।" ଲାଲମୋହନ ବ୍ୟସ୍ତ ହୋଇ କହିଲେ, "କି ଦୁର୍ବଳତା ?" କୁମୁଦିନୀ ଆକାଶକୁ ଚାହିଁ ଏକ ଦୀର୍ଘ ନିଃଶ୍ୱାସ ପକାଇ ଧୀରେ ଧୀରେ ଗୁଣ୍ଟି ଗୁଣ୍ଟି କହିଲେ, "ବିବାହିତ ଜୀବନର ଚିନ୍ତାହିଁ ମୋର ଏକ ଦୁର୍ବଳତା ।"

ଲାଲମୋହନ ଅଧୀର ହୋଇ କହିଲେ, "କ୍ଷମା ଦିଅ ଏଇ ଥରକ ମୋତେ । ମୋର ଆଚରଣହିଁ ତୁମ୍ଭଙ୍କୁ ଉତ୍ତ୍ୟକ୍ତ କରୁଛି ।"

କୁମୁଦିନୀ ହସି ହସି କହିଲେ, "ବ୍ୟସ୍ତ ହୁଅନ୍ତୁ ନାହିଁ ଲାଲମୋହନ ବାବୁ—ଦିନ ସାରା ଖରାରେ ବୁଲି ବୁଲି ତୁମ୍ଭର ମନ ତାତିଛି ଟିକିଏ ଗରୁ

ଚଳ ଛାଇରେ ବସି ପଢ଼ିବା ପାଇଁ—ତୁମେ ଚିରକାଳ ଛାଇରେ ବସି ରହିବା ଲୋକ ନୁହ—ବା ମୁଁ ମଧ୍ୟ ଗଛତଳ ଛାଇ ପରି ସ୍ଥିର ନୁହେଁ । ନିବାସମାନଙ୍କ ଜୀବନ ଅତିବାହିତ କରିବାରେ ଯେତିକି ଆନନ୍ଦ ତା ଠାରୁ ବେଶୀ ଆଶା କରିବାହିଁ ଅନ୍ୟାୟ । ଛାଡ଼ ସେ କଥା—ଆଜି ; ଦାକ୍ତରବାବୁଙ୍କ ସହିତ ଚାଲି ଦେଖା କରିବ ।”

ଲାଲମୋହନ ଅନ୍ୟମନସ୍କ ଭାବରେ କହିଲେ “ମୁଁ ତାଙ୍କୁ ଭଲ କରି ଜାଣେ । ଆମେ ଏକ ସାଙ୍ଗରେ ଦେଶର କାମ କରିବା ପାଇଁ ବାହାରିଥିଲୁ । ସେ ମୋଠାରୁ ବୋଧହୁଏ ବର୍ଷେ ଦୁଇ ବର୍ଷ ବଡ଼ । ମାତ୍ର କାର୍ଯ୍ୟର ପଥରେ ସେ ଓ ମୁଁ ଦୁହେଁ ପରସ୍ପରଠାରୁ ବହୁଦୂରକୁ ଚାଲି ଯାଇଛୁ । ତଥାପି ମୋର ତାଙ୍କ ସହିତ ଖୁବ୍ ବନ୍ଧୁତା ଅଛି । କିନ୍ତୁ ମୁଁ ଏଥର ଏକ ଦୃଢ଼ ସିଦ୍ଧାନ୍ତ ନେଇ ପୁରୀକୁ ଆସିଥିଲି ।”

କୁମୁଦିନୀ—“କି ସିଦ୍ଧାନ୍ତ ?”

ଲାଲମୋହନ—“ତୁମ୍ଭ ସହିତ ମୋର ଆଜୀବନ ସମ୍ପର୍କ ସ୍ଥାପନ କରିବି ଓ ତାପରେ ଆଉ ଯାହା କିଛି କରିବ । କାରଣ ମୁଁ ଜାଣୁଛି ମୋର ଦୋଷ ଯେ କାମରେ ମାତିଲେ; ମୋ ମନ ଭିତରେ ଯେ ସୂକ୍ଷ୍ମ ଓ ସରସ ଭାବ କିଛି ଅଛି ତାକୁ ଦଳି ମଳି ଦେଇ ଚାଲିଯାଏ ।”

କୁମୁଦିନୀ—“ଚିର ସମ୍ପର୍କ ସ୍ଥାପନ ପରେ କଅଣ ତୁମର ମନ ଅନ୍ୟ ପ୍ରକାର ହୋଇଯିବ ?”

ଲାଲମୋହନ—“ନିଶ୍ଚୟ, ହୁଏତ ମୁଁ ଏକ ନୂଆ ପ୍ରକାର ଲୋକ ହୋଇ ଯିବି । ଯେଉଁ ସରସତାକୁ ବର୍ତ୍ତମାନ ଶୁଖିଲା ଫୁଲ ପରି ଛିଣ୍ଡାଇ ଫୋପାଡ଼ି ଦେଉଛି, ସେଇ ସେତେବେଳେ ଆଦରର ଫୁଲ କରି ହୋଇ ଜୀବନର ସୌରଭ ବଢ଼ାଇବ । ସେତେବେଳେ ହୁଏତ କର୍ମ ତତ୍ପରତା ବର୍ତ୍ତମାନ ଠାରୁ କମିଯିବ । ଯାଉ କମି ସେ ବରଂ ଭଲ—ମାତ୍ର ନୀରସ ଜୀବନ

ଯେତେବେଳେ ମୋ ମନ ଉପରେ ଚାପି ପଡେ ସେତେବେଳେ ତ ଏପରି ଅସହ୍ୟ ବୋଧହୁଏ ଯେ, କାମ କରିବାର ପ୍ରେରଣା ଲୋପ ପାଇଯାଏ । ମୁଁ କେବଳ ଚାରିଆଡେ ମରୁଭୂମି ଦେଖେ ।”

“ଆଚ୍ଛା, ସେ ବିଷୟ ପରେ ଆଲୋଚନା ହେବ । ଚାଲ ବର୍ତ୍ତମାନ ଫେରିବା ।” ଏହା କହି କୁମୁଦିନୀଙ୍କ ସହିତ ଲାଲମୋହନ ଫେରିଲେ ।

ଅସ୍ପଷ୍ଟ ଭାବରେ କୁମୁଦିନୀ ଶୁଣି ପାରିବା ଭଳି ଲାଲମୋହନ କହିଲେ, “ଏଥର ଅନିର୍ଦ୍ଦିଷ୍ଟ କାଳ ପାଇଁ ମୁଁ ଏଇଠି ରହୁଛି ।”

ବାଟରେ ପୁରୀର ଜଳବାୟୁ ଓ ଅତୀତର ଇତିହାସ କଥା ପଡିଲା । କଥାବାର୍ତ୍ତା କହୁ କହୁ ଦୋଳମଣ୍ଡପ ସାହି ଛକରେ ପହଞ୍ଚି କୁମୁଦିନୀ ଲାଲମୋହନଙ୍କୁ ବିଦାୟ ଦେବାବେଳେ ପଚାରିଲେ, “ତୁମେ ଆସିବ ବିଶ୍ୱମ୍ଭର ବାବୁଙ୍କ ଘରକୁ, ସେଇଠି କାବ୍ୟସିନ୍ଧୁ ବାବୁ ଅଛନ୍ତି ।’

ଲାଲମୋହନ ଅନ୍ୟମନସ୍କ ଭାବେ ଉତ୍ତର କଲେ “ମୁଁ ତାଙ୍କ ସହିତ ପରେ ଦେଖା କରିବି । ଆଜି ରାତିକ ମୁଁ ଏକାକୀ କିଛି ଚିନ୍ତା କରିବି ।”

—୭—

ବିଶ୍ୱମ୍ଭର ବାବୁଙ୍କ ବାହାର ପଟ ପିଣ୍ଡାରେ ଖଣ୍ଡେ ସପ ଉପରେ ଦେବୀସିଂହ ବାବୁ ବସିଛନ୍ତି । ଲଣ୍ଠନଟିଏ ଥୁଆ ହୋଇଛି । ଗୋଟାଏ ପାଖରେ ଖଣ୍ଡେ ଦି ଖଣ୍ଡ ବହି ଓ ଖଣ୍ଡେ ଖବର କାଗଜ, ଆଉ ଗୋଟିଏ ପାଖରେ ପେଡ଼ି ଅରଟିଏ ମୁଦା ହୋଇ ରଖା ହୋଇଛି । ଆଉ କେହି ସେଠି ନାହାନ୍ତି । ଦେବୀସିଂହ ବାବୁ ଏକାକୀ ବସି ପ୍ରାର୍ଥନା କରୁଛନ୍ତି । ଚକାମାଡ଼ି ସିଧା ହୋଇ ବସି ଆଖି ବୁଜି ମନେ ମନେ କଅଣ ପାଠ କରୁଛନ୍ତି । ବାହାର ପାଖ ଘରେ ବିଶ୍ୱମ୍ଭର ବାବୁଙ୍କ ସିରସ୍ତା ଜମିଛି । ଦୁଇ ତିନି ଜଣ ମହକିଲ ବସିଛନ୍ତି । ସେମାନଙ୍କ ଭିତରୁ ଜଣେ ଓକିଲ ବାବୁଙ୍କୁ ଗୋଟିଏ ମକଦ୍ଦମାର ବିବରଣୀ ଶୁଣାଉଛି । ଏହି ସମୟରେ ବୁମୂଦନ ସେଠାରେ ଆସି ପହଞ୍ଚିଗଲେ । ବିଶ୍ୱମ୍ଭର ବାବୁ ସମ୍ଭ୍ରମ ସହକାରେ ଛିଡ଼ା ହୋଇପଡ଼ି 'ବସନ୍ତୁ' ବୋଲି କହି ଚୌକି ଦେଖାଇ ଦେଲେ ।

ବୁମୂଦନ ହିନ୍ଦୁସ୍ଥାନୀରେ ପଚାରିଲେ, "ମୈ ଆୟି ହୁଁ ଦେବୀସିଂହ ବାବୁ ସେ ମିଲନକେ ଲିୟେ । ବାବୁ କାହାଁ ଠହରତେହେଁ ?"

ବିଶ୍ୱମ୍ଭରବାବୁ ହିନ୍ଦୁସ୍ଥାନୀ କଥା ଶୁଣି ଆହୁରି ବେଶୀ ସସମ୍ଭ୍ରମରେ ଟିକିଏ ଆଗକୁ ଚାଲିଯାଇ କହିଲେ, "ଆପ୍ ବୈଠିୟେ । ମେଁ ପୁଛକେ ଆତାହୁଁ ।"

କୁମୁଦନୀ ଗୋଟିଏ ଚୌକିରେ ବସିଲେ ।

ବିଶ୍ୱମ୍ଭର ବାବୁ ଷ୍ଟେସନ ପିଣ୍ଡାକୁ ଯାଇ ଦେଖିଲେ ଯେ ଦିବ୍ୟସିଂହ ବାବୁ ସେହିକ୍ଷଣି ପ୍ରାର୍ଥନା ଶେଷ କରି ଖବର କାଗଜ ଆଡକୁ ହାତ ବଢ଼ାଉଛନ୍ତି । "ଆପଣଙ୍କ ସହିତ ଜଣେ ହିନ୍ଦୁସ୍ଥାନୀ ମହିଳା ଦେଖା କରିବାକୁ ଆସିଛନ୍ତି"—ବିଶ୍ୱମ୍ଭରଙ୍କର ଏ ପ୍ରଶ୍ନର ଉତ୍ତରରେ ଦିବ୍ୟସିଂହ ବାବୁ ଛିଡା ହୋଇପଡ଼ି କହିଲେ, 'କାହାନ୍ତି ସେ ? ଡାକନ୍ତୁ ।' ବିଶ୍ୱମ୍ଭର ବାବୁ ଆସିଲେ ଓ ତାଙ୍କ ସଙ୍ଗେ ସଙ୍ଗେ ମଧ ଦିବ୍ୟସିଂହ ବାବୁ ଆଗନ୍ତୁକାଙ୍କୁ ପାଛୋଟି ନେବାକୁ ଆସିଲେ । ତାପରେ କୁମୁଦନୀ ଦିବ୍ୟସିଂହ ବାବୁଙ୍କ ସହ ସେ ପିଣ୍ଡାକୁ ଗଲେ ।

ଦିବ୍ୟସିଂହ ବାବୁ ଭଲ ହିନ୍ଦି କହି ପାରନ୍ତି ନାହିଁ । ତଥାପି ଦରଖଣ୍ଡିଆ ହିନ୍ଦିରେ କହିଲେ, "ଆପ୍‌କା ଚିଠି ଅଜ୍ ମିଲା । ହାମ୍ ତୁରନ୍ତ ଜବାବ ଦିଆ । କ୍ୟା କାମ୍ ହୈ ? ହାମ୍ ଆପ୍‌କା ବାସ୍ତେ କ୍ୟା କର୍ ସକ୍‌ତେ ହେଁ ।'

କୁମୁଦନୀ ଜାଣିପାରିଲେ ଯେ ହିନ୍ଦିରେ କଥା କହିବାକୁ ଦିବ୍ୟସିଂହ ବାବୁଙ୍କୁ ଅସୁବିଧା ହେଉଛି । ତେଣୁ ସେ ଟିକିଏ ହସି ଦେଇ ନମ୍ର ଭାବରେ ଓଡିଆରେ କହିଲେ, "ଆପଣ ଓଡ଼ିଆରେ କହନ୍ତୁ । ମୁଁ ଓଡିଆଣୀ ।"

ଦିବ୍ୟସିଂହ ବାବୁ ବିସ୍ମିତ ହୋଇ କହିଲେ, "ତେବେ ମୋ ନିକଟକୁ ହିନ୍ଦିରେ କାହିଁକି ପତ୍ର ଦେଇଥିଲେ ?"

କୁମୁଦନୀ କହିଲେ, "ମୋର ଅନ୍ତର ଓଡିଆଣୀ, ବାହାର ହିନ୍ଦୁସ୍ଥାନୀ । ଚିଠି ପତ୍ର ବାହାରର ବିଷୟ ବୋଲି ହିନ୍ଦିରେ ଚିଠି ଦେଇଥିଲି । ବର୍ତ୍ତମାନ ଦେଖା ସାକ୍ଷାତବେଳେ, ଅନ୍ତରର ଭାବ ଆଦାନ ପ୍ରଦାନ ବେଳେ ଓଡିଆ ଭାଷାହିଁ ସୁବିଧାଜନକ ହେବ ।"

ତାପରେ ଦିବ୍ୟସିଂହ ବାବୁ ଶୁଦ୍ଧ ସରଳ ଓଡିଆ କୁମୁଦନୀଙ୍କ ମୁହଁରୁ ଶୁଣି କୁତୂହଳୀ ହୋଇ ପଚାରିଲେ, "ଆପଣଙ୍କ ଘର କେଉଁଠି ?" କୁମୁଦନୀ ଗମ୍ଭୀର ହୋଇ କହିଲେ,' "କ୍ଷମା କରନ୍ତୁ ।" ମୋ ପରିଚୟ କେହି ମୋତେ ପଚାରିଲେ ମୋ ମନରେ ବିଶେଷ ଆଘାତ

ହୁଏ । ତେଣୁ ସେ ସମ୍ବନ୍ଧରେ ମୁଁ କିଛି କହିବ ନାହିଁ । ହୁଏତ ପରେ ଆପଣ ଜାଣି ପାରିବେ ।”

ଦିବ୍ୟସିଂହ ବାବୁ ଆଉ ସେ କଥା ଉଠାଇଲେ ନାହିଁ । ତା ପରେ ସେ ପଚାରିଲେ, “କଅଣ ମୋଠାରେ କାମ ଅଛି ?” କୁମୁଦିନୀ ଟିକିଏ ଚିନ୍ତା କରି କହିଲେ, “ମୁଁ କଲିକତାରୁ ଓଡ଼ିଶା ଆସିଥିଲି ନାରୀ ବାଣିଜ୍ୟ ସମସ୍ୟା ଅନୁସନ୍ଧାନ କରିବାପାଇଁ । ଆପଣ ଜାଣନ୍ତି ସମାଜରେ ନାରୀହିଁ ସବୁଠାରୁ ବେଶୀ ନିର୍ଯାତିତ । ସେ ନିର୍ଯାତନାର ସୁବିଧା ନେଇ ଅନେକ ଦୁଷ୍ଟ ଲୋକ ନାରୀମାନଙ୍କୁ ଗୋରୁ ଗାଈ ପରି ଖରିଦ ବିକ୍ରି କରୁଛନ୍ତି । ଏ ଦିଗରେ ଆପଣମାନଙ୍କ ଦୃଷ୍ଟି ପଡ଼ିଲେ ନାରୀଙ୍କର ମହା କଲ୍ୟାଣ ସାଧିତ ହୁଅନ୍ତା ।”

ଦିବ୍ୟସିଂହ ବାବୁ ଧୀରେ ଧୀରେ କହିଲେ, “ଏ ସମ୍ବନ୍ଧରେ ଖବର-କାଗଜରେ ମଝିରେ ମଝିରେ କେତେଥର ଆଲୋଚନା ହେବାର ମୁଁ ଜାଣେ । ମାତ୍ର ସେ ସମ୍ପର୍କରେ କଅଣ କରାଯାଇ ପାରିବ ?”

କୁମୁଦିନୀ—“ଆପଣମାନେ ସମସ୍ତେ ଦୃଷ୍ଟି ଦେଲେ ଏ ନୃଶଂସ ବ୍ୟବସାୟ ବନ୍ଦ ହୋଇ ଯାଆନ୍ତା ।”

ଦିବ୍ୟସିଂହ ବାବୁ—“ଦେଶ ଯେ ଅବସ୍ଥାରେ ପଡ଼ିଛି, ଯେଉଁ ଆଡ଼କୁ ଚାହିଁଲେ ବିବିଧ ସମସ୍ୟାମାନ ଅସୁର ପରି ଛିଡ଼ା ହୋଇଛନ୍ତି । ସେ ସବୁର ସମ୍ମୁଖୀନ ହେବାକୁ ସାହସ କୁଳାଉ ନାହିଁ । ତଥାପି ସାଧାରଣ ଜାଗରଣ ସଙ୍ଗେ ସଙ୍ଗେ ବହୁ ଲୋକ ବହୁବିଧ କାମରେ ନିସ୍ୱାର୍ଥ ଭାବରେ ଲାଗି ପଡ଼ିଲେ ସବୁ ସମସ୍ୟାର ସମାଧାନ ନିକଟ ହୋଇ ଆସିବ ।”

କୁମୁଦିନୀ—“ଆପଣ କଣ ମନେ କରନ୍ତି ନାହିଁ ଯେ ନାରୀ ସମସ୍ୟାହିଁ ସବୁଠାରୁ ବଡ଼ ସମସ୍ୟା ।”

ଦିବ୍ୟସିଂହ ବାବୁ—"ପ୍ରତ୍ୟେକ ସମସ୍ୟା ନିଜ ନିଜ ସ୍ଥଳରେ ଅଲଗା ଅଲଗା । ଏ ବିଷୟରେ ତୁଳନା କରିବା କଠିନ । ନାବ୍ୟ ବାଣିଜ୍ୟ କଥା ଯେ ଆପଣ କହୁଛନ୍ତି, ଆପଣ ଭଲ କରି ତଳକୁ ଯାଇ ଦେଖନ୍ତୁ ଜାଣିବେ—ଏଥିର ମୂଳରେ ଜାତି ପ୍ରଥା ରହିଛି । ଏହି ଜାତି ବିଭେଦ ଯୋଗୁଁ ସମାଜ ଖଣ୍ଡ ଖଣ୍ଡ କିଆରି ଭଳି ହୋଇଯାଇଛି । ତା ଗୃହପାଖରେ ବଡ଼ ବଡ଼ ଅଣ୍ଟା ବନ୍ଧମାନ ଛିଡ଼ା ହୋଇଛି । ଗୋଟିଏ କିଆରୀରେ ପାଣି ବେଶୀ ହୋଇ ଧାନ ଗଛ ସଢି ଯାଇଛି । ଟିକିଏ ଦୂରରେ ଅନ୍ୟ କିଆରୀରେ ପାଣି ନ ପାଇ ଗଛ ମରି ଯାଉଛି । ଗୋଟିଏ ଜାତିରେ କନ୍ୟାର ଅଭାବ ଅନ୍ୟ ଜାତିରେ ବରର ଅଭାବ । ତେଣୁ ଲବ୍ଧଲବ୍ଧ କରି କୌଣସି ପ୍ରକାରେ କାମ ଚଳାଇବାର ଅବକାଶ ମିଳୁଛି । ଦୁଷ୍ଟ ଲୋକେ ତାର ସୁବିଧା ନାନା ପ୍ରକାରେ ନେଉଛନ୍ତି ।

କୁମୁଦିନୀ—"ବିନ୍ଦୁ ବେଶ୍ୟା ବ୍ୟବସାୟ ପାଇଁ ବହୁ ସଂଖ୍ୟାର ନାରୀ ଆମଦାନୀ—ରପ୍ତାନୀ ହେଉଛନ୍ତି ।"

ଦିବ୍ୟସିଂହ ବାବୁ—"ସେ କଥା ମୁଁ ଜାଣେ । ତାର କାରଣ ଅନୁସନ୍ଧାନ କଲେ ଜାଣି ପାରିବ, ସେହି ଜାତି ପ୍ରଥା । ଯେ ଟିକିଏ ସମାଜର ନିୟମର ବାହାରକୁ ଚାଲିଗଲା ବା ଚାଲିଗଲା ବୋଲି ଯାହା ଉପରେ ସନ୍ଦେହ ହେଲା ତାକୁ ବାହାର କରିଦିଅ । ଯେ ବାହାରିଗଲା ତାର କପାଳରେ କାଳି ଉଡ଼ିଲା, ତେଣିକି ସେ ମଲା କି ଗଲା କିଏ ତା ଖବର ରଖୁଛି ?"

କିଛିକ୍ଷଣ ନୀରବ ରହିଯାଇ ପୁଣି ଦିବ୍ୟସିଂହ ବାବୁ କହିଲେ, "ଯେତେ ମୁଁ ଭାବୁଛି, ଏ ଦେଶର ବିଭିନ୍ନ ସମସ୍ୟା, ମୋର ବିଶ୍ୱାସ କ୍ରମଶଃ ଦୃଢ଼ ହେଉଛି ଯେ ଜାତି ଭେଦହିଁ ଏ ଦେଶର ସର୍ବନାଶର ମୂଳ । ଆପଣ ହୁଏତ ଗାଁର ଜୀବନ ଠିକ୍‌ଠିକ୍ କରି ଆଲୋଚନା କରି ନାହିଁବେ । ମୁଁ ଗାଁରେହିଁ ମୋର ସମସ୍ତ ଶକ୍ତି ଖର୍ଚ୍ଚ କରୁଛି । ସେମାନଙ୍କ ଜୀବନର ପ୍ରତ୍ୟେକ ଅଂଶକୁ ଭଲ କରି ଦେଖୁଛି—କି ଦୁଃଖ କି ଅତ୍ୟାଚାର ଏ ଦେଶ ଭୋଗ କରୁଛି । ଅଧିକାଂଶର ମୂଳ ସେହି ଯେଉଁ ଜାତିର ଭାବ । ଅନ୍ୟକୁ ନିଜର କରି

ନେବାର ପ୍ରବୃତ୍ତି ପରିବର୍ତ୍ତେ ସମସ୍ତଙ୍କୁ କଳଠାରୁ ଅଲଗା କରିବାର ଉଦ୍ଭ୍ରାନ୍ତ ରକ୍ତ ମାଂସରେ ରହି ଯାଇଛି ।

କୁମୁଦିନୀ—"ଆପଣ ଏ ଦିଗରେ କି ସମାଧାନ ଚିନ୍ତା କରୁଛନ୍ତି ?"

ଦିବ୍ୟସିଂହ ବାବୁ—"ସମାଧାନ ବଡ଼ ସହଜ ନୁହେଁ, ମୁଁ ମଧ୍ୟ ନିଜକୁ ତାର ଉପଯୁକ୍ତ ବୋଲି ମନେ କରେ ନାହିଁ । ଏକ ପ୍ରବଳ ଜାତୀୟତାର ସ୍ରୋତ ଓତଃପ୍ରୋତ ହୋଇ ଯଦି ଏ ଦେଶରେ ବହିବ ତେବେ ସେ ସମସ୍ୟାର ସମାଧାନ ହେବ । ସେଥିପାଇଁ ବହୁଲୋକ ଜୀବନ ଦେଇ କାମ କରିବାକୁ ହେବ । କାମ ହେଉଛି, ନିସ୍ୱାର୍ଥ ଜନସେବା । ଯେ ଯେତିକି ଯେଉଁ ଦିଗରେ ପାରୁଛି, ସେ ସେତିକି ସେ ଦିଗରେ କରୁ । ସମସ୍ତ କାମର ସଂମବେତ ଫଳ ଦିନେ ଏ ଦେଶକୁ ବାଟକୁ ଆଣିବ । ଆପଣ ଯେଉଁ କାମକୁ ବଡ଼ ବୋଲି ଭାବୁଛନ୍ତି ଅର୍ଥାତ୍ ଏହି ନାରୀ ବାଣିଜ୍ୟ ବନ୍ଦ କରିବା, ଲାଗନ୍ତୁ ମନ ପ୍ରାଣ ଦେଇ । ସେଥିରେ ଛୋଟ ଗଡ଼ିଆ ପାଣି ବାମ୍ପ ହୋଇ ଯେପରି ମେଘରେ ମିଶେ ସେ ମଧ୍ୟ ସେହିପରି ସେହି ମହତ୍ ଉଦ୍ଦେଶ୍ୟ ପୂର୍ତ୍ତିରେ ସାହାଯ୍ୟ କରିବ ।"

କୁମୁଦିନୀ—"ଆପଣ କେତେଦିନ ଏଠି ଅଛନ୍ତି ?"

ଦିବ୍ୟସିଂହ ବାବୁ—"ମୁଁ ଆସିଛି ବ୍ରହ୍ମଗିରି ଯିବାପାଇଁ, ସେଠି ଲୋକଙ୍କର ଦୁର୍ଭିକ୍ଷ ପଡ଼ିଛି ।"

କୁମୁଦିନୀ—"କାହିଁ ! ଖବରକାଗଜରେ ସେ କଥା କିଛି ତ ବାହାରି ନାହିଁ ।"

ଦିବ୍ୟସିଂହ ବାବୁ ହସି ଦେଇ କହିଲେ, "ଆପଣ ଜାଣନ୍ତି ନାହିଁ, ଉପାସ ରହିବା ଏପରି ଏକ ସାଧାରଣ କଥା ହୋଇ ଗଲାଣି ଯେ ସେଥିପ୍ରତି ଦୃଷ୍ଟି ପଡ଼ିବା କଠିନ ହୋଇ ପଡ଼ିଛି । ଯେତେବେଳେ ଯେଉଁଠି ସବୁ ଦିରପୂର ସେଠି ଅଭାବ ପଡ଼ିଲେ ତାହା ଆଖିରେ ପଡ଼େ—ଲୋକେ ପାଟି କରି ଉଠନ୍ତି । ମାତ୍ର ଯେଉଁଠି ସବୁବେଳେ ଅଭାବ ସେଠି ଟିକିଏ ବେଶୀ ଅଭାବ ଜଣା ପଡ଼ିଲେ ହୁଏତ ରବୀନ୍ଦ୍ର ନାଥଙ୍କ ଭାଷାରେ ଆଶ୍ଚର୍ଯ୍ୟ ହୋଇ

କେହ କେହ କହିବେ, 'ଅର୍ଦ୍ଧାଶନେ କଟିଗଲା ଚିରକାଳ ଯା'ର, ଅଦ୍ୟାବଧି ଅନଶନ ନ ହେଲା ଅଭ୍ୟାସ' । ଏହି ଓଡ଼ିଶାରେ ଯେ କୌଣସି ବର୍ଷ ଯେ କୌଣସି ସମୟରେ ଏପରି ଅନେକ ଅଞ୍ଚଳ ମିଳିବ, ଯେଉଁଠି ଲୋକେ ଉପାସ ରହୁଛନ୍ତି । ପ୍ରବଳ ଶାସନ ତଳେ ଚପିଯାଇ ପ୍ରତିକାର ଶୂନ୍ୟ ହୋଇ ଉପାସ ରହିବା ଲୋକଙ୍କ ଦେହ ସହା ହୋଇଗଲାଣି । ଭଗବାନଙ୍କ ରାଜତ୍ୱରେ ମଣିଷର ଏ ଦଶା"—ଏହା କହୁଁ କହୁଁ ଦିବ୍ୟସିଂହ ବାବୁଙ୍କ ଆଖି ଛଳ ଛଳ ହୋଇଗଲା । କୁମୁଦିନୀ ତାଙ୍କ ଆଡ଼କୁ ଏକଠେଇ କରି ଅନାଇଥାନ୍ତି । କଥା ଶୁଣୁ ଶୁଣୁ ତାଙ୍କ ଆଖି ମଧ୍ୟ ଛଳ ଛଳ ହୋଇ ଆସିଲା । ନିଜକୁ ସମ୍ଭାଳି ନେଇ ସେ ଧୀରେ ଧୀରେ କହିଲେ, "ଆପଣଙ୍କ ସାଙ୍ଗରେ ମୋତେ ଯିବାକୁ ଅନୁମତି ଦେବେ ?"

ଦିବ୍ୟସିଂହ ବାବୁ—"ସେଥିରେ ମୋର ଆପତ୍ତି କଅଣ ? ବରଂ ମୁଁ ଖୁସି ହେବ । ତେବେ ମୁଁ କେବେ ଯିବ ତୁମ୍ଭଙ୍କୁ ଜଣାଇବ । କାରଣ ଏଠାରେ କିଛି ସାହାଯ୍ୟ ସଂଗ୍ରହ କରି ସାଙ୍ଗରେ ନେଇ ଯିବ ବୋଲି ଭାବୁଛି । ଆପଣ କେଉଁଠି ରହୁଛନ୍ତି ? ମୁଁ ସେଠିକି ଖବର ପଠାଇବ ।"

କୁମୁଦିନୀ ଟିକିଏ ବ୍ୟସ୍ତ ହୋଇ ପଡ଼ି କହିଲେ, "ଦରକାର ନାହିଁ । ମୁଁ ନିତି ଏହି ସମୟରେ ଆପଣଙ୍କର ଏଠାକୁ ଆସିବ । ମୁଁ ନିଜେ ଜାଣିଯିବ ।"

ଦିବ୍ୟସିଂହ ବାବୁ—"ତେବେ ଆଜି ବିଦାୟ, ବଡ଼ ସୁଖୀ ହେଲି ଆପଣଙ୍କ ସହିତ ଆଲାପ କରି । ସେବାବ୍ରତ ଯେ ଆପଣ ଗ୍ରହଣ କରିଛନ୍ତି ଏହା ଗୌରବର ବିଷୟ ।"

କୁମୁଦିନୀ ନମ୍ର ଭାବରେ ନମସ୍କାର କରି ଚାଲିଗଲେ ।



ସକାଳ୍ ଧବଂସିଂହ ବାବୁ ବସାରୁ ବାହାରି ବଡ ଦାଣ୍ଡରେ ହୋଇଛନ୍ତି, ଏହି ସମୟରେ ଲଲମୋହନ ଅନ୍ୟମନସ୍କଭାବରେ କୁଆଡୁ ଆସୁଥିଲେ, ଦୁହିଁଙ୍କର ଭେଟ ହେଲା । ଧବଂସିଂହ ବାବୁ ଆନନ୍ଦ ପ୍ରକାଶ କରି କହିଲେ "କି ହେଲରେ ମୋହନ, ଏଣେ କୁଆଡ଼େ ? ପୁରୀ କେବେ ଆସିଛ ? ଲଲମୋହନ ମଧ୍ୟ ସେହିପରି ଆନନ୍ଦ ଭାବ ପ୍ରକାଶ କରି କହିଲେ, "ଆପଣଙ୍କ ଆସିବା ଖବର ମୁଁ ପାଇଥିଲି, କେତେ ଦିନ ରହିବେ ?"

ଧବଂସିଂହ ବାବୁ—"ମୁଁ ଆସିଛି ଏକ ଅଡୁଆ କାମରେ । ସେ ହେଉଛି ବ୍ରହ୍ମଗିରି ପାଇଁ କିଛି ସାହାଯ୍ୟ ସଂଗ୍ରହ । ସେଇଥିରେ ବାହାରିଛି । ଆସ ଏକ ସାଙ୍ଗରେ ଯିବା । ତୁମେ ବାହାରିଲେ ବହୁତ କାମ ହେବ ।"

ଲଲମୋହନ—"ମୁଁ ନିତ୍ୟକର୍ମ ଶେଷ କରି ନାହିଁ । ବଡ଼ ସକାଳୁ ଉଠି ବୁଲିବାକୁ ଚାଲି ଯାଇଥିଲି । ଆଉ ଓଳି ମୁଁ ଆପଣଙ୍କ ସଙ୍ଗରେ ଯିବି ।"

ଧବଂସିଂହ ବାବୁ—"ହେଲା ତାହାହିଁ ହେଉ । କେଉଁଠି ମୁଁ ତୁମକୁ ଭେଟିବି ?"

ଲଲମୋହନ—"ମୁଁ ଏହି ହଜାରିମଲ୍ଲ ଧର୍ମଶାଳାରେ ଅଛି । ଉପର ତାଲା ନଅ ନମ୍ବର ବଖରାରେ । ଆପଣ ସେଠିକି ସିଧା ଚାଲି ଆସିବେ । ଏକ ସଙ୍ଗରେ ଯିବା ।"

ଧବଂସିଂହ ବାବୁ ପରିତୋଷ ପ୍ରକାଶ କରି ଚାଲିଗଲେ ।

ଲାଲମୋହନ ବାବୁ ଓ ଦିବ୍ୟସିଂହ ବାବୁ ଏକସଙ୍ଗରେ ସାଧାରଣ ଜୀବନ ଆରମ୍ଭ କରିଥିଲେ । ମାତ୍ର ଗତ ଦଶ ବର୍ଷରେ ପ୍ରତ୍ୟେକ ନିଜ ମନର ଗତି ଅନୁସାରେ ସାଧାରଣ କାର୍ଯ୍ୟରେ ଅଗ୍ରସର ହୋଇ ଦୁହେଁ ପରସ୍ପରଠାରୁ ଅଲଗା ହୋଇ ଯାଇଛନ୍ତି । ପରସ୍ପର ସଙ୍ଗେ ସମ୍ବନ୍ଧ ମଧ୍ୟ ତଦନୁସାରେ ଆପେ ଆପେ ଅଲକ୍ଷିତ ଭାବରେ ନିରୂପିତ ହୋଇ ଯାଇଛି । ଦିବ୍ୟସିଂହ ବାବୁଙ୍କୁ 'ଆପଣ' ବୋଲି ଲାଲମୋହନ ବାବୁ ସମ୍ବୋଧନ କରନ୍ତି । ମାତ୍ର ତାଙ୍କୁ ଦିବ୍ୟସିଂହ ବାବୁ 'ତୁମେ' ବୋଲି କହନ୍ତି । ଏଥିରୁ ପରସ୍ପର ଭିତରେ ବ୍ୟବଧାନ ଓ ସମ୍ବନ୍ଧ ସହଜରେ ଜଣାଯିବ । ଉଭୟଙ୍କ ଆଚରଣ ଦେଖିଲେ ଜଣେ ମନେ କରିବ, ଦିବ୍ୟସିଂହ ବାବୁ ଯେପରି ବୟସରେ ବହୁତ ବଡ଼; କାରଣ ସେ ଦାଢ଼ି ଛାଡ଼ି ଦେଇଛନ୍ତି । ଖଦଡ଼ ଲୁଗା ପିନ୍ଧନ୍ତି । ଉପରେ ଖଦଡ଼ ଚାଦର ପକାନ୍ତି । ଜାମା ପିନ୍ଧନ୍ତି ନାହିଁ । ଜୋତା ମାଡ଼ିବା ସେ ଭୁଲି ଗଲେଣି । ଅନ୍ୟ ଦିଗରେ ଲାଲମୋହନ ପ୍ରାୟ ପ୍ରତିଦିନ କ୍ଷିଅର ହୁଅନ୍ତି । ପରିଷ୍କାର ଲୁଗା, ଜାମା ପ୍ରତି ତାଙ୍କର ଦୃଷ୍ଟି ଥାଏ । ଦିବ୍ୟସିଂହ ବାବୁଙ୍କ ସନ୍ନ୍ୟାସବେଶ ଅନ୍ୟମାନଙ୍କ ମନରେ ତାଙ୍କ ପ୍ରତି ଜ୍ୟେଷ୍ଠର ଭାବ ଜାଗ୍ରତ କରାଇବା ସଙ୍ଗେ ସଙ୍ଗେ ତାଙ୍କ ନିଜ ମନରେ ଅନ୍ୟମାନଙ୍କ ପ୍ରତି କନିଷ୍ଠର ଭାବ ମଧ୍ୟ ଜାତ କରାଉଥିଲା । ଏଣୁ ସେ ଲାଲମୋହନଙ୍କୁ କନିଷ୍ଠ ବୋଲି ମନେ କରନ୍ତି ଓ ଲାଲମୋହନ ମଧ୍ୟ ତାଙ୍କୁ ଜ୍ୟେଷ୍ଠ ବୋଲି ମନେ କରନ୍ତି ।

ଖାଇ ସାରି ଖଟିଆ ଉପରେ ପଡ଼ି ଛାତକୁ ଅନାଇ ଲାଲମୋହନ କଅଣ ଭାବୁଛନ୍ତି ଏହି ସମୟରେ ଦିବ୍ୟସିଂହ ବାବୁ ଆସି ପହଞ୍ଚିଲେ । ତର-ତରରେ ହୋଇ ଉଠିପଡ଼ି ଲାଲମୋହନ ବ୍ୟସ୍ତ ହୋଇ ପଚାରିଲେ, "ଏହି କଅଣ ବାହାରିବା ?" ଦିବ୍ୟସିଂହ ବାବୁ ସେ ଖଟିଆ ଉପରେ ବସିପଡ଼ି କହିଲେ, "ନା ବର୍ତ୍ତମାନ ଖିଆପିଆ ବେଳ । ଆଉ ଟିକିଏ ଛାଡ଼ି ବାହାରିବା । ଖାଇ ସାରି ମୁଁ ଚାଲି ଆସିଲି ତୁମ ସହିତ କଥାବାର୍ତ୍ତା ହେବାପାଇଁ । ଅନେକ ଦିନୁ ଦେଖା ହୋଇ ନାହିଁ ।" ଲାଲମୋହନ ଖଟିଆର ଆଉ

ଗୋଟିଏ ପାଖରେ ବସି କ କଥାବାର୍ତ୍ତା ଆରମ୍ଭ କରିବେ ଜାଣି ପାରିଲେ ନାହିଁ ।

ଦିବ୍ୟସିଂହ ବାବୁ କାଳଗିରି ବିଷୟ ପଚାରିଲେ । ଲଲମୋହନ ସେ ବିଷୟକୁ ସଂକ୍ଷେପରେ କହି ଶେଷ କରିଦେଲେ । ତାଙ୍କର ଯେପରି କଥ ବାର୍ତ୍ତାରେ ଉତ୍ସାହ ନାହିଁ । ତାପରେ ଯେତେବେଳେ ଦିବ୍ୟସିଂହ ବାବୁ କୁମୁଦିନୀ ବିଷୟ ଆରମ୍ଭ କଲେ,ସେତେବେଳେ ଲଲମୋହନଙ୍କର କଥାବାର୍ତ୍ତା ପ୍ରତି ସ୍ପୃହା ଜାଗ୍ରତ ହେଲା । ବିସ୍ମୟରେ ଦିବ୍ୟସିଂହ ବାବୁ କହିଲେ, "ମୁଁ ଚେଷ ରହସ୍ୟ କିଛି ବୁଝି ପାଇଲି ନାହିଁ । ଶାନ୍ତି ଓଡ଼ିଆଣୀ ତାହାଙ୍କ ବା ହିନ୍ଦୁସ୍ଥାନୀ ବୋଲୁଉଛି । ନିଜର ପରିଚୟ ମଧ ତାହାଙ୍କୁ ଗୋପନ କରୁଛି । ଅଥଚ କଥାବାର୍ତ୍ତାରେ ଏପରି ଏକ ଆନ୍ତରିକତା ରହୁଛି, ଯାହାଦ୍ୱାରା ତା ପ୍ରତି ଖୁବ୍ ଭଲ ଧାରଣା ହେଉଛି । ତୁମେ ଜାଣ ତାକୁ ?—ସେ ଏଠି କେଉଁଠି ଅଛି । କାଲି ମୋ ସହିତ ଦେଖା ହୋଇଥିଲା । ମୋ ସହିତ ବ୍ରହ୍ମଗିରି ଯିବ ବୋଲି କହୁଛି ।"

ଲଲମୋହନ ବାବୁ ଟିକିଏ ହସି ଧୀରେ ଧୀରେ କହିଲେ, "ମୁଁ ତାଙ୍କୁ ଭଲ କରି ଜାଣେ । ତାଙ୍କ ସହିତ ମୋର କଲିକତାରେ ପ୍ରଥମେ ଭେଟ ହୁଏ । ସେ ଆର୍ଯ୍ୟ ସମାଜ ଅଧୀନରେ କାମ କରନ୍ତି । କପରି ସେ ସେଠି ଜୁଟିଲେ ମୁଁ ତାହା କହି ପାରିବ ନାହିଁ; ମାତ୍ର ସେଠି ତାଙ୍କର ଖୁବ୍ ପ୍ରତିପତ୍ତି । ଏହାଛଡ଼ା ଅନେକ ଦିନୁ ମୁଁ ତାଙ୍କ ସମ୍ପର୍କରେ ଆସିଲିଣି । ଟିକିଏ ହେଲେ ମନ୍ଦ କିଛି ତାଙ୍କର ଦେଖି ନାହିଁ । ଭଲ କଥା, ସେ ଯାଆନ୍ତୁ ବ୍ରହ୍ମଗିରି । ମୁଁ ଚାହେଁ ତାଙ୍କୁ ଓଡ଼ିଶା କାମ ସମ୍ବନ୍ଧରେ ଅନୁରାଗିଣୀ ହେବା ପାଇଁ । ଆଚ୍ଛା, ମୋ କଥା କିଛି କହୁଥିଲେ ?' ଦିବ୍ୟସିଂହବାବୁ ମୁଣ୍ଡ ହଲାଇ ନାଁ କହିବା ମାତ୍ରକେ ଲଲମୋହନଙ୍କ ମନରେ ହଠାତ୍ ଯେପରି ଅବସାଦର ଛାଇ ପଡ଼ିଗଲା । ମାତ୍ର ତାହା ଅତି ଶୀଘ୍ର ଚାଲିଗଲା । ସେ ପୁଣି ପ୍ରସନ୍ନ ଭାବରେ କହିଲେ, "ତାଙ୍କ ସହିତ ମୋର ଖୁବ୍ ବନ୍ଧୁତ୍ୱ ଅଛି । ତେଣୁ ମୁଁ ତାଙ୍କର ହୋଇ ଆପଣଙ୍କୁ ଅନୁରୋଧ କରୁଛି, ଆପଣ ଓଡ଼ିଶା କାମରେ

ତାଙ୍କୁ ପ୍ରବର୍ତ୍ତାନ୍ତୁ । ଏତେ ମେଧାବୀ, ଏତେ ବୁଦ୍ଧିମତୀ ମୁଁ ଆଉ କାହାରି ଦେଖି ନାହିଁ । ଓଡ଼ିଶାରେ ସେ କାମ କଲେ ଆମ୍ଭର ଏକ ବଡ଼ ଅଭାବ ଦୂର ହେବ ।"

ଦିବ୍ୟସିଂହବାବୁ ସବୁ ଶୁଣି କେବଳ ଏତିକି କହିଲେ, "ଯେ ଯାହାର ରୁଚି ଅନୁସାରେ କାମ କରିବେ । ଓଡ଼ିଶା ଅବସ୍ଥା ଯଦି ତାଙ୍କ ମନକୁ ଲାଗିବ ସେ ଏଠି କାମ କରିବେ ।' ଲାଲମୋହନବାବୁ ପୁଣି ଜିଦ୍ କରି କହିଲେ, "ନା । ଆପଣ ମୋ ନାଁ ଧରି ତାଙ୍କୁ କହିବେ ଯେ, ସେ ଓଡ଼ିଶାରେ ହିଁ ନିଜକୁ କର୍ମମଗ୍ନ କରି ଦିଅନ୍ତୁ ।"

ଟିକିଏ ହସି ଦିବ୍ୟସିଂହବାବୁ କହିଲେ, "ଆଚ୍ଛା ମୁଁ ଚେଷ୍ଟା କରିବ ।'

ବନ୍ଧ ଭାଙ୍ଗି ଗଲେ ଯେପରି ପାଣିର ସୁଅକୁ ସହଜରେ ଅଟକାଇ ହୁଏ ନାହିଁ, ସେପରି ଲାଲମୋହନଙ୍କ ଚିନ୍ତାର ବେଗ । ସେ ପୁଣି କହିଲେ, "ମୁଁ ଏକ କଳନା କରୁଛି । କୌଣସିଠାରେ ଏକ ଆଶ୍ରମ କରି ସେଇଠି ନିଜକୁ ସମାଧି ଦେଇ ଦେବି । ସମସ୍ତ ଉତ୍ତେଜନାରୁ ଅପସରି ଯାଇ ନୀରବ ଭାବରେ କିଛି ହେଲେ ସେବା କାର୍ଯ୍ୟ କରିବି, ଯେପରି ଆପଣ କରୁଛନ୍ତି । ସେ କାମରେ କୁମୁଦିନୀ ଯୋଗ ଦେବା ମୁଁ ଇଚ୍ଛା କରେ । ମୁଁ ତାଙ୍କୁ ପ୍ରବର୍ତ୍ତାଉଛି, ଆପଣ ମଧ୍ୟ କହନ୍ତୁ—ନିଶ୍ଚୟ କହିବେ ।" ଦିବ୍ୟସିଂହ ବାବୁ ପୁଣି ଥରେ ହଁ ଭରିଲେ ।

ତାପରେ ବ୍ରାହ୍ମଗିରି ବିଷୟ ପଡ଼ିଲା । ସାହାଯ୍ୟ ସଂଗ୍ରହ ବିଷୟ ଆଲୋଚନା କରି ଲାଲମୋହନ କହିଲେ, "କେତେ ଦିନ ଏପରି ମାଗି ଯାଚି ଅନଶନକୁ ଠେଲି ରଖିବେ । ରଖି ବା ପାରୁଛନ୍ତି କାହିଁ ? ଏସବୁ ବିଷୟ ଚିନ୍ତା କଲେ ବେଳେବେଳେ ମୋର ମନେ ହୁଏ କୌଣସି ପ୍ରକାରେ ମୋ ହାତକୁ କ୍ଷମତା ଆସି ଯାଆନ୍ତା କି ? ମୁଁ ମଠ ବାଡ଼ି ସବୁ ଏକାଥରକେ ଲୋପ କରି ଦିଅନ୍ତି; ଏପରିକି ଏ ଜଗନ୍ନାଥ ଦେଉଳକୁ ସୁଦ୍ଧା ବନ୍ଦ କରି ଦିଅନ୍ତି ।"

ଦିବ୍ୟସିଂହବାବୁ ହସି ହସି କହିଲେ, "କି, ଦେଉଳ କଣ କଲା କି ?"

ଲାଲମୋହନ—"ଏହି ଦେଉଳ ହିଁ ଆମ୍ଭ ଦରିଦ୍ରତାର ପ୍ରତୀକ ହୋଇ ଛିଡ଼ା ହୋଇଛି । ଯେ ଧର୍ମ ଉଦ୍ୟମକୁ ନିନ୍ଦା କରି ତ୍ୟାଗକୁ ସୁଖ୍ୟାତି କରେ, ଯେ ଧର୍ମ ଅଜଣା ପରଲୋକର ଦୋହାଇ ଦେଇ ଅଙ୍ଗେ ନିଭାଇଥିବା ଇହଲୋକ ପ୍ରତି ଲୋକଙ୍କୁ ଉଦାସୀନ କରିଦିଏ, ସେହି ଧର୍ମର ପତାକା ହଲାଇ ଏହି ପ୍ରକାଣ୍ଡ ମନ୍ଦିର ଏ ଦେଶକୁ ନିର୍ଜୀବ କରି ଦେଇଛି । ତାକୁ ସବୁ ବନ୍ଦ କରି ଲୋକର ଦୃଷ୍ଟି ପରଲୋକ ଆଡୁ ଫେରାଇ ଏହି ଲୋକପ୍ରତି ମୁଁ ଆକର୍ଷଣ କରନ୍ତୁ । ବାସ୍ତବିକ ଦିବ୍ୟସିଂହବାବୁ ପରଲୋକ କଥା ଲୋପ କରି ନଥିଲେ ଦେଖିବେ ଏ ମଠ ଦେଉଳ କୁଆଡ଼େ ଲୋପ ପାଇଯିବ । ଏହା କଣ ସତ ନୁହେଁ ?"

ଦିବ୍ୟସିଂହବାବୁ ହସି ହସି କହିଲେ, "ଏ ସବୁ ବଡ଼ ବଡ଼ କଥା, ମୁଁ ସେଥିରେ ମୁଣ୍ଡ ଖରଚ କରେ ନାହିଁ । ଯେବେ କ୍ଷମତା ଆସିବ ସେତେବେଳେ ଦେଖାଯିବ । ବର୍ତ୍ତମାନ ଚାଲ ଯିବା କିଛି ମାଗି ଯାଚି ଆଣି ଯେତିକି ଆମର କାମ ସେତିକି କରିବା ।"

ଏପରି କିଛି ସମୟ କଥାବାର୍ତ୍ତା ପରେ ଦୁହେଁ ନିଗ୍ରା ଆଦାଲତରେ ବାହାରିଲେ ।

---

ଆଜି ଲଲମୋହନ କୁମୁଦିନୀଙ୍କ ସଙ୍ଗେ ଦେଖା କରିବେ ନାହିଁ ବୋଲି ମନେ ମନେ ସ୍ଥିର କରିଥିଲେ । ଗତକାଲିର କଥାବାର୍ତ୍ତାରେ ସେ ଏପରି ଟିକିଏ ଅନୁଭବ କରିଥିଲେ ଯେ, ତାଙ୍କର ମନ କୁମୁଦିନୀଙ୍କ ପ୍ରତି ଯେପରି ଦୌଡୁଛି, କୁମୁଦିନୀ ମନ ତାଙ୍କପ୍ରତି ସେପରି ଦୌଡୁ ନାହିଁ । ଦିବ୍ୟସିଂହ ବାବୁଙ୍କ ସହିତ ସହରର କେତେକ ଭଦ୍ରବ୍ୟକ୍ତିଙ୍କ ସଙ୍ଗେ ଦେଖା ସାକ୍ଷାତ୍ କରି କେଉଁଠୁ ସିଧା ନାସ୍ତିବାଣୀ, କେଉଁଠୁ ଅବା ନିରାଶଜନକ ଭାବରେ କିଛି ସାହାଯ୍ୟ ପାଇ ତାଙ୍କ ମନ ଖରାପ ହୋଇ ଯାଇଥିଲା । ସନ୍ଧ୍ୟା ଆଗରୁ ଆହାର ଶେଷ କରିବାପାଇଁ ଦିବ୍ୟସିଂହବାବୁ ଫେରିଲେ ।

ଲଲମୋହନ ମଧ୍ୟ ଫେରି ଆସି ଧର୍ମଶାଳାରେ ନିଜ ଖଟିଆ ଉପରେ ପଡ଼ି ରହି ନାନା ପ୍ରକାର ଚିନ୍ତାର ଘୋଡ଼ଦୌଡ଼ ପାଇଁ ନିଜ ମନକୁ ଛାଡ଼ି ଦେଲେ । ଦୁର୍ଭିକ୍ଷ ପଡ଼ିଛି, ଅଥଚ ଯେଉଁମାନେ ସୁଖରେ ଚଳୁଛନ୍ତି ସେମାନଙ୍କୁ କହାବୋଲା କଲେ ମଧ୍ୟ ଅନ୍ତରର ସହିତ ସାହାଯ୍ୟ ଦେବାକୁ କୁଣ୍ଠିତ ହେଉଛନ୍ତି । ଯେଉଁମାନେ ଅନାହାର ଭୋଗୁଛନ୍ତି ସେମାନେ ବା ଉତ୍ତେଜିତ ହୋଇ କାହିଁକି ଅନ୍ୟମାନଙ୍କୁ ଅସ୍ଥିର କରିଦେଉ ନାହାନ୍ତି ? କିଲେଇ ବଲେଇ ହୋଇ ଏମାନଙ୍କୁ ସାହାଯ୍ୟ ମାଗିବା ଦ୍ୱାରା ଏମାନେ ମନେ କରୁଛନ୍ତି ଯେ, ଠିକାଏ ଆଠଣା ଦେଇ ଆମକୁ କୃତାର୍ଥ କରୁଛନ୍ତି । ଏ ପ୍ରକାର ସାହାଯ୍ୟ ମାଗିବାରେ ଅପମାନ, ଆତ୍ମ ସମ୍ମାନ ପ୍ରତି ବାଧାଜାତ ହେଉଛି ସିନା ! ଦିବ୍ୟସିଂହ ବାବୁ ବା କଅଣ ବୁଝୁଛନ୍ତି,

ଲାଗିଛନ୍ତି ସେହି କାମରେ । ଗାଁର ଲୋକଙ୍କ ସହିତ ସେ ଯେତେ ସମ୍ପର୍କରେ ଆସୁଛନ୍ତି, ସେତ ସମଗ୍ର ଜନତାକୁ ମତାଇ ଦେଇ ପାରନ୍ତେ । ଅଥଚ ଜନତା ଆପେ ଆପେ ଯେତେବେଳେ ମାତେ ସେତେବେଳେ ଦବ୍ୟସିଦ୍ଧଙ୍କ ଦେଖା ମିଳେ ନାହିଁ । କଅଣ ନାଁ ତାଙ୍କୁ ଉତ୍ତେଜନା ମୂଳକ କାମ ସୁଖ ଲାଗେ ନାହିଁ । ସେବା କାର୍ଯ୍ୟରେ ତାଙ୍କୁ ସନ୍ତୋଷ ମିଳେ । ଅଦ୍ଭୁତ ଏ ମନୋଭାବ ।

ଏ ଚିନ୍ତା ପଛେ ପଛେ ଉଙ୍କି ଉଙ୍କି କୁମୁଦିନୀ ଚିନ୍ତା ଉପସ୍ଥିତ । କଅଣ ବିଚାରି ସେ ଦବ୍ୟସିଦ୍ଧ ବାବୁଙ୍କଠାକୁ ଯାଇଥିଲା—କଅଣ ବା ବିଚାରି ସେ ତାଙ୍କ ସହିତ ବ୍ରହ୍ମଗିରି ଯିବ ବୋଲି ବସିଛି । ଓଡ଼ିଶାରେ ରହି କିଛି ହେଲେ କାମ କରିବ ବୋଲି କଅଣ ମନେ ମନେ ସ୍ଥିର କରି ନେଲଣି ? କାହିଁ ମୋତେ ତ ତାର ସୂଚନା ଦେଲା ନାହିଁ । ମୁଁ ଯେ ଏତେ ଦିନ ସେଆଡ଼େ ରହିଗଲି—ଚିଠି ପାଇ ସୁଦ୍ଧା ଚିଠି ଖଣ୍ଡେ ଦେଲି ନାହିଁ—ସେ ବୋଧହୁଏ ରାଗି ଯାଇଛି । କିନ୍ତୁ ଏଇଥର ମୁଁ ଏଇଠି ପଡ଼ି ପଡ଼ି ତା'ର ରାଗକୁ ଶାନ୍ତ କରିବି—ଆଉ ସେ ଯଦି କୌଣସି କାରଣରୁ ବିବାହ କରିବାକୁ ରାଜି ନ ହୁଏ—ତେବେ ?" ବିବାହ ତ ଏଣା ପୁଣି କୁମୁଦିନୀ ସହିତ ନ ହେଲେ ତାଙ୍କ ଜୀବନ ସରିଗଲା ବୋଲି ସେ ବିଚାରୁଛନ୍ତି । ଜୀବନ ତମାମ୍ ଯଦି ଉତ୍ତେଜନା ଭିତରେ ଗଢ଼ କାଟିବାର ସୁବିଧା ମିଳନ୍ତା, ତେବେ ସେ ବୋଧହୁଏ ବିବାହ ବିଷୟ ଚିନ୍ତା କରନ୍ତେ ନାହିଁ । ଯେତେବେଳେ ସାଧାରଣ କାର୍ଯ୍ୟକ୍ଷେତ୍ରରେ ଉତ୍ତେଜନାର ଅଭାବ ସେ ଅନୁଭବ କରନ୍ତି, ସେତେବେଳେ ତାଙ୍କ ମନ ଦୌଡ଼େ ଘରେଇ ଜୀବନର କିଛି ଉତ୍ତେଜନା ପାଇଁ । ବସା ନ ଥିବା ଉଡ଼ନ୍ତା ଚଢ଼େଇପରି ସେ ନିଜକୁ ମନେ କରୁଛନ୍ତି । ଏହିପରି ଚିନ୍ତାର ଦୌଡ଼ରେ ତାଙ୍କ ମନରୁ ଧୂଳି ଉଡ଼ି ଯାଉଛି । ଏହି ସମୟରେ ସୁଦର୍ଶନ ଆସି ଆଗରେ ଛିଡ଼ା ହୋଇଗଲା । ତରତର ହୋଇ ଉଠିପଡ଼ି 'କ୍ୟା' ବୋଲି କହି ଦେଇ ତା ଆଡ଼କୁ ସନ୍ତୃଷ୍ଟ ନୟନରେ ଅନାଇଲେ । ସୁଦର୍ଶନ ଏକ ସଲାମ ବଜାଇ ଦେଇ କହିଲା, 'ଆପ୍‌କୋ ବୋଲାଁତ ହେ ।'

ପ୍ରଥମେ ନାହିଁ କରି ଦେବାକୁ ଲଲମୋହନଙ୍କ ମନ ହେଉ ଥିଲା; ତା'ପରେ ସେ ଯିବାପାଇଁ ସ୍ଥିର କଲେ । ଚଟି ଯୋଡା ହଳକୁ ଗୋଡ଼ରେ ଗଳାଇ ଦେଇ ଦେହରେ ଥିବା ଜାମା ଉପରେ ଖଦ୍ଦେର ଚଦର· ପକାଇ ବାହାରିଲେ ।

କୁମୁଦଙ୍କ ବସାପାଖରେ ଛିଡ଼ା ହୋଇ ଦେଖିଲେ ଯେ, ସେ ବୁଲିଯିବା ପାଇଁ ପ୍ରସ୍ତୁତ ହୋଇନାହାନ୍ତି । ବରଂ ଚୌକି ଉପରେ ବସି କଅଣ ପଢୁଛନ୍ତି । ଲଲମୋହନ ଧୀରେ ଧୀରେ ପିଣ୍ଡା ଉପରକୁ ଉଠିଲେ । କୁମୁଦନ ବହି ଖଣ୍ଡ ରଖି ଦେଇ ଛିଡ଼ା ହୋଇ ·ପଡ଼ି ଏକ ଚୌକି ଦେଖାଇ ଦେଲେ ଲଲମୋହନଙ୍କ ବସିବାପାଇଁ । ଲଲମୋହନ ହଠାତ ନ ବସି ହସି ହସି ପଚାରିଲେ, 'ଆଜ ବୁଲିବାକୁ ଯିବ ନାହିଁ ?'

କୁମୁଦନ ସେହିପରି ଛିଡା ହୋଇ କହିଲେ, "ନାଁ ଆଜି ଆଉ ବେଳ ନାହିଁ । ମୋତେ ଦବ୍ୟସିହ ବାବୁଙ୍କଠାକୁ ଯିବାକୁ ହେବ । ଇତିମଧ୍ୟରେ ଲଲମୋହନ ଚୌକି ଉପରେ ବସିଲେଣି । କୁମୁଦନ ମଧ୍ୟ ବସିଛନ୍ତି । "ଶୁଣିଲି କୁଆଡ଼େ ବ୍ରହ୍ମଗିରି ଯାଉଛ" ଲଲମୋହନ ପଚାରିଲେ ?

କୁମୁଦନ—"ହଁ ଯିବ ବୋଲି ଭାବୁଛି । ନିଜ ଆଖିରେ ଦେଖିବି ଗାଁର ଅବସ୍ଥା । ଆଜିକି ପ୍ରାୟ ୨।୮ ବର୍ଷ ·ହେବ ଓଡ଼ିଶାର ମଫସଲ ଗାଁ ଦେଖିନାହିଁ ।

ଲଲମୋହନ ରାସ୍ତା ଆଡ଼କୁ ଅନାଇ କହିଲେ, "କଅଣ ଦେଖିବ ଗାଁର ଅବସ୍ଥା । ଦୁଃଖ ଦାରିଦ୍ର୍ୟର ଜୀବନ୍ତ ଅଭିନୟ ଦେଖି ତୁମ ହୃଦୟ ସହି ପାରିବ ତ ?"

କୁମୁଦନ—"ସେଥିପାଇଁ ମୁଁ ଯିବି । ଦୁଃଖର ସ୍ମୃତି ମୋଠିହିଁ କେତେ ଦିନରୁ ଭିତରେ କଳଙ୍କି ଗଲାଣି—ତାକୁ ପୁଣି ଘଷିମାଜି ସଫାକରିଦେବା ପାଇଁ ଯିବି ।

ଲଲମୋହନ ଚାହିଁ ଦେଇ ଜାଣିଲେ ଯେ, କୁମୁଦନଙ୍କ ମୁହଁ ବଡ଼ ଗମ୍ଭୀର । ସେ କଥାକୁ ବୁଲାଇ ଦେଇ ହସି ପଚାରିଲେ, "ଆଜି କାହିଁକି ମୋତେ ଡାକିଥିଲ ?"

କୁମୁଦନୀ—"ସେହିକଥା ତୁମକୁ କହିବାପାଇଁ—କାଲି ଦିବ୍ୟସିଂହ ବାବୁଙ୍କ ସହିତ କଥାବାର୍ତ୍ତା କରୁଁ କରୁଁ ବ୍ରହ୍ମଗିରି ଯିବାକଥା ମନକୁ ଉଠିଲା—ତୁମକୁ ସେ କଥା କହି ନ ଥିଲି । ତେଣୁ ତୁମର ଅନୁମତି ନେବା ପାଇଁ ।" ଏତିକି କହି ହସି ଦେଲେ ।

ଲଲମୋହନଙ୍କ ମୁହଁ ପ୍ରସନ୍ନ ହୋଇଗଲା । ସେ ଗଦ୍‌ଗଦ୍ ହୋଇ କହିଲେ, "ମୋର ଅନୁମତି ? ସେ ପୁଣି ତୁମକୁ ଲୋଡ଼ା ।"

କୁମୁଦନୀ—"ନିଷ୍ଠୁର ! ତୁମେ ସିନା ବଡ କର୍ମୀ, କାମ ଉପରେ ତୁମର ସାଙ୍ଗମାନଙ୍କୁ ଭୁଲିଯାଅ, କିନ୍ତୁ ମୁଁ ତ ଜଣେ ସାମାନ୍ୟ ସ୍ତ୍ରୀଲୋକ । ଯେତେ କାମ ଥାଉ ପଛକେ ସାଙ୍ଗକୁ ମୁଁ ଭୁଲେ ନାହିଁ ।"

ଏତିକି ଶୁଣିବାପରେ ଲଲମୋହନଙ୍କ ଢଙ୍ଗରୁ ଜଣାଗଲା ଯେପରି ସେ ଚୌକିରୁ ଉଠି ଆସି କୁମୁଦନୀଙ୍କୁ କୁଣ୍ଢାଇ ପକାନ୍ତେ । ମାତ୍ର ଘସ୍ତାପାଣି ପିଣ୍ଡାରେ ବସିଥିବାରୁ ସେ ନିଜକୁ ସମ୍ଭାଳି ନେଲେ । ନିଜ ଆସନରେ ବସି ଆନନ୍ଦରେ ଅଧୀର ହୋଇପଡ଼ି କହିଲେ, "ବେଳେ ବେଳେ ମୋର ମନେ ହୁଏ, ମୋର ମୁଣ୍ଡରୁ ଚିରି ମସ୍ତିଷ୍କକୁ କାଢ଼ି ତାକୁ ଧୋଇ ଧାଇ ସଫା କରି ଦିଅନ୍ତି ।"

କୁମୁଦନୀ—"କାହିଁକି ?"

ଲଲମୋହନ—"ଏତେ ସ୍ନେହ ମୋ ମନ ବୁଝି ପାରୁନାହିଁ ।"

କୁମୁଦନୀ—"ତାର କାରଣ ଯେପରି ସ୍ନେହ ସେ ମନ କରି ଜାଣେ ନାହିଁ ।"

ଲଲମୋହନ—"ଥାଉ ସେ କଥା, ବର୍ତ୍ତମାନ ଆମ ସମ୍ବନ୍ଧରେ ପରସ୍ପର କରି କଥାବାର୍ତ୍ତା କରିବା ଦରକାର ନୁହେଁ କି ?"

କୁମୁଦନୀ—"ନିତାନ୍ତ ଦରକାର ।"

ଲଲମୋହନଙ୍କ ଶିରା ପ୍ରଶିରା ଯେପରି ଆନନ୍ଦରେ ତେଇଁ ଉଠୁଛି । ସେ କୋମଳ ଭାବରେ କହିଲେ, "ବିଧି ଅନୁସାରେ ବିବାହ ହେଲାବେଳେ ସଙ୍କୋଚରେ ଆମେ ଜୀବନ ଦୁଇଟିକୁ ଗୋଟିଏ ଡଙ୍ଗାରେ ଦରିଆରେ [illegible] ଦିଅନ୍ତି ।"

କୁମୁଦନୀ—"ସେହ ସ୍ୱପ୍ନ ତ ମୁଁ ବରାବର ଦେଖି ପାରୁଛି । ମାତ୍ର କହିବ ମୋ ମନ କଥା ?"

ଲାଲମୋହନ ବ୍ୟଗ୍ର ହୋଇ କହିଲେ "କହ ନ କହ" କୁମୁଦନୀ ତାଙ୍କୁ ଅନାଇ କହିଲେ, 'ମୋର ଯଦି ଅତୀତ ଇତିହାସ ତୁମେ ଜାଣିବ ତେବେ ମୋ ସହିତ କଥାବାର୍ତ୍ତା କରିବାପାଇଁ ସୁଦ୍ଧା ତୁମ୍ଭେ ଇଚ୍ଛୁକ ହେବ ନାହିଁ ।

ଲାଲମୋହନ—"ଗତ ସେ ଅତୀତ । ବର୍ତ୍ତମାନ ଓ ଭବିଷ୍ୟତ ମୋତେ ସୁନ୍ଦର ଦେଖାଯାଉଛି । ମୁଁ ଅତୀତ ସମ୍ବନ୍ଧରେ କିଛି ପଚାରିବାକୁ ଚାହେଁ ନାହିଁ ।"

କୁମୁଦନୀ—"କିନ୍ତୁ ଦିନେ ତ ତାହା ଜାଣିବ, ସେତେବେଳେ ହୁଏତ ବର୍ତ୍ତମାନର ସ୍ନେହପାଇଁ ଅନୁତାପ କରିବ । ସେତେବେଳେ ତୁମ୍ଭର ସମସ୍ତ ଜୀବନ ଦୁର୍ବହ ହୋଇ ପଡ଼ିବ । ତୁମ୍ଭେ ଉତ୍ତେଜନା ପ୍ରିୟ ବୋଲି ମୁଁ ତୁମ୍ଭଙ୍କୁ ସାବଧାନ କରି ଦେଉଛି । ଧୀର ଭାବରେ ସବୁ କଥା ଭାବ । ମୁଁ ଜଣାଇ ଦେଉଛି, ମୋର ଅତୀତ ଇତିହାସ ଶୁଣିଲେ ତୁମେ ମୋ ସଙ୍ଗେ ଯେ ଘନିଷ୍ଠ ଭାବରେ କଥାବାର୍ତ୍ତା କରୁଛ ସେଥିପାଇଁ ହୁଏତ ଅନୁତପ୍ତ ହେବ ।

ଲାଲମୋହନ—"କି ଆଶ୍ଚର୍ଯ୍ୟ, ଏତିକି କଣ ମୁଁ ଜାଣିପାରୁ ନାହିଁ ? ଧରି ନିଆଯାଉ ତୁମ୍ଭ ଅତୀତର ଇତିହାସ ଅତି କୁତ୍ସିତ, ତୁମେ ନିତାନ୍ତ ନୀଚ ଲୋକ ଘରେ ଜନ୍ମ—ତଥାପି ମୁଁ ସେ କଥାକୁ ଖାତିର କରୁ ନାହିଁ ।"

କୁମୁଦନୀ—"କିନ୍ତୁ ତୁମେ ଯାହା ଅନୁମାନ କରୁଛ, ତା'ଠାରୁ ମୋ ଅତୀତ ଆହୁରି ବେଶୀ ଖରାପ ।"

ଲାଲମୋହନ—"ମୋର ଅନୁମାନ ଯେତେଦୂରକୁ ଯାଇପାରେ ତାହାର ବାହାରେ ସେ ଖରାପ ରହିଥାଉ; ସେଥିରେ ମୋର କିଛି ଯାଏ ଆସେ ନାହିଁ । କୁମୁଦନୀ ! ତୁମ୍ଭେ ମୋ ହୃଦୟକୁ ଜାଣି ପାରୁ ନାହଁ । ଏ ଯେ ସମ୍ପଦାନ୍ତୁ ତୁମ୍ଭଙ୍କୁ ଦିଆ ହୋଇ ସାରିଛି । ଯଦି କେବେ ମୋତେ ସେଥିପାଇଁ ଅନୁତାପ କରିବାକୁ ହୁଏ, ତେବେ ସେହି ଅନୁତାପରେହିଁ ମୋର ସାର୍ଥକତା ଅଛି । ସେଥିରେ ମୋର ଅପାର ସନ୍ତୋଷ ।

କୁମୁଦନୀ—“ମୁଁ ଗୃହେ ନାହିଁ ମୋର ଭରଣପୋଷଣ ଭାର । ନିଜକୁ ନିଜେ ପୋଷିବାର ମୋର ଶକ୍ତି ଅଛି, ତା ଛଡ଼ା ଯେଉଁ ଆର୍ଯ୍ୟ ସମାଜରେ ମୁଁ କାମ କରୁଛି ସେଠି ମୋର ପୋଷଣ ପାଇଁ ଚିନ୍ତିତ ହେବାକୁ ପଡ଼ିବ ନାହିଁ । ଚିରଜୀବନ ମୁଁ ପତିତା ରମଣୀଙ୍କ ଉଦ୍ଧାରରେ ନିଜକୁ ଲଗାଇବି ବୋଲି ଭାବିଛି; ମାତ୍ର କର୍ମମୟ ଜୀବନର ଗୋଟିଏ ଅତୃପ୍ତ ବାସନା ମୋତେ ସବୁବେଳେ ଅସ୍ଥିର କରି ଦେଉଛି । ସେ ହେଉଛି ମାତାର ଜୀବନ । ମୋର ମନ ହେଉଛି ସବୁ ଆନନ୍ଦ ଯେପରି ସେଇଠି ରହିଛି । ତୁମ୍ଭ ସହିତ ସମ୍ପର୍କରେ ଆଜ ସେ ବାସନା ଦିନକୁ ଦିନ ଯେପରି ବଢୁଛି । କିନ୍ତୁ ମୁଁ ଗୃହେ ନାହିଁ ମୋର ଆନନ୍ଦ ପାଇଁ ମୁଁ ଆଉ ଜଣକୁ ଠାଣି ଆଣି ଜୀବନବ୍ୟାପୀ ଅନୁତାପରେ ପକାଇ ଦେବି ।

ଲଲମୋହନ—“ସେ ଅନୁତାପରେ ପଡ଼ିବା ପାଇଁ ଯଦି ଜଣେ ଉତ୍ସୁକ ହୁଏ ।”

କୁମୁଦନୀ—“ତଥାପି ମୁଁ ତାକୁ ବାଧା ଦେବି; କାରଣ ସେଥିରେ ମୋ ମନରେ ଆଘାତ ଲଗିବ ।”

ଲଲମୋହନ—“କଣ ହେଲେ ତୁମ୍ଭର ମନ ମାନିବ ମୁଁ ଜାଣି ପାରୁ ନାହିଁ ।

କୁମୁଦନୀ—“ତୁମ ଆଗରେ ମୋର ଅତୀତ ଖୋଲି ଦେଇ ଧୋଇ-ଦେବା ପାଇଁ ଅନେକ ଥର ମନକୁ ତିଆରି କରିଛି; ମାତ୍ର ପାରି ନାହିଁ ସେ ଦୁର୍ବଳତା ହିଁ ମୋତେ ଅନ୍ଧାର ଘରରେ ଭୂତ ଭଳି ଡରାଇଛି ।”

ଲଲମୋହନ—“ମୁଁ ତାହା ଶୁଣିବା ପାଇଁ ଗୃହେ ନାହିଁ । ତୁମେ କହିଲେ ସୁଦ୍ଧା ମୁଁ କାନ ବନ୍ଦ କରି ଦେବି ।”

କୁମୁଦନୀ—“ତେବେ ମୁଁ ନିଶ୍ଚିନ୍ତ ହେଉଛି ।”

ଲଲମୋହନ—“ନିଶ୍ଚୟ ।”

କୁମୁଦନୀ—“ଆଜି ଆମେ ତା ହେଲେ ପରସ୍ପର ପ୍ରତିଜ୍ଞାବଦ୍ଧ ହେଲେ ?”

ଲଲମୋହନ—“ନିଶ୍ଚୟ ! ଏଥିକାରେ ମୋ ମନ କି ସନ୍ତୋଷ ଲାଭ କଲା, ତାହା ମୁଁ କଥାରେ କଣ କହିବି ?

କୁମୁଦନୀ—"ତେବେ ଇତିମଧ୍ୟରେ ଆଇନ ଅନୁସାରେ ଯାହା କିଛି କରିବାର କଥା ତାହା କରିବାକୁ ହେବ ।"

ଲଳମୋହନ—"ମୁଁ ସବୁ ଠିକ୍ କରି ରଖିଥିବି । ତୁମେ ବ୍ରହ୍ମଗିରିରୁ ଫେରି ଆସ ।"

କୁମୁଦନୀ—"ଏତିକ ପାଇଁ ଭାବିଥିଲି ଯଦି ଭୁଲ ହୋଇଛି କ୍ଷମା କରିବ । ବର୍ତ୍ତମାନ ବେଳ ହେଲାଣି—ମୁଁ ଯାଉଛି ଦେବ୍ୟସିଂହ ବାବୁଙ୍କ ପାଖକୁ ।"

ଲଳମୋହନ ଟିକିଏ ବ୍ୟସ୍ତ ହୋଇ ପଡି କହିଲେ, "ଆଉ ଏକ କଥା, ଏ ସବୁ ତାଙ୍କୁ କିଛି କହିବ ନାହିଁ । ସେ ଏକପ୍ରକାର ଲୋକ, ବର୍ତ୍ତମାନ କିଛି ନ କହିବା ଭଲ ।"

କୁମୁଦନୀ ଟିକିଏ ହସିଲେ; ମାତ୍ର ତାଙ୍କ ମୁଖ ଭଙ୍ଗୀରୁ ଜଣା ପଡିଲା ଯେ, ସେ ଟିକିଏ ଚିନ୍ତିତ ହେଲେ ।

---

ସାକ୍ଷୀଗୋପାଳ ଷ୍ଟେସନରେ ଓହ୍ଲାଇ ବ୍ରହ୍ମଗିରି ଅଞ୍ଚଳକୁ ପ୍ରାୟ ଆଠ କୋଶ ବାଟ ଯିବାକୁ ହେବ । କୁମୁଦିନୀ ବ୍ରହ୍ମଗିରି ଯିବାକଥା ଯେତେବେଳେ ଭାବିଲେ, ସେତେବେଳେ ଚାଲିବା କଥା ତାଙ୍କ ମନକୁ ଲାଗି ନ ଥିଲା । ଦେଢ଼ଘଣ୍ଟା ଦଥାଭଳି ଯେତେବେଳେ ଚାଲିବା ପାଇଁ ଉଦୟସିଂହ ବାବୁ କହିଲେ, ସେତେବେଳେ କୁମୁଦିନୀଙ୍କୁ ଟିକିଏ ଖଟକା ଲାଗିଲା । ମାତ୍ର ସେ ନିଜକୁ ଚପାଇ ନେଇ ଉତ୍ସାହ ସହକାରେ ଚାଲିବାକୁ ଲାଗିଲେ । ଧୂଇଁଖଣ୍ଡ ଲୁଗା ଓ ଖଣ୍ଡେ ଗାମୁଛାକୁ ଷ୍ଟେଟ ଗଣ୍ଠିଲିଟିଏ କରି ଉଦୟସିଂହ ବାବୁ କାଟରେ ଯାକି ବାହାରିଲେ । କୁମୁଦିନୀ ସେତେବେଳକୁ ଜାଣିପାରି ଥିଲେ ଯେ ସଙ୍ଗରେ ଯେଉଁ ପେଡ଼ି ଆଣିଛନ୍ତି ତାର କାମ ବ୍ରହ୍ମଗିରିରେ କିଛି ନାହିଁ । ତେଣୁ ସେଥିରୁ ଖଣ୍ଡେ ଧୂଇଖଣ୍ଡ ଲୁଗା ବାହାର କରି ନେଇ ପେଡ଼ିକୁ ସେହି ଷ୍ଟେସନ ମାଷ୍ଟର ଜିମା ଦେଇ ସେ ସଜ ହୋଇ ବାହାରିଲେ । ପ୍ରଥମେ କୋଶେ ବାଟ କୁମୁଦିନୀ ଖୁବ୍ ଫୂର୍ତ୍ତିରେ ଚାଲିଗଲେ । ତା'ପରେ ତାଙ୍କୁ ଯେପରି କିଏ ପଛକୁ ଟାଣୁଛି ଏହିପରି ମନେ କଲେ । ଆହୁରି ସାତକୋଶ ବାଟ ଭାବି ଦେଖିଲା ବେଳକୁ ତାଙ୍କୁ ଶୂନ୍ୟ ଦେଖା ଯାଉଥାଏ । ନିଜ ଶ୍ରାନ୍ତିକୁ କଥାବାର୍ତ୍ତାରେ ଲୁଚାଇବେ ବୋଲି ସେ ଚେଷ୍ଟା କଲେ । ଉଦୟସିଂହବାବୁ ମୌନ ହୋଇ ଚାଲିଛନ୍ତି । ଚାଲିବା ପାଇଁ ତାଙ୍କର ମନ । କୁମୁଦିନୀ ପଛରୁ ଥାଇ କହିଲେ, "ଏହି କେତେକ ବର୍ଷ ମୁଁ ଚାଲିବା ଛାଡ଼ି ଦେଇଥିବାରୁ ଏତେ ବାଟ ଯିବା ପାଇଁ ଗୋଡ଼ ଚଳୁ ନାହିଁ ।" ଉଦୟସିଂହ ବାବୁ ଅନାଇ ଟିକିଏ

ହସି କହିଲେ, "କି ଏତକଚରେ ଥକି ପଡ଼ିଲଣି କି ?" ଖୁବ୍ ଜୋରରେ କୁମୁଦନୀ 'ନା' କହିଦେଲେ; ମାତ୍ର ଏ କଥାର ସୁବିଧା ନେଇ ଦିବ୍ୟସିଂହ-ବାବୁଙ୍କ ମନରେ ଯେ କୌତୁହଳ ଜାଗ୍ରତ ହୋଇଥିଲା, ତାହାର ସମାଧାନ କରିବାକୁ ସେ ଚେଷ୍ଟା କଲେ । କିଛିକ୍ଷଣପରେ ସେ ପଚାରିଲେ, "କେତେ ବର୍ଷ ହେଲା ଚାଲିବା ଛାଡ଼ି ଦେଇଛ ?" କଥାବାର୍ତ୍ତାର ସୁବିଧା ପାଇ ଦିବ୍ୟସିଂହବାବୁ ଟିକିଏ ଧୀରେ ଧୀରେ ଚାଲିଲେ ଓ ଦୁହେଁ ସାଙ୍ଗ ହୋଇ ଗଲେ । କୁମୁଦନୀ ଉତ୍ତର କଲେ 'ପ୍ରାୟ ସାତ ଆଠ ବର୍ଷ ହେବ ।' ପୁଣି ଟିକିଏ ପରେ କହିଲେ, 'ସେପରି କହିବାକୁ ଗଲେ ବେଶୀ ବାଟ ଚାଲିବାର ସୁଯୋଗ ସ୍ତ୍ରୀ ଲୋକ ଭାଗ୍ୟରେ ଘଟେ ନାହିଁ ?' ଦିବ୍ୟସିଂହବାବୁ ହଠାତ୍ କହିଦେଲେ, "କାହିଁ କି, ହାଟୁଆ ଜାତିର ସ୍ତ୍ରୀ ଲୋକ ଖୁବ୍ ଚାଲନ୍ତି ।" କୁମୁଦନୀ ଅଳ୍ପ ହସି କହିଲେ, "ସେ ଜାତିରେ ଜନ୍ମ ହେବାର ମୋର ସୌଭାଗ୍ୟ ଘଟି ନାହିଁ ।"

ଦିବ୍ୟସିଂହ ବାବୁ—"ତେବେ କି ଜାତିରେ ଜନ୍ମ ତୁମ୍ଭର ।"

କୁମୁଦନୀ—"ବର୍ତ୍ତମାନ ମୋର ଜାତି କିଛି ନାହିଁ ।"

ଦିବ୍ୟସିଂହ ବାବୁ—"ହଁ ତୁମର ପରି ଆର୍ଯ୍ୟ ସମାଜ ଅଛି । କେଉଁ ଜିଲ୍ଲାରେ ଜନ୍ମ ତୁମ୍ଭର ।"

କୁମୁଦନୀ—"ବାଲେଶ୍ୱର ।"

ଦିବ୍ୟସିଂହ ବାବୁ—"ସେଠୁ ଯାଇଁ କେଉଁଠି ଶିକ୍ଷା ପାଇଲ ।"

କୁମୁଦନୀ ଟିକିଏ ଇତଃସ୍ତତ ହେଲେ । ଏଣେ ପଥଶ୍ରମ ତେଣେ ଜାଲେ ନିଜ ବୃତ୍ତାନ୍ତ ବାହାରି ପଡ଼ିବ ଏ ଚିନ୍ତା । ତଥାପି ସେ ନିଜକୁ ସଂଯତ କରି କହିଲେ, "ଘଟନା ଚକ୍ରରେ ମୁଁ ଯାଇ କଲିକତା ଆର୍ଯ୍ୟ ସମାଜରେ ପଡ଼ିଲି । ସେଇଠି ମୋର ଶିକ୍ଷା ଦୀକ୍ଷା ସବୁ ।"

ଦିବ୍ୟସିଂହ ବାବୁ—"ବର୍ତ୍ତମାନ ଘରେ ଆଉ କିଏ ସବୁ ଅଛନ୍ତି ?"

କୁମୁଦନୀ ଗମ୍ଭୀର ହୋଇ କହିଲେ, "ମୋତେ ଜଣା ନାହିଁ । ଘର ସହିତ ମୋର ସେ ଦିନୁ କୌଣସି ସମ୍ପର୍କ ନାହିଁ ।" ଏହି ସମୟରେ ତାଙ୍କ

ଗୋଡ଼ରେ ଏକ କଣ୍ଟା ଭୁଷିଗଲା । ସେ 'ଉହୁ' କହି ଛିଡ଼ା ହୋଇଗଲେ । ଦିବ୍ୟସିଂହବାବୁ ମଧ୍ୟ ଛିଡ଼ା ହୋଇ କହିଲେ, 'ବାଟକୁ ଅନାଇ ଚାଲୁ ନାହିଁ !'

ସେ ଦେଖିଲେ ଯେ ଗୋଟିଏ ବଡ଼ ବାଉଁଶ କଣ୍ଟା ଗୋଡ଼ରେ ପଶିଛି । ତତ୍‌କ୍ଷଣାତ୍ ଦିବ୍ୟସିଂହ ବାବୁ କୁମୁଦିନୀଙ୍କୁ ବସି ଯିବାକୁ କହିଲେ । ସେ ବସିଲା ପରେ ଦିବ୍ୟସିଂହ ବାବୁ ନିଜେ କଣ୍ଟାକୁ ବାହାର କରିବାକୁ ବସିଲେ । କୁମୁଦିନୀଙ୍କୁ ବଡ଼ ସଙ୍କୋଚ ଲାଗିଲା । ସେ ନିଜେ ଚେଷ୍ଟା କଲେ ବାହାର କରି ଦେବା ପାଇଁ, ମାତ୍ର ସେ ପାରୁ ନଥାନ୍ତି । ତାପରେ ଦିବ୍ୟସିଂହ ବାବୁ ଜବରଦସ୍ତି ତାଙ୍କର ଗୋଡ଼କୁ ଟାଣି କଣ୍ଟାଟି ବାହାର କରିଦେଲେ । ଆଉ ଚାଲିବାପାଇଁ କୁମୁଦିନୀଙ୍କ ବଳ କୁଲାଉ ନାହିଁ । ସେ ଟିକିଏ ବ୍ୟସ୍ତ ହୋଇ କହିଲେ "ଏଠି ପାଣି ମିଳିବ ?" ଦିବ୍ୟସିଂହ ବାବୁ ଚାରିଆଡ଼କୁ ଚାହିଁ କହିଲେ "ଏଠି ଗାଁ ତ ପାଖରେ ନାହିଁ, ଟିକିଏ ଆଗକୁ ଚାଲ ମିଳିବ ।" କୁମୁଦିନୀଙ୍କ ମନ ହେଉଥାଏ ଫେରିଯିବାପାଇଁ ; ମାତ୍ର ସେଥିରେ ସେ ଏତେ ଆତ୍ମଗ୍ଳାନି ଅନୁଭବ କରୁଥିଲେ ଯେ, ସେ ଚିନ୍ତା ଉଠିବା ମାତ୍ରକେ ତାକୁ ଦବାଇ ଦେଉଥାନ୍ତି । ଧୀରେ ଧୀରେ ସେ ଚାଲିଲେ । କିଛି ଦୂର ଗଲା ପରେ ଗୋଟିଏ ଛୋଟ ବଗିଚା ପଡ଼ିଲା । ସେଇଠି ଅପେକ୍ଷା କରିବା ପାଇଁ କୁମୁଦିନୀଙ୍କୁ ଦିବ୍ୟସିଂହବାବୁ କହିଲେ । ତା ପରେ ନିଜେ ପ୍ରାୟ ପାଏ ବାଟ ଦୂରରେ ଏକ ଗାଁକୁ ପାଣି ଆଣିବା ପାଇଁ ବାହାରିଲେ । କୁମୁଦିନୀଙ୍କୁ ବଡ଼ ସଙ୍କୋଚ ଲାଗୁଥାଏ । ମାତ୍ର ଏତେ ପିପାସା ଯେ, ସେଥିରେ ନିଜକୁ ସଂଯତ କରି ପାରୁ ନ ଥାନ୍ତି । ଦିବ୍ୟସିଂହ ବାବୁ ଗାଁକୁ ଗଲା ପରେ କୁମୁଦିନୀ ତୋଟାରେ ବସି ଦିବ୍ୟସିଂହ ବାବୁଙ୍କ କଥା ଭାବୁଥାନ୍ତି । କେତେ କଷ୍ଟକରି ଏ ଦୁଃଖୀ ଦରିଦ୍ରଙ୍କ ସେବା କରୁଛନ୍ତି । ନିଜର ଜୀବନକୁ ଦୁଃଖ ଓ କଷ୍ଟରେ ଏତେ ଅଭ୍ୟସ୍ତ କରି ନେଲେଣି ଯେ, ତାଙ୍କୁ ଆଉ କିଛି ଜଣା ଯାଉ ନାହିଁ । ମୋ ପ୍ରତି ଯେତିକି ସହାନୁଭୂତି ଦେଖାଉଛନ୍ତି ସେ ତାଙ୍କ ସ୍ୱଭାବର ଅନ୍ତର୍ଗତ । କଅଣ ଭାବି ଏତେ ଦୁଃଖ ଏ ସହ୍ୟ କରୁଛନ୍ତି ? ରାଜନୈତିକ ଅଭିଳାଷ ପୂର୍ତ୍ତି କରିବାର ବାସନା ତ ନାହିଁ । ନିଜର ସୁଖ ସ୍ୱାଚ୍ଛନ୍ଦ୍ୟରେ ତ ଜଳାଞ୍ଜଳି ଦେଇଛନ୍ତି । କେବଳ ସିନା ସେବାର

ଆନନ୍ଦ ଭୋଗ କରିବା ପାଇଁ ଏ ଲାଗିଛନ୍ତି । ତା ପରେ ଲାଲମୋହନଙ୍କ କଥା ତାଙ୍କ ମନରେ ଉଠିଲା । ସେ ମଧ୍ୟ ଏହିପରି କଷ୍ଟ ସହ୍ୟ କରୁଥିବେ । ଏମାନେ ସମସ୍ତେ ଏଥିରେ ସିଦ୍ଧ ହସ୍ତ । ନିଜକୁ ସବ ନିମ୍ନସ୍ତରର ଲୋକଙ୍କ ସହିତ ମିଳାଇ ଦେବାରେ ଏମାନେ ସମସ୍ତେ ଏକରୁ ଆରକ ବଳନ୍ତି । ମାତ୍ର ଲାଲମୋହନଙ୍କ ଅଭିଳାଷ ଅଛି । କାର୍ଯ୍ୟରେ ସଫଳତା ଆଶାରେ ଉନ୍ମତ୍ତ ହୁଅନ୍ତି । ନିଜେ ଯେତିକି ଦାନ କରନ୍ତି ତା ବଦଳରେ ସେ ସେତିକି ବା ତାଠାରୁ ବେଶୀ ନେବାକୁ ଇଚ୍ଛା କରନ୍ତି । ମୋତେ ଯେ ସେ ଏତେ ସ୍ନେହ କରନ୍ତି ତାର ବାସ୍ତବ ହେତୁ କଣ ? ସେ କଣ ବାସ୍ତବିକ ତୃଷ୍ଣାର୍ତ୍ତ ଜଣେ ସ୍ୱାର୍ଥୀ, ତାଙ୍କର କର୍ମର ମରୁଭୂମି ମଧ୍ୟରେ—ନାଁ କେବଳ ମନୁଷ୍ୟ ସ୍ୱଭାବ ଚରିତାର୍ଥ କରିବା ପାଇଁ ? କିନ୍ତୁ ଦିବ୍ୟସିଂହଙ୍କ ଦାନର ପ୍ରତିଗ୍ରହର କଳନା ସୁଝା ନାହିଁ । ନିର୍ମଳ ସ୍ନେହହିଁ କୁମୁଦିନୀଙ୍କ ମନରେ ଏକପ୍ରକାର ପ୍ରତିସ୍ନେହ ଜାତ କରାଇଲା, ତାଙ୍କ ହୃଦୟ ଲାଲମୋହନଙ୍କଠୁଁ ଦିବ୍ୟସିଂହଙ୍କୁ ଉଚ୍ଚତର ସ୍ଥାନ ଦେବାପାଇଁ ଏଣିକି ଇଚ୍ଛା କଲା ।

ଇତି ମଧ୍ୟରେ ଦିବ୍ୟସିଂହ ବାବୁ ଗାଁର ଜଣେ ଲୋକ ସହିତ ଗୋଟିଏ ଲୋଟାରେ ପାଣି ଧରି ଉପସ୍ଥିତ ହେଲେ । ପାଣି ପିଇବା ପରେ କୁମୁଦିନୀଙ୍କ ଶ୍ରମ ବହୁ ପରିମାଣରେ ଦୂର ହୋଇଗଲା । ଦିବ୍ୟସିଂହ ବାବୁ ଅଳ୍ପ ହସି ପଚାରିଲେ, "ଚାଲିପାରିବ ତ ? ନ ହେଲେ ଏହି ଗାଁରେ ରହିଯାଇ ତା ପରେ ଫେରିଯିବ । ଭାରି ଖରାପ ବାଟ, ଖାଲି ବାଲିରେ ଚାଲିବାକୁ ପଡ଼ିବ ।"

ଏଥିରେ କୁମୁଦିନୀଙ୍କ ମନରେ ଆଘାତ ଲାଗିଲା । ସେ ଛିଡ଼ାହୋଇ କହିଲେ, "ହଁ । ମୁଁ ଚାଲି ଯିବ । ଆପଣ ପାରିବେ, ମୁଁ ପାରିବି ନାହିଁ କାହିଁକି ?"

ଆଉ କିଛି ନ କହି ଦିବ୍ୟସିଂହ ବାବୁ ଚାଲିବାକୁ ଲାଗିଲେ । ପ୍ରଥମେ କୁମୁଦିନୀଙ୍କୁ ଯେପରି ପଥଶ୍ରମ ବାଧୁଥିଲା ସେପରି ଆଉ ବାଧିଲା ନାହିଁ । ତଥାପି ବାଟରେ ବସି ବସି ବିଶ୍ରାମ ନେଇ ଦୁହେଁ ବହୁତ ଉଛୁରରେ ବ୍ରହ୍ମଗିରିରେ ପହଞ୍ଚିଲେ । କୁମୁଦିନୀ ଥିବାକୁ ଗୋଟିଏ ପାଠଶାଳାରେ ରହିବାର ସ୍ଥିର କଲେ ।

ଗାଁ ପାଠଶାଳା ଅଧେ ଦିନ ବନ୍ଦ ରହୁଥାଏ । ତେଣୁ ଦିବ୍ୟସିଂହ ବାବୁ ଓ କୁମୁଦିନୀ ସେଠି ରହିବାର କିଛି ଅସୁବିଧା ହେଲା ନାହିଁ । କେବଳ ଘର ପଛଆଡ଼େ ଟିକିଏ ଦୂରକୁ ତାଟି ଉହାଡ଼ କରିଦେଇ କୁମୁଦିନୀଙ୍କ ନିତ୍ୟ କର୍ମ କରିବାର ସୁବିଧା କରାଗଲା । ଖାଇବା ପିଇବାର ବନ୍ଦୋବସ୍ତ ପାଠଶାଳାକୁଲାଗି ଜଣେ ଭଦ୍ରଲୋକଙ୍କ ଘରେ ସ୍ଥିର କରା ହେଲା ।

ବହୁ ଦିନୁ ଗାଁ ଛାଡ଼ି ସହରର ଜୀବନ ଯାପନ କରି ସେଥିରେ ଅଭ୍ୟସ୍ତ ହୋଇ ରହିଥିବାରୁ କୁମୁଦିନୀଙ୍କୁ ସବୁ ଅଡ଼ୁଆ ଲାଗୁଥାଏ । ମାତ୍ର ସେ ଅଡ଼ୁଆ ମଧ୍ୟରେ କେତେ ସୁନ୍ଦର ଢେଉ ଯେ ତାଙ୍କ ମନରେ ବାଜୁଥାଏ, ସେ କେବଳ ତାହା ବୁଝୁଥାନ୍ତି । ଦିବ୍ୟସିଂହ ବାବୁ ଗାଁରେ ଦୁର୍ଭିକ୍ଷ ବିଷୟ ବୁଝୁଥିଲାବେଳେ କୁମୁଦିନୀ ଏକାକୀ ଗାଲରେ ହାତ ଦେଇ ବସି କଣ ଭାବୁଥାନ୍ତି ତାହା ସେ ଜାଣନ୍ତି । ସେ ଅତି କ୍ଲାନ୍ତ ବୋଲି ମନେ କରି ଦିବ୍ୟସିଂହ ବାବୁ ତାଙ୍କୁ ଗାଁ ବୁଲିବାକୁ ଡାକିଲେ ନାହିଁ । ଆଉ ମଧ୍ୟ ସେ ଭାବିଲେ ଯେ, ଦୁର୍ଭିକ୍ଷ ଦେଖିବାକୁ ଯେ ଏତେ ବାଟ ଆସିଛି, ସେ ଆପେ ଆପେ ଗାଁକୁ ବୁଲିବାକୁ ଇଚ୍ଛା କରିବ । ସନ୍ଧ୍ୟାବେଳେ ଦିବ୍ୟସିଂହବାବୁ ଖଟ ଉପରେ ବସି ପାଠଶାଳାରେ ସୂତା କାଟୁଛନ୍ତି, କୁମୁଦିନୀ ମଧ୍ୟ ପାଖରେ ବସି କୌତୁକରେ ସୂତା କାଟୁଛନ୍ତି ।

କୁମୁଦିନୀ—କଅଣ ଦେଖିଲେ ଗ୍ରାମର ଅବସ୍ଥା ।

ଦିବ୍ୟସିଂହ ବାବୁ ମୁହଁ ଶୁଖାଇ କହିଲେ, "ଅତି ଖରାପ ।"

କୁମୁଦିନୀ— କାହିଁ ଉପରକୁ କିଛି ତ ଦେଖାଯାଉ ନାହିଁ ।

ଦବ୍ୟସିଦ୍ଧ ବାବୁ କିଛି କ୍ଷଣ ପାଇଁ ସୂତା କଟା ବନ୍ଦ କରିଦେଇ ଗୋଟିଏ ହାତ ଅରଟ ଚକ ଉପରେ, ଅନ୍ୟ ହାତରେ ପିଞ୍ଜିଟିଏ ସେହିପରି ଧରି ଧିରେ ଧିରେ କହିଲେ,"ସେହିତ ଅବସ୍ଥାର ବଶେଷତ୍ୱ। ସମାଜର ସ୍ତର ବିଭାଗ ଏପରି ହୋଇ ଯାଇଛି ଯେ, ଉପରେ ଧୋବଧୋବଳିଆଙ୍କୁ ଦେଖିଲେ ଆଉ ଯେ କେତେ ଉପାସ ପଡ଼ି ରହିଛନ୍ତି ତା ଜଣା ପଡ଼ିବ ନାହିଁ। ଏହି ପାଠଶାଳାକୁ ଯେଉଁମାନେ ଯା ଆସ କରୁଛନ୍ତି ବା ଯାହାଙ୍କ ଘରେ ଆମେ ଖିଆପିଆ କରୁଛେ, ସେମାନେ ଉପର ସ୍ତରର ଲୋକ। ଯେଉଁମାନେ ଉପାସ ରହୁଛନ୍ତି ସେମାନେ ଏମାନଙ୍କଠାରୁ ଏତେ ଦୂରରେ ଯେ, ଜଣେ ନିଜ ହୃଦୟକୁ ପରିଚାଳନା କରି ସେଠି ନପହଞ୍ଚିଲେ ସେମାନଙ୍କ ଅବସ୍ଥା ଜାଣି ପାରିବ ନାହିଁ।"

କୁମୁଦନୀ ଗମ୍ଭୀର ହୋଇ କହିଲେ, "ଆପଣ ଗାଁକୁ ଯାଇଥିବା ବେଳେ ଜଣେ ଦୁଇଜଣ ଭଦ୍ରଲୋକ ଏଠାକୁ ଆସିଥିଲେ। ସେମାନେ ପ୍ରଥମେ ମୋ ସଙ୍ଗେ କଥାବାର୍ତ୍ତା କରିବାକୁ ସଙ୍କୋଚ ବୋଧ କରୁଥିଲେ। ମାତ୍ର ମୁଁ ପ୍ରଥମେ ସେମାନଙ୍କ ସହିତ କଥାବାର୍ତ୍ତା କଲି। ସେମାନଙ୍କୁ ପଚାରିଲି ଗାଁର ଅବସ୍ଥା, ସେମାନେ ତ ସବୁ ଭଲ ବୋଲି କହିଲେ। ମୁଁ ପୁଣି କେବଳ ଦୁର୍ଭିକ୍ଷ କଥା ପଚାରିଲି, କିନ୍ତୁ ସେମାନେ ସେ ବିଷୟରେ କିଛି ଜାଣନ୍ତି ନାହିଁ ବୋଲି କହିଲେ।"

ଦବ୍ୟସିଦ୍ଧ ବାବୁ ଟିକିଏ ହସି କହିଲେ, "କାଲି ମୋ ସଙ୍ଗରେ ଯିବ, ମୁଁ ଦେଖାଇ ଦେବି। ଉପାସ ତ ଦେହ ଘଷା କଥା ହୋଇଗଲାଣି—କିଏ ଖାଉଛି, କିଏ ଉପାସ ରହୁଛି—କିଏ ବଞ୍ଚୁଛି, କିଏ ମରୁଛି, କେହି କାହାର କିଛି ଖବର ରଖନ୍ତି ନାହିଁ। ସମସ୍ତେ ନିଜ ନିଜ କଥା ନେଇ ବ୍ୟସ୍ତ। ବାସ୍ତବିକ ହୃଦୟ ବୋଲି କଥା ଆମ ଦେଶରୁ ବିଦାୟ ନେଇ ଗଲାଣି। ତାର କାରଣ ହେଉଛି, ଆମ ସମାଜରେ ଯେ ଜନ୍ମାନ୍ତର ବିଶ୍ୱାସ ଏ ଜନ୍ମ କିଛି ନୁହେଁ। ଯେ ଦୁଃଖ ଭୋଗୁଛି ସେ ପୂର୍ବ ଜନ୍ମର ଦୋଷରୁ। ଯାହାକିଛି କରିବାକୁ ହେବ ତା ପର ଜନ୍ମ ପାଇଁ। ଦୁଃଖ ଭୋଗ ଯଦ

ସ୍ୱୀକୃତ ପୂର୍ବ ଜନ୍ମର ଦୋଷର ପ୍ରାୟଶ୍ଚିତ୍ତ ବୋଲି ବିଶ୍ୱାସ କରାହୁଏ, ତେବେ ସେ ଦୁଃଖ ଦୂର କରିବାର ଶକ୍ତି ଆସିବ କେଉଁଠୁ—ସେ ବାଟରେ ହୃଦୟକୁ ଖଞ୍ଜିବା କରିବାର ଅବକାଶ କାହିଁ ?" ତାପରେ ତାର ପ୍ରତୀକାର ସମ୍ବନ୍ଧରେ କୁମୁଦିନୀ ପ୍ରଶ୍ନ କଲେ ।

ଦିବ୍ୟସିଂହ ବାବୁ ଗମ୍ଭୀର ଭାବରେ କହିଲେ, "ପ୍ରତୀକାର ? ସବୁ ସ୍ୱାର୍ଥ ଛାଡ଼ି ଦେଇ କେବଳ ପରର ସେବାରେ ଲୋକେ ବହୁ ସଂଖ୍ୟାରେ ଲାଗିଲେ ସମାଜର ଗତି ବଦଳି ଯିବ । ଆଗେ ତ ଆମଠାରୁ ଆରମ୍ଭ କରିବାକୁ ହେବ । ଆମେ ଯେ କାର୍ଯ୍ୟ କରୁଛୁ ତାହା ସମ୍ପୂର୍ଣ୍ଣ ନିଃସ୍ୱାର୍ଥ କି ସେଥିରେ କେଉଁ କୋଣରେ ସ୍ୱାର୍ଥ ଲୁଚି ବସିଛି ତାହା ମଧ୍ୟ ଜଣା ନାହିଁ । ତଥାପି ଯେତେଦୂର ନିଜ ମନକୁ ପରିଷ୍କାର ରଖିବା ସମ୍ଭବ ହେଉଛି, ସେତିକି କରି ଅଗ୍ରସର ହେବାକୁ ହେଉଛି । ଧୈର୍ଯ୍ୟ ଓ ବିଶ୍ୱାସ ରଖି ଚାଲିବାକୁ ପଡ଼ୁଛି ।"

କୁମୁଦିନୀ ସବୁ ଶୁଣି ଏକ ଦୀର୍ଘ ନିଃଶ୍ୱାସ ପକାଇଲେ । ସେ ନିରେଖି କରି ଦିବ୍ୟସିଂହ ବାବୁଙ୍କ ମୁହଁକୁ ଅନାଇଥାନ୍ତି । ଏହି ସମୟରେ ଖାଇବା ପାଇଁ ଡାକିବାକୁ ଲୋକ ଆସିଲା । ଦିବ୍ୟସିଂହ ବାବୁ ବିନମ୍ର ସହକାରେ କହିଲେ, "ମୁଁ ତ ସନ୍ଧପରେ ଖାଏ ନାହିଁ । ଏ ଯାଆନ୍ତୁ ଖାଇ ଆସିବେ ।" ସେ ଲୋକ ଜିଦ୍ କଲା । ମାତ୍ର ତାକୁ ବୁଝାଇ ଶୁଝାଇ ଦିବ୍ୟସିଂହ ବାବୁ କହିଲେ, "ସେ ତାଙ୍କ ନିୟମ, ତେଣୁ ସେ ତାକୁ ଭାଙ୍ଗି ପାରିବେ ନାହିଁ ।" ଏକା ଯିବାକୁ କୁମୁଦିନୀଙ୍କୁ ଅଡୁଆ ଲାଗୁଥାଏ । ପ୍ରଥମେ ସେ ମନା କରିଦେଲେ । ମାତ୍ର ଦିବ୍ୟସିଂହ ବାବୁ ନିତାନ୍ତ ଜିଦ୍ କରି ତାଙ୍କୁ ଖାଇବାକୁ ପଠାଇଲେ । ସେ ଇତସ୍ତତଃ ହୋଇ ଶେଷରେ ଗଲେ ।

କୁମୁଦିନୀ ଏକୁଟିଆ ଥିବାରୁ ଘରର ସ୍ତ୍ରୀ ଲୋକମାନେ ପାଖରେ ଆସି ଘେରି ବସିଲେ । ସେ ଦେଖିଲେ ଯେ ନିଜେ ସ୍ତ୍ରୀ ହୋଇଥିଲେ ମଧ୍ୟ ଘର ଝିଅବୋହୂଣୀ କେହି ତାଙ୍କ ଆଗକୁ ଆସୁ ନାହାନ୍ତି । ଯେଉଁମାନେ ଆସୁଛନ୍ତି, ସେମାନେ ସମସ୍ତେ ବୟସ୍କା । ତଥାପି ତାଙ୍କ ସଙ୍ଗେ କେଉଁ ବିଷୟରେ

କଥାବାର୍ତ୍ତା କରିବେ ଠିକ୍ କରି ପାରିଲେ ନାହିଁ । ଘରର ସ୍ତ୍ରୀମାନେ ଟାହୁର ଦେଖିଲା ପରି କୁମୁଦିନୀଙ୍କୁ କିଛିକ୍ଷଣ ଅନାଇ ରହିଲେ । ଶେଷରେ ଜଣେ ବୁଢ଼ୀ ଧୀରେ ଧୀରେ କହିଲା, "ଝିଅର ମୋର ଘର କେଉଁ ଗାଁକରେ ?"

କୁମୁଦିନୀ ଏଣେ ତେଣେ ଅନାଇ କହିଲେ, 'ବାଲେଶ୍ବର ଆଡ଼େ ।' ଏଥିରୁ ସେମାନେ କଣ ବୁଝିଲେ ତାହା ଜଣା ନାହିଁ ।

ଧୀରେ ଧୀରେ ସେ ବୁଢ଼ୀ ସ୍ନେହରେ କହିଲା, "ଝିଅତ ମୋର ଏଣେ ତେଣେ ବୁଲୁଛି, ତେଣେ ଘର କିଏ ସମ୍ଭାଳୁଛି ?" ଏହା ଉତ୍ତରରେ କୁମୁଦିନୀ କିଛି ନ କହି ହସିଲେ । ତା ପରେ ପିଲା ପିଲି ସମ୍ବନ୍ଧରେ ପ୍ରଶ୍ନ ହେଲା । କୁମୁଦିନୀ ସେ ପ୍ରଶ୍ନରେ ବିଚଳିତ ହୋଇଗଲେ । ଗୃହସ୍ଥାଶ୍ରମଠାରୁ ବହୁ ଦୂରରେ ସେ ଥିଲେ ମଧ୍ୟ ତାଙ୍କର ତାହାପ୍ରତି ଅନୁରାଗ ଅଛି ଏବଂ ସେଆଡ଼କୁ ଯିବାକୁ ସେ ଭାରି ସ୍ପୃହାନ୍ୱିତା । ତେଣୁ ସେ ପ୍ରଶ୍ନରେ ତାଙ୍କ ମନ ଓଲଟ ପାଲଟ ହେଉଥାଏ । ମନକୁ ଖୁବ୍ ଦୃଢ଼ କରି ସେ କହିଲେ, "ମୋର ପିଲାପିଲି କିଛି ନାହାନ୍ତି ।" ତା ପରେ ସେ ବୁଢ଼ୀ କହିବାକୁ ଲାଗିଲା, "ଝିଅର ଏଡ଼େ ସୁନ୍ଦର ରୂପ, ନାକରେ କାନରେ ଗହଣା କାହିଁ କିଛି ନାହିଁ ?" ପାଖରେ ଆଉଜଣେ ସ୍ତ୍ରୀଲୋକ ମୁହଁ ବୁଲାଇ ବୁଢ଼ୀକୁ ଧକ୍କା ଦେଲା । ବୋଧ ହୁଏ ସେ ବୁଢ଼ୀକୁ ବୁଝାଇ ଦେଲା ଯେ ହୁଏଲେ କୁମୁଦିନୀ ବିଧବା ହୋଇଥିବେ, ଏଣୁ ଏ ପ୍ରଶ୍ନ ବଡ଼ ଅସଙ୍ଗତ । କୁମୁଦିନୀ ଏ ପ୍ରଶ୍ନଟିର ଉତ୍ତର ଦେବାକୁ ସହଜ ମନେ କଲେ । "ନାକରେ କାନରେ ଗହଣା ପିନ୍ଧିବା ଭଲ ନୁହେଁ । ମାଙ୍କଡ଼କୁ ନାକରେ କାନରେ ଗହଣା ଦେଇ ସିନା ନଚାନ୍ତି । ଆମେ ତ ସବୁ ମଣିଷ । ପୁରୁଷ ଯେପରି ସ୍ତ୍ରୀ ସେହିପରି । ପୁରୁଷ ଯାହା କରୁଛି ସ୍ତ୍ରୀର ତାହା କରିବାର କ୍ଷମତା ଅଛି । ସେ କାହିଁକି ଗହଣା ପିନ୍ଧି ପିତୁଳା ହୋଇ ଘରେ ବସିବ ।" କୁମୁଦିନୀଙ୍କଠାରୁ ଏତିକି ଶୁଣି ଘର ସ୍ତ୍ରୀମାନେ ଖୁସି ହେଲେ । ସେମାନଙ୍କ ସନ୍ଦେହ ଚାଲିଗଲା ଯେ ସେ ବିଧବା ନୁହନ୍ତି । ତା ପରେ ସେ ବୁଢ଼ୀ ଥମେଇ ଥମେଇ

କହିଲା, "ନାତି ନାତୁଣୀଙ୍କ କଥା କିଏ ବୁଝୁଛି ଲୋ ଝିଅ ?" ଗାଉଁଲି ଲୋକଙ୍କର ଏପରି ଖୋଲା ତାତ୍ର ପ୍ରଶ୍ନ କରିବାର ଦେଖି କୁମୁଦିନୀ ବିସ୍ମିତ ହେଉଥାନ୍ତି । ମାତ୍ର ତାଙ୍କୁ ବଡ଼ ଅଡୁଆ ଲାଗୁଥାଏ । ସେ କିଛି ନ କହି ନୀରବ ରହିଲେ । ଖିଆ ପିଆ ପରେ ଘର ଲୋକେ କୁମୁଦିନୀଙ୍କୁ ଘରକୁ ଡାକିନେଲେ । କାରଣ ଇତିମଧ୍ୟରେ ସେମାନେ ତାଙ୍କୁ ଆପଣାର କରି ସାରିଲେଣି ବୋଲି ମନେ କଲେ । ପରିଷ୍କାର ଭିତରେ ଗୋଟିଏ ଘରେ ବସିବା ପାଇଁ ତାଙ୍କୁ ଆସନ ଦେଲେ । ତା ପରେ ପାନଭାଙ୍ଗି ଆଣି ଦେଲେ । କୁମୁଦିନୀ ପାନ ଖାନ୍ତି ନାହିଁ । ମାତ୍ର ମାନ ରକ୍ଷା କରିବା ପାଇଁ ପାନଖିଲିରୁ ସେ ଲବଙ୍ଗଟି ନେଇ ପାଟିରେ ପକାଇଲେ । ତା ପରେ ଘର ସ୍ତ୍ରୀମାନେ ନାନା ଗପ ଆରମ୍ଭ କଲେ । ସେମାନେ ଜାଣନ୍ତି ଯେ ଘର ଭିତର ହେଉଛି ସ୍ତ୍ରୀର ଅପ୍ରତିହତ ରାଜ୍ୟ । ଏ କିପରି ନାରୀ ଯେ, ତାକୁ ଛାଡ଼ ବାହାରେ ବୁଲୁଛି । ତେଣୁ ନିଜର କୌତୂହଳ ମେଣ୍ଟାଇବା ପାଇଁ ତାଙ୍କୁ ନାନା କଥା ପଚାରୁଥାନ୍ତି । କୁମୁଦିନୀ ସବୁ କଥା କହିବାକୁ ନାରାଜ । ଯେତେବେଳେ ସେ ବିବାହ କରି ନାହାନ୍ତି ବୋଲି ଘରଲୋକ ଜାଣିଲେ, ସେତେବେଳେ ଜଣେ କିଏ ତାଙ୍କ ମଧ୍ୟରୁ ଦୁଃଖରେ କହିଲା, "କି ସୁନ୍ଦର ରୂପ—ତା ସାଙ୍ଗକୁ ଯଦି ପିଲାଟିଏ ଥାନ୍ତା ସୁନାରେ ସୁହାଗ ସିନା ହୋଇଥାନ୍ତା !" ତା ପରେ ସେ ବୁଢ଼ୀ ଦୀର୍ଘ ନିଃଶ୍ୱାସ ପକାଇ ଥମେଇ ଥମେଇ କହିଲା, "ଝିଅ, ଚକ ଘୁଡ଼ କହୁଣୀକୁ ବଢ଼ିଗଲେ ପଛରେ ଭଲ ହେବୁ । ମୋ ପରି ଯେତେବେଳେ ତୋର ବୟସ ହେବ, ମୁଅଛଡ଼ା ଆଉ କିଏ ତୋର ସାହା ହେବ ?"

ଏକଥା ଶୁଣି କୁମୁଦିନୀଙ୍କ ମନ ଭିତର ଘାଣ୍ଟି ଗୋଳେଇ ହେଲା । ସେମାନଙ୍କ ସରଳ ସହାନୁଭୂତି ତାଙ୍କ ପ୍ରାଣକୁ ସ୍ପର୍ଶ କରୁଥାଏ । ତା ସାଙ୍ଗେ ସାଙ୍ଗେ ଗୃହସ୍ଥ ଜୀବନପାଇଁ ପ୍ରବଳ ଇଚ୍ଛା । ସେ ଅତି ଅପ୍ରତ୍ୟାଶିତ ଭାବରେ ବିଚଳିତ ହେଲେ । କେବଳ ଦୀର୍ଘ ନିଃଶ୍ୱାସଟିଏ ପକାଇ ଶୀଘ୍ର ଶୀଘ୍ର କଥାବାର୍ତ୍ତା ଶେଷ କରି ଚାଲି ଆସିଲେ ।

## —୧୧—

ଦିବ୍ୟସିଂହ ବାବୁ ବସି ପଢୁଛନ୍ତି । କୁମୁଦିନୀ ଆସି ବସି ପଡ଼ିଲେ । ତାଙ୍କ ମୁଖ ଚିନ୍ତାକୁଳ । ଅନେକ ସମୟ ବସି ରହି ତା ପରେ ମୁହଁରେ ହାତ ଦେଇ ଝର୍ ଝର୍ ହୋଇ କାନ୍ଦିବାରେ ଲାଗିଲେ । ଦିବ୍ୟସିଂହ ବାବୁ ଚମକି ପଡ଼ି ଅନାଇ ଦେଖିଲେ ଯେ, କୁମୁଦିନୀ କାନ୍ଦୁଛନ୍ତି । ସେ ବ୍ୟସ୍ତ ହୋଇ ପଚାରିଲେ 'କି, କଥା କଣ ? କଣ ହେଲା ?' କୁମୁଦିନୀ ନୀରବ । ଦିବ୍ୟସିଂହବାବୁ ପାଖକୁ ଉଠି ଆସିଲେ । ମାତ୍ର ଦେହ ଛୁଇଁବା ପାଇଁ ତାଙ୍କୁ ସଙ୍କୋଚ ବୋଧ ହେଉଥାଏ । କଥା କଣ ବୋଲି ବାରମ୍ବାର ପଚାରିଲେ । ନିଜର ଯେତେ ଶକ୍ତି ଥିଲା ସବୁ ଲଗାଇ କୁମୁଦିନୀ ନିଜକୁ ସଂଯତ କଲେ ଓ ଶୀଘ୍ର ଶୀଘ୍ର ଲୁହ ପୋଛି ଯେତେ ଦୂର ସମ୍ଭବ ଯେପରି କିଛି ହୋଇ ନାହିଁ ଏହିପରି ଭାବ ପ୍ରକାଶ କରିବାକୁ ଚେଷ୍ଟା କଲେ । ଦିବ୍ୟସିଂହ ବାବୁ ସ୍ନେହ ସହକାରେ ପଚାରିଲେ "କଣ ? ବ୍ୟାପାର କଣ ?" କୁମୁଦିନୀ କଥାକୁ ବାରେଇ ଦେବେ ବୋଲି ବହୁତ ଚେଷ୍ଟା କଲେ । ମାତ୍ର ଦିବ୍ୟସିଂହ ବାବୁଙ୍କ ମନ ମାନୁ ନାହିଁ । ଶେଷରେ କହିଲେ "ସେ ସ୍ତ୍ରୀ ଲୋକମାନେ ମୋତେ ପିଲା ପିଲି କଥା ପଚାରିବାରୁ ମୋ ମନ କଣ ହୋଇ ଗଲା ।" ଦିବ୍ୟସିଂହ ବାବୁ ତଳକୁ ମୁହଁ କରି ଅସ୍ପଷ୍ଟ ସ୍ୱରରେ କହିଲେ "ସେହି ହେଉଛି ସ୍ତ୍ରୀ ଲୋକଙ୍କ ହୃଦୟରେ ଅତି ଦୁର୍ବଳ ବିନ୍ଦୁ ।" ତାପରେ ସ୍ପଷ୍ଟ ଭାବରେ ମୁହଁକୁ ଚାହିଁ ଅଳ୍ପ ହସି କହିଲେ, "ଆଚ୍ଛା, ତୁମର ଖବର ତ, କିଛି କହିଲ ନାହିଁ ? ଏତେ ପର ଆମକୁ ମନେ କରୁଛ ?"

କୁମୁଦିନୀଙ୍କ ମନ ବାସ୍ତବିକ ଅତି ଦୁର୍ବଳ ହୋଇ ପଡ଼ିଥାଏ । ଶୀତ ଦେଶରେ ବରଫ ଯେତେବେଳେ ପଡ଼େ ସେତେବେଳକୁ ତାହା ଏତେ ଟାଣ ଥାଏ ଯେ ସେଥିରେ ଅସାବଧାନ ଲୋକ ପଡ଼ିଗଲେ ଗୋଡ଼ହାତ ଭାଙ୍ଗି ଲହୁ ଲୁହାଣ ହୋଇଯାଏ । ମାତ୍ର ଯେତେବେଳେ ପୁଣି ସେହି ବରଫ ତରଳେ, ସେତେବେଳେ ତାର ଜଳପ୍ରଭାବ ଏପରି ପ୍ରଖର ହୁଏ ଯେ, ସେଥିରେ ମଧ୍ୟ ଭାସି ଯିବାର ଆଶଙ୍କା ହୁଏ । ବର୍ତ୍ତମାନ କୁମୁଦିନୀଙ୍କ ମନ ବରଫ ତରଳି ଯିବା ଅବସ୍ଥାରେ । ସେ ନିଜକୁ ନିଜେ ସମ୍ଭାଳି ପାରୁ ନ ଥାନ୍ତି । ତାଙ୍କ ମନ ହେଉଥାଏ ଯେପରି ସେ ନିଜକୁ ଅଜାଡ଼ି ଦେବେ । ତହିଁରେ ଦିବ୍ୟସିଂହ ବାବୁଙ୍କ ସସ୍ନେହ ବ୍ୟବହାର ମଧ୍ୟ ତାଙ୍କୁ ଆହୁରି ଅସମ୍ଭାଳ ହେଉଥାଏ । ସେ ଆଉ ସମ୍ଭାଳି ନ ପାରି ଧୀରେ ଧୀରେ କହିଲେ, "ଆପଣ ଆଦର୍ଶ ପୁରୁଷ । ମୁଁ ଆପଣଙ୍କଠାରୁ କେତେ ତଳେ । ମୋର ବୃତ୍ତାନ୍ତ ଆପଣ ଶୁଣିଲେ ଆପଣଙ୍କର ଯେତେ ଘୃଣା ଅଛି ସବୁ ମୋହରିଠାରେ ଶେଷ ହୋଇଯିବ ।"

ଦିବ୍ୟସିଂହ ବାବୁ କଅଁଳେଇ କହିଲେ, "ପ୍ରତ୍ୟେକଙ୍କ ଜୀବନରେ ଏପରି ଘଟଣା ଅଛି ଯାହାକୁ ପ୍ରକାଶ କରି ଦେଲେ ଓ କେବଳ ସେହାକୁ ଘେନି ତାର ବିଚାର କଲେ ସେ ଘୃଣ୍ୟ ବୋଲି ଜଣା ପଡ଼ିବ । ତେଣୁ ସମସ୍ତେ ଚେଷ୍ଟା କରନ୍ତି ସେ ସବୁ ଘଟଣା ଲୁଚାଇବା ପାଇଁ । ମାତ୍ର ନିଜର ଲୋକ ପାଖରେ ସେ ସବୁ ଲୁଚାଇ ଲାଭ କିଛି ନାହିଁ । ତୁମର ସେବାବ୍ରତ, ତୁମର ବିଚକ୍ଷଣତା ମୋ ଉପରେ ଏପରି ପ୍ରଭାବ ପକାଇଛି ଯେ, ମୋର ମନେ ହେଉଛି ତୁମକୁ ଧରିବାନ୍ଧି ଏହି ଓଡ଼ିଶାରେ କାମ କରାଇବା ପାଇଁ । ଗରିବ ଏ ପ୍ରଦେଶ, କେବଳ ଧନରେ ନୁହେଁ, କର୍ମୀ ହିସାବରେ ମଧ୍ୟ ବଡ଼ ଦରିଦ୍ର । ତୁମପରି କର୍ମୀଙ୍କୁ ଯେପରି ଓଡ଼ିଶା ଚାହିଁ ବସିଛି । ତେଣୁ ମୁଁ ତୁମର ନିଜର ଲୋକଭଳି ହେବାକୁ ଚାହୁଁଛି । ଲାଲମୋହନଙ୍କର ମଧ୍ୟ ସେଇଆ ଇଚ୍ଛା ଯେ ତୁମେ ଏଇଠି ରହିଯାଅ । ସେ ବିଚାରି ଏକାକୀ ଯେତିକି ପାରୁଛି, ତା ହିସାବରେ କାମ କରୁଛି । ସବୁ କ୍ଷେତ୍ରରେ ଜଣେ ଅଧେ ଉଦ୍ଧ୍ୱଶ୍ୱାସ ହୋଇ କେତେଦୂର ଦୌଡ଼ିବେ ? ତେଣୁ ସାହାଯ୍ୟ

ଲୋଡ଼ା । ତୁମେ ତୁମର ବୃତ୍ତାନ୍ତ କହିବାକୁ ସଙ୍କୋଚ ବୋଧ କରୁଛ—ମୋର ବୃତ୍ତାନ୍ତ ତୁମେ ଶୁଣିଲେ ତୁମର ପ୍ରାଣ ଥରି ଉଠିବ । ତୁମେ ମୋତେ ମାରି ଗୋଡ଼ାଇବ । ସେହିପରି ମଧ୍ୟ ଲଲମୋହନର । ପ୍ରତ୍ୟେକର ଜୀବନରେ କିଛି ନା କିଛି ସମସ୍ୟା ଅଛି ଓ ତାହା ତାକୁ ଭିତରେ ଭିତରେ କେତେ କଷ୍ଟ ଦେଉଛି, ତାହା ସେ ଜାଣେ । ମାତ୍ର ନିଜ ନିଜ ଭିତରେ ସେ ବିଷୟ କଥାବାର୍ତ୍ତା ହୋଇଗଲେ, ଅନେକ ପରିମାଣରେ ଦୁଃଖର ଲାଘବ ହୁଏ ।”

ଏତିକି କହିବା ପରେ ମଧ୍ୟ କୁମୁଦିନୀ ସେହିପରି ତଳକୁ ମୁହଁ କରି ମୁହିଁ ବସିଥାନ୍ତି । ଟିକିଏ ଅପେକ୍ଷା କରି ଦିବ୍ୟସିଂହ ବାବୁ ପୁଣି କହିଲେ, “ଶୁଣିବ ମୋ ଦୁଃଖର କାହାଣୀ ?” ମୁଁ ଅତି ଗରିବ ଘରେ ଜନ୍ମ । ଯାହାର ଏକ ଭାଙ୍ଗି କୋଠା ଅଛି, ସେ ଦୋତାଲା କରି ପାରୁ ନାହିଁ ବୋଲି ନିଜକୁ ଗରିବ କହୁଛି । ଯାହାର ବାଟିଏ ଜମି ଅଛି, ସେ ଜମିଦାରୀ କରି ପାରୁନାହିଁ ବୋଲି ନିଜକୁ ଗରିବ ଭାବୁଛି । ମୁଁ ସେପରି ଗରିବ ନୁହେଁ, ମୋର ବାପା ଅତି ପିଲାଦିନେ ମରିଯାଇ ଥିଲେ । ଆଉ କେହି ନଥିଲେ, କେବଳ ମୋର ମା ଧାନକୁଟି ନିଜ ପେଟ ପୋଷୁଥିଲା । ମତେ ମଧ୍ୟ ପାଳୁଥିଲା । ଗାଁ ପାଠଶାଳାରେ ମୁଁ ଉଚ୍ଚ ପ୍ରାଇମେରୀରେ ବୃତ୍ତି ପାଇଲି । ତା ପରେ ଉପରକୁ ପଢ଼ିଲି । ବରାବର ବୃତ୍ତି ପାଇ ମୁଁ ପଢ଼ି ଆସିଛି । ପଢ଼ିବା ବେଳେ ମୁଁ ଏପରି ଗରିବ ଭାବରେ ଚଳୁଥିଲି ଯେ, ସେହି ବୃତ୍ତି ଟଙ୍କାରୁ କିଛି ବଳାଇ ମା ଠାକୁ ପଠାଉଥିଲି । ମା ମୋର ସେ ଟଙ୍କାକୁ ଖର୍ଚ୍ଚ ନକରି, ନିଜ ଦୁଃଖ ଧନ୍ଦା କରି ଚଳି, ତାକୁ ଜମା କରି ରଖୁଥାଏ । ମୁଁ ଯେତେବେଳେ ଆଇ.ଏ, ପାସକଲେ ମୋ, ମାଆ ଲଗାଇଲା ମୋତେ ବାହା କରିବା ପାଇଁ । ମୁଁ ଯେତେ ବୁଝାଇଲି ସେ ମାନିଲା ନାହିଁ । ପାଠପଢି ମୁଁ ଯେ ରୋଜଗାର କରିବି, ସେ ଦିନ ସେ ଦୂରରୁ ଦେଖୁ ତା’ମନ ସମ୍ଭାଳି ରହି ପାରୁ ନଥାଏ । ମାଆ ମନରକ୍ଷା କରିବା ପାଇଁ ମୁଁ ବାହା ହେଲି । ଯାହାକୁ ବାହାହେଲି ସେ ମଧ୍ୟ ଗରିବ ଘରର ଝିଅ । ଆଇ.ଏ. ରେ ବୃତ୍ତି ପାଇଲି । ନିଜେ ଗରିବ ଭାବରେ ଚଳି,

ଆଉମଧ୍ୟ ଦୁଇଟି ଟିଉସନ୍ କରି ଅଧିକ ରୋଜଗାର କଲି । ଘରକୁ ମାସକୁ ୫ ୧୦।୧୫ ଙ୍କା ପଠାଇବାରେ ଲାଗିଲି ।”

“ମୁଁ କହିବି କଅଣ, ସେ ବୁଢ଼ୀ ସବୁ ଟଙ୍କାତକ ଜମା କରି ରଖେ । ନିଜେ ଦୁଃଖ ଧନ୍ଦା କରି ବୋହୂକୁ ମଧ୍ୟ ଭାପରେ ଖଟାଇ କୌଣସି ପ୍ରକାରେ ଚଳିଯାଏ । ଯେଉଁ ବର୍ଷ ମୁଁ ବି, ଏ, ପରୀକ୍ଷା ଦିଏ, ସେହି ବର୍ଷ ଗଚ୍ଛିତ ଟଙ୍କାରେ ଦୁଇମାଣ ଜମି ମୋ ମା କିଣିଲା । ସେ ଦିନ ତାର କି ଆନନ୍ଦ ! ତା ଗୋଡ଼ ଆଉ ତଳେ ଲାଗୁ ନଥାଏ । ତା ପରେ ମୁଁ ଓକିଲାତି ପାଶ କଲି । ଇତିମଧ୍ୟରେ ଆହୁରି ଦେଢ଼ମାଣ ଜମି ମା ଖରିଦ କରି ସାରି-ଲାଣି । ଯେଉଁ ବର୍ଷ ମୁଁ ଓକିଲାତି ଆରମ୍ଭ କରେ, ସେହି ବର୍ଷ ମୋର ଗୋଟିଏ ପୁଅ ହେଲା । ସେ ଦୁଃଖର କାହାଣୀ କହିବାକୁ ସୁଦ୍ଧା ମୋ ଛାତି ଥରି ଉଠୁଛି । ମା’ ମୋର ଏପରି ଯେ ବୋହୂକୁ ଗୃହକର୍ମୀ ପରି ଖଟାଏ । ଯେତେ ପଇସା ଜମା କରି ସେ ଜମି କିଣିବ, ତାର ସେତେ ଆନନ୍ଦ । ମୋର ଓକିଲାତି କରିବାର ୨ୟ ବର୍ଷ ପରେ, ଦେଶ କାମ କରିବା ପାଇଁ ଓକିଲାତି ଛାଡ଼ିଲି । ଯେଉଁ ଦିନ ସିଦ୍ଧାନ୍ତ କଲି ସେ ଦିନ କଥା ଆଜି ସୁଦ୍ଧା ମୋର ଠିକ ଠିକ କରି ମନେ ଅଛି । ମୋତେ ଯେପରି କିଏ କାନେ କାନେ କହିଲା, “ଦେଶ ସାରା ତ ଗରିବ, ନିରାହାରରେ ହାହାକାର କରୁଛନ୍ତି, ଜଣେ ରୋଜ-ଗାର କରି ବଡ଼ ଲୋକ ହେଲେ ଲାଭ କଣ ?” ଯଦି ଦେଶର ଦାରିଦ୍ର୍ୟ ଦୂର କରିବା ପାଇଁ ଅନେକ ଆତ୍ମବଳି ଦେଇ ଦଅନ୍ତି ତେବେ ସିନା ଜୀବନ ସାର୍ଥକ ହେବ ।”

“ମା, ସ୍ତ୍ରୀ ସମସ୍ତଙ୍କ ଚିନ୍ତାକୁ ଠେଲି ଦେଇ ମୁଁ ଦେଶକାମରେ ବାହାରିଲି । ତୁମେ ସହଜରେ ଅନୁମାନ କରି ପାରୁଥିବ ମୋ ମା ମନ କଅଣ ହୋଇ ଯାଉଥିବ । ମାତ୍ର ସେ ମୋତେ ଛାଡ଼ି ଦେଇ ତାର ସଂସାର ସେ ଜମାଇବାରେ ଲାଗିଲା ।

ସାଢ଼େ ଛଅ ମାଣ ଜମିରୁ ସେ ଯେତିକି ପାଇଲା ସେ ତାକୁ ଜମାଇବାକୁ ଲାଗିଲା । ଏଣେ ନିଜେ ଧାନକୁଟି, ବୋହୂକୁ ଧାନ କୁଟାଇ କୌଣସି ପ୍ରକାରେ

ଧୁଇପେଟ ଓ ମୋର ସେ ହତଭାଗ୍ୟ ପୁଅଟିକୁ ପୋଷନ୍ତି । ଦେଶର କାମ ଯେ କାହାକୁ ଅଜଣା ନୁହେଁ ତା ତୁମ୍ଭେ ଭଲ କରି ଜାଣ । ଘଟନା କ୍ରମେ ମୋତେ ରାଜଦ୍ରୋହ ଅପରାଧରେ ବର୍ଷେ ଜେଲ ହୋଇଗଲା । ସେହି ଜେଲରେ ଥିବାବେଳେ ପ୍ରଥମେ ମୁଁ ଖବର ପାଇଲି ଯେ, ମୋ ପୁଅଟି ମରିଗଲା । ଓଃ କି ଦୁଃଖ ! ଭାବିଲି ଜେଲକୁ ଦେହ ଥରି ଯାଉଛି । ତାପରେ ଖବର ପାଇଲି ଯେ, ମୋ ସ୍ତ୍ରୀ ମଧ୍ୟ ପୁଅର ସାଥୀ ହେଲା । କାରାଗାର ଯନ୍ତ୍ରଣା ମଧ୍ୟରେ ଏ ଯନ୍ତ୍ରଣା ମୋତେ ପାଗଳ କରିଦେଲା । ମୋର କେତେକ ବନ୍ଧୁ, ଯେଉଁମାନେ ମୋ ସଙ୍ଗରେ ଜେଲରେ ଥିଲେ, ସେମାନେ ଭାବିଲେ ମୁଁ ନିଶ୍ଚୟ ପାଗଳ ହୋଇଯିବି । ମାତ୍ର ସୌଭାଗ୍ୟ ବା ଦୁର୍ଭାଗ୍ୟ ଯାହାହେଉ, ସେପରି ନ ହୋଇ ଯେତେବେଳେ ଜେଲରୁ ଘରକୁ ଫେରିଲି ଦେଖେ ଯେ ମୋ ମା ମଧ୍ୟ ଅତି ପୀଡ଼ିତ । ଶୁଣିଲି ମୋ ସ୍ତ୍ରୀ ଯେତେବେଳେ ଦେହାନ୍ତ ହୋଇଥିଲା, ସେତେବେଳେ ତାର କୌଣସି ଚିକିତ୍ସାର ବ୍ୟବସ୍ଥା ହୋଇ ନ ଥିଲା । ସ୍ତ୍ରୀଟି ତ ଉପାସରେ ମରିଗଲା ବୋଲି କହିବାକୁ ହେବ । ମୁଁ ମୋର ମା ଉପରେ ରାଗିଲି । ମାତ୍ର ଯେଉଁଥି ପାଇଁ ମୁଁ ରାଗୁଥିଲି ଠିକ୍ ସେଇଆ ମୋ ଭାଗ୍ୟରେ ମଧ୍ୟ ଘଟିଲା । ମୋର ମାର ଚିକିତ୍ସା ପାଇଁ ମୁଁ କିଛି ହେଲେ କରି ପାରିଲି ନାହିଁ । ମୁହଁ ଖୋଲି ମୋର କେତେକ ବନ୍ଧୁଙ୍କୁ କିଛି ସାହାଯ୍ୟ ଚାହୁଁଥିଲି । ସମସ୍ତେ ମୋତେ ହତଭାଗ୍ୟ ବୋଲି ଦୟା କଲେ । ପୁଣି ଓକିଲାତି କରିବା ପାଇଁ ପରାମର୍ଶ ଦେଲେ; ମାତ୍ର ସାହାଯ୍ୟ କିଛି ମିଳିଲା ନାହିଁ । ମୋରି ଆଖି ଆଗରେ ମୋ ମା'ର ପ୍ରାଣ ଚାଲିଗଲା । ମୁଁ ତା ପାଇଁ କିଛି କରିପାରିଲି ନାହିଁ । ସେ ମୋତେ ବୁଢ଼ୀ ବୟସରେ ଚୁଡ଼ା ଧାନ କୁଟି ପାଠ ପଢ଼ାଇ ଥିଲା ।

"ତା'ପରେ ଗୋଳମାଳ ଲଗାଇ ଗାଁ ଜମିଦାର, ମା କିଣିଥିବା ଜମି-ତକ ମଧ୍ୟ ନେଇଗଲେ । ଏ ସବୁ କଥା ମୋ, ମନେ ପଡ଼ିଗଲେ ଏପରି ଆତ୍ମଗ୍ଲାନି ଜାତ ହୁଏ ଯେ, ମୁଁ ମୁଣ୍ଡ ଟେକି ପାରେ ନାହିଁ ।"

"ଯଦି କେହି ନ୍ୟାୟାସନରେ ବସି ବିଚାର କରେ ତେବେ ସେ ମୋତେ ତିନୋଟି ମନୁଷ୍ୟର ହତ୍ୟାରେ ଅଭିଯୁକ୍ତ କରିବ । ଏହି ଦୁଃଖର

ବୋଝ ନେଇ ମୁଁ ଚାଲିଛି ନିରାଶାରେ କୁହୁଡ଼ି ଭିତରେ କେତେବେଳେ ଝୁଣ୍ଟି ପଡ଼ୁଛି । ମାତ୍ର ଚାଲିଛି କୁଆଡ଼େ ତା ମୁଁ ନିଜେ ସୁଦ୍ଧା ଜାଣେ ନାହିଁ । ଏହା ଠାରୁ ବଳି କଣ ତୁମର ସମସ୍ୟା ବଡ଼ ? କିଛି ନୁହେଁ । ଯାହା ଅତୀତ ତାକୁ ଭୁଲି ହେଲେ ମଧ୍ୟ କେବେ କେହି ସୁଧାରି ପାରିବେ ନାହିଁ । ସେଥିପାଇଁ ତାର ଚିନ୍ତାରେ ଲୋକ ଦବିଯିବ କାହିଁକି ?"

ଦିବ୍ୟସିଂହବାବୁ ନିଜର କାହାଣୀ କହୁଥିବା ଭିତରେ କୁମୁଦିନୀଙ୍କ ଆତ୍ମଚିନ୍ତା ଧୀରେ ଧୀରେ ଅପସରି ଯାଉଥାଏ । ସେ କ୍ରମଶଃ ଏକମନ ହୋଇ ଦିବ୍ୟସିଂହବାବୁଙ୍କ ଜୀବନ କଥା ଶୁଣିବାରେ ଲାଗିଲେ । ଅନୁକମ୍ପା, ସମ୍ମାନ ଓ ସେହିହେତୁ ସ୍ନେହ ସ୍ୱତଃ ଯେପରି କୁମୁଦିନୀଙ୍କ ହୃଦୟରୁ ଦିବ୍ୟସିଂହ ବାବୁଙ୍କ ଆଡ଼କୁ ବହି ଯାଉଥାଏ । କଥା ପ୍ରସଙ୍ଗରେ ସେ ଲାଲମୋହନଙ୍କ ଜୀବନ ସମସ୍ୟା କଥା କହିଲେ । ସେ କଥା କୁମୁଦିନୀଙ୍କ ମନକୁ ଲାଗିଥିଲା । ତେଣୁ ଶେଷରେ ସେ ଧୀରେ ପଚାରିଲେ, "ଲାଲମୋହନ ବାବୁଙ୍କ ସମସ୍ୟା କଣ ? ତାଙ୍କର ତ କିଛି ନ ଥିଲା ପରି ଜଣାପଡ଼େ ।" ଦିବ୍ୟସିଂହ ବାବୁ ହସିଉଠି କହିଲେ, "କିଏ ସମସ୍ୟାରେ କାହାର ଜୀବନ ଅଛି ?" କୁମୁଦିନୀ ଉତ୍ସୁକ ହୋଇ ପଚାରିଲେ, "କଅଣ ସେ ସମସ୍ୟା । ବଡ଼ ଲୋକଙ୍କ କଥା ଶୁଣିଲେ ମନ ଟିକିଏ ଅଶ୍ୱସ୍ତ ହୁଏ ।"

ଦିବ୍ୟସିଂହ ବାବୁ ସଂକ୍ଷେପରେ କହିଲେ, "ଲାଲମୋହନ ବାବୁଙ୍କ ବିବାହିତ ଜୀବନରେ ଶାନ୍ତି ଆଦୌ ନାହିଁ । ସେଥିପାଇଁ ସେ ବଡ଼ ବ୍ୟସ୍ତ । ମାତ୍ର ନିଜକୁ ଖୁବ୍ ସମ୍ଭାଳି ସେ ଚାଲିଛନ୍ତି ।"

ଏ କଥା ଶୁଣି କୁମୁଦିନୀ ଗମ୍ଭୀର ହୋଇ ଗଲେ । ତାଙ୍କ ମନ ଯେପରି ହଠାତ୍ କୁଆଡ଼େ ଚାଲିଗଲା । ଦିବ୍ୟସିଂହ ବାବୁ ଯେତେବେଳେ ପଚାରିଲେ, "ତୁମ ନିଜର କି ଦୁଃଖ ଏଥର କୁହ ?" ସେତେବେଳେ କୁମୁଦିନୀ ପ୍ରକୃତିସ୍ଥ ହୋଇ ଯାଇ ତଳକୁ ଚାହିଁ ଧୀରେ ଧୀରେ କହିଲେ, "ମୋ କଥା କହିବା ପାଇଁ ପ୍ରଚୁର ମନ ବଳ ଦରକାର, ଯାହା ବର୍ତ୍ତମାନ ମୋର ନାହିଁ । ଦିନେ ମୁଁ ଆପଣଙ୍କୁ କହିବି । ସେ ଦିନ ଆପଣ ଏ ବାଳିକାକୁ ପାତକିନୀ ବୋଲି ଗୋଡ଼ରେ ଠେଲି ନଦେଇ ଆପଣଙ୍କ ବିଶାଳ ହୃଦୟରେ ଟିକିଏ ସ୍ଥାନ ଦେବେ ।" ଏତିକି କହୁ କହୁ କୁମୁଦିନୀଙ୍କ କଣ୍ଠରୁଦ୍ଧ ହୋଇ ଆସିଲା ।

ସେ ଦିନ ରାତିସାରା କୁମୁଦିନୀ ଶୋଇ ନାହାନ୍ତି । ଲଲମୋହନ ବାବୁ ବିବାହିତ ଓ ତାଙ୍କ ବିବାହିତ ଜୀବନ ପୁଣି ସମସ୍ୟାପୂର୍ଣ୍ଣ । କାହିଁ ସେ କଥା ତ ସେ କେବେ ପ୍ରକାଶ କରି ନାହାନ୍ତି । ସିଧା ସିଧା ସେ କଥା ପଡ଼ି ନଥିଲେ ସୁଦ୍ଧା ସେତ ବରାବର ସୂଚନା ଦେଇଛନ୍ତି ଯେପରି ସେ ଅବିବାହିତ । ସେ ନିଜେ ମୋ ବୃତ୍ତାନ୍ତ ଶୁଣିବା ପାଇଁ ଅନୁତ୍ସୁକ । ସେହି ଅନିଚ୍ଛା ଦ୍ୱାରହିଁ ମୋତେ ତାଙ୍କ ଜୀବନ ବୃତ୍ତାନ୍ତ ଜାଣିବା ପାଇଁ ବାଧା ଦେବାରେ ସେ ସଫଳ କାମ ହୋଇଛନ୍ତି । ତାଙ୍କ ସଙ୍ଗରେ ପୁଣି ମୋର ବିବାହ ସୁନିଶ୍ଚିତ । ଏଠୁ ଚଲେ ସେ କାର୍ଯ୍ୟରେ ସମାଧାନ—ଜଣେ ସ୍ତ୍ରୀ ବହି ଥାଉଁ ଥାଉଁ ପୁଣି ଦାରପରିଗ୍ରହ । ତା ପରେ ଯଦି ତାଙ୍କ ସମସ୍ୟାର ସମାଧାନ ହୋଇଯାଏ, ତେବେ ମୋର ବା ସ୍ଥାନ କେଉଁଠି ? ସୁଖର ଜୀବନ ଭାବି ମୁଁ ଏତେକ ଦୁଃଖର ବିରାଟ ଫାନ୍ଦ ଭିତରକୁ ମୁହିଁଛି । ଏହି ପ୍ରକାର ଚିନ୍ତାରେ ସେ ଅସ୍ଥିର । ମନଖୋଲି କାହାରି ଠାରେ ସେ କଥା କହି ନ ଥିଲେ ମଧ୍ୟ ସେ ନିଜର ବିବାହିତ ଜୀବନର ଏକ ବିରାଟ ପରିକଳ୍ପନା ନିଜ ମନ ଭିତରେ ଗଢ଼ି ନେଇଥିଲେ । ଲଲମୋହନବାବୁଙ୍କ ପରି ଜଣେ ଅଦ୍ୱିତୀୟ ଉତ୍ସାହୀ ଦେଶ ସେବକ ସହିତ ସେ ନିଜ ଜୀବନକୁ ଛନ୍ଦିଦେଇ ନିଜର ସେବାର ଆଦର୍ଶ ଅକ୍ଷୁର୍ଣ୍ଣ ରଖିବା ସଙ୍ଗେ ସଙ୍ଗେ ଗାର୍ହସ୍ଥ୍ୟସୁଖ ମଧ୍ୟ ପୂରିପୂରି ଆସ୍ୱାଦନ କରିବେ ବୋଲି ସେ ଭାବି ନେଇଥିଲେ । ମାତ୍ର ସେ ସବୁ ଯେପରି ବାଲିଘର ପରି ଭୁଶୁଡ଼ି ପଡ଼ୁଛି ।

କଲିକତା ଛାଡ଼ି ପୁରୀ ଆସିବା ଓ ସେଠାରେ ଏତେ ଦିନ ପଡ଼ି ରହିବା ଏ ସବୁ ଯେପରି କୁଆ ପାଟିରେ ଦାନ୍ତ ଖୋଜିବା ଭଳି ତାଙ୍କୁ ବୋଧହେଲା—

ଏ ପାଖ ସେ ପାଖ ଛଟପଟ ହୋଇ ତାଙ୍କୁ ନିଦ ଲାଗୁନଥାଏ । ମନ ହେଉଥାଏ ସୁବିଧା ଥାନ୍ତା କି ସେ ତତ୍‌କ୍ଷଣାତ୍ ଯାଇ ଲାଲମୋହନ ବାବୁଙ୍କୁ ଦୁଇ ଚାରି ପଦ କଡା କଥା ଶୁଣାଇ ଦେଇ ତାଙ୍କ ସହିତ ସମସ୍ତ ସମ୍ପର୍କ ଛିନ୍ନ ବିଚ୍ଛିନ୍ନ କରିଦିଅନ୍ତେ । ତା'ପରେ ଦିବ୍ୟସିଂହବାବୁଙ୍କଠାରେ ନିଜର ଯାହା କିଛି ସବୁ ସମର୍ପଣ କରି ଦେଇ ତାଙ୍କର ଆଜ୍ଞାରେ ଜୀବନଟାକୁ କୌଣସି ପ୍ରକାରେ ସାଙ୍ଗ କରି ଦିଅନ୍ତେ । ଯେତିକି ସେ ଲାଲମୋହନଙ୍କୁ ଖରାପ ବୋଲି ଭାବୁଥାନ୍ତି ସେତିକି ସେ ଦିବ୍ୟସିଂହବାବୁ ଭଲ ବୋଲି ତାଙ୍କୁ ବୋଧ ହେଉଥାଏ—କି ତ୍ୟାଗୀ ସେ ମହାପୁରୁଷ !!! ଦେଶର କାମ ପାଇଁ ପୁତ୍ର ସ୍ତ୍ରୀ ଓ ମା ସବୁ ହରାଇଲେ । ଦରିଦ୍ରତାର ମସ୍ତକରେ ପଦାଘାତ କରି ସେ ଚାଲେ ହେଲେ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ବିଷୟ ନ ଭାବି ପରର ସେବାରେ ଆତ୍ମହରା । ଧନ୍ୟ ସେ ପୁରୁଷ, ଧନ୍ୟ ସେ ଦେଶ, ଯେଉଁଠି ଏ ପ୍ରକାର ସେବକ ଅଛନ୍ତି ! କି ଭାବରେ ଦିବ୍ୟସିଂହ ବାବୁଙ୍କ ଗୁଣକୁ କଳନା କରିବେ ତାହା ସେ ଜାଣି ପାରି ନାହାନ୍ତି ।

ମନେ ମନେ ଭାବୁଥାନ୍ତି, ଆଉ ଅପେକ୍ଷା କାହିଁକି ? ଗଜା ଶାଳଗଛ ଝଡ଼ ତୋଫାନରେ ଭାଙ୍ଗି ପଡିଥିଲା । ପୁଣି ତାର ମୂଳରୁ ଯେଉଁ ନୂଆ ଗଜା ମୂଳଟିକି ବାହାରୁଥିଲା ସେ ଯେତେବେଳେ ମରିଯାଇଛି ସେତେବେଳେ ତାକୁ ଧରିରଖି ଲାଭ କଣ ? ଦିବ୍ୟସିଂହ ବାବୁଙ୍କଠାରେ ନିଜକୁ ସମର୍ପି ଦେଇ ତାଙ୍କ ସାଙ୍ଗରେ ଦେଶ ସେବାରେ ନିଜକୁ ଅର୍ପଣ କରି ଦେଲେ ତ ହୁଅନ୍ତା । ଏ ଚିନ୍ତା ସାଙ୍ଗ ସାଙ୍ଗ ପୁଣି ତାଙ୍କ ମନକୁ ଉଠୁଥାଏ ଓଡ଼ିଶାକୁ ଯେପରି ସେ ଛାଡ଼ି ଦେଇଥିଲେ ସେହିପରି ପୁଣି ଛାଡ଼ି ଦେଇ ହିନ୍ଦୁସ୍ଥାନୀ ହିସାବରେ ବାହାରେ ଅନ୍ୟ କେଉଁଠି ସେହି ଦେଶର କାମ କଲେ ବା କ୍ଷତି କଅଣ ? କାହିଁକି ସେ ନିଜକୁ ନିଜ ନିର୍ମିତ ଏକ ସୀମା ଭିତରକୁ ଆଣି ଆଶା ନିରାଶାର ଗଢ଼ା ଆଉ ଭଙ୍ଗା ଭିତରେ ହନ୍ତ ସନ୍ତ ହେଉଛନ୍ତି ? ମାତ୍ର ଏ ଚିନ୍ତା ବେଶୀ ଦୂର ଠେଲୁ ନଥାଏ । ତାର କାରଣ ସେ ନିଜେ ଜାଣି ପାରୁ ନଥାନ୍ତି । ମାତ୍ର ତାଙ୍କ ମନ ଯେପରି ଡାକୁଥାଏ ଏହି ଓଡ଼ିଶାରେ ସେ ନିଜ

ଜୀବନକୁ କଷ୍ଟ ହେଲେ ସେବା କାମରେ ଖଟାଇବେ । କେବେ ଓଡ଼ିଆଣୀ ବୋଲି ଭାବିଲା ମାତ୍ରକେ ତାଙ୍କ ମନ ପୂର୍ବ ଉଠୁଥାଏ । ଯାହା ସେ ହିନ୍ଦୁସ୍ଥାନୀ ବୋଲି ଭାବିବା ହ୍ୱାର ଅନୁଭବ କରି ପାରୁ ନଥାନ୍ତି । କଅଣ କରିବେ ଏହି ପଞ୍ଚାକ୍ଷର ମନ୍ତ୍ର ଜପରେ ରାତି ପାହିଗଲା । ରାତି ଘଡ଼ିଏ ଥିଲା ଦିବ୍ୟସିଂହ ବାବୁ ଅଭ୍ୟାସ ଅନୁସାରେ ବିଛଣାରୁ ଉଠିଲେ । ସେ ତାଙ୍କ ନିତ୍ୟକର୍ମ ସାରି ଆସିବା ବେଳକୁ କୁମୁଦିନୀ ମଧ୍ୟ ଉଠି ବସିଛନ୍ତି ।

ଦିବ୍ୟସିଂହବାବୁ ଜାଣି ପାରିଛନ୍ତି ଯେ ରାତିସାରା ସେ ଛଟପଟ ହେଉଥିଲେ । ତେଣୁ ସେ ବୁଝାଇ କହିଲେ "ତୁମ୍ଭେ ଶୁଣ ମୋର ଅଭ୍ୟାସ ମୁଁ ସକାଳୁ ଉଠେ । ତୁମେ ତ ରାତିସାରା ଶୋଇ ନାହଁ । ଏହି ପାହାନ୍ତିଆ ପବନରେ ଟିକିଏ ନିଦେଇ ଯାଅ ।" ଏତିକି କଥାରେ କେତେ ଯେ ସ୍ନେହର ସୂଚନା କୁମୁଦିନୀ ପାଇଲେ ସେହି ଏକା ତା' ଜାଣନ୍ତି । ତାଙ୍କର ମନେ ହେଲା ସେ ଉଠିଯାଇ ଦିବ୍ୟସିଂହ ବାବୁଙ୍କ ଗୋଡ଼ ଧରି ପଡ଼ିଯାଇ ତାଙ୍କରିଠାରେ ନିଜକୁ ସମର୍ପି ଦିଅନ୍ତେ । ମାତ୍ର ସେ ନିଜକୁ ସମ୍ଭାଳି ନେଲେ । ଲାଲମୋହନ ବାବୁଙ୍କ ସହିତ ଥରେ ସେ ସାକ୍ଷାତ କରିବେ ଓ ତାଙ୍କ ସହିତ ପରିଷ୍କାର କଥାବାର୍ତ୍ତା କରିବେ । ତା'ପରେ ଯାହା ହେବ । ଏ ଚିନ୍ତା ମନକୁ ଆସିବା ମାତ୍ରକେ ତାଙ୍କ ମନ ସେହିପରି ଶାନ୍ତ ଅନୁଭବ କଲା, ଯେପରି ଗ୍ରୀଷ୍ମକାଳ ଧୂମ ଖରାବେଳେ ଦୂର ବାଟୋଇ ଥଣ୍ଡା ପାଣି ମନ୍ଦେ ପିଇ ଅନୁଭବ କରେ । ମନ ଶାନ୍ତ ହୋଇଯିବାରୁ ନିଦ କୁଆଡ଼େ ଛକି ବସିଥିଲା, କେତେବେଳେ ଆସି ତାଙ୍କୁ ଘେରିଗଲା ତାଙ୍କୁ ଶୋଇଥିବାର ଦେଖି ସେ ଘରେ ଖଟ୍‌ଖାଟ୍ କିଛି ଶବ୍ଦ ନ ହୁଏ ସେଥିପାଇଁ ଦିବ୍ୟସିଂହ ବାବୁ ବାହାରକୁ ଚାଲିଯାଇ ସେଇଠି ତାଙ୍କର ପୂଜାପାଠ ସୂତାକଟା ଇତ୍ୟାଦି କଲେ ।

କୁମୁଦିନୀ ଉଠିଲା ବେଳକୁ ଖରା ଆସି ଯାଇଥିଲା । ତାଙ୍କୁ ବଡ଼ ସଙ୍କୋଚ ବୋଧ ହେଲା—ବିଶେଷତଃ ଯେତେବେଳେ ସେ ଦେଖିଲେ ଯେ ଦିବ୍ୟସିଂହ ବାହାରେ ଟିକିଏ ଦୂରରେ ଅନେକ ଗ୍ରାମବାସୀଙ୍କ ସହିତ କଥାବାର୍ତ୍ତା କରୁଛନ୍ତି । ତର ତର ହୋଇ ଉଠି ସଂକୋଚକୁ ଲୁଚିବା ପାଇ ସେ ଯାଇ ଦିବ୍ୟସିଂହଙ୍କୁ କହିଲେ "ଆଜି ଗାଁକୁ ଯିବେ ପରା, ଚାଲନ୍ତୁ"

ଦ୍ରବ୍ୟସିଂହ ବାବୁ ଟିକିଏ ହସି କହିଲେ, "ତୁମେ କାମ ସାର କିଛି ଟିକିଏ ଖାଅ, ଯିବା—ଏତେ ତର ତର କାହିଁକି ?"

କୁମୁଦିନୀ ଜିଦ୍ କରି କହିଲେ, "ମୁଁ ସକାଳେ କିଛି ଖାଏ ନାହିଁ । ମୋର ଆଉ କି କାମ, ମୁଁ ବର୍ତ୍ତମାନ ପ୍ରସ୍ତୁତ ।"

ଦ୍ରବ୍ୟସିଂହ ବାବୁ ହସି ଦେଇ ମୁଣ୍ଡ ହଲାଇ କହିଲେ, "ମୋର ଯିବାର ଟିକିଏ ଡେରି ଅଛି ।"

କୁମୁଦିନୀ ପରାସ୍ତ ହୋଇ ଗଲାପରି କିଛି ନ କହି ଚୁପ୍ ହୋଇ ଛିଡ଼ା ହେଲେ । ଦ୍ରବ୍ୟସିଂହ ବାବୁ ଦାନ୍ତକାଠି ପାଣି ଦେବାକୁ ଜଣକୁ ଖବର୍ କଲେ । ଏଥିରେ କୁମୁଦିନୀଙ୍କୁ ଆହୁରି ସଂକୋଚ ବୋଧ ହେଲା । ସବୁ ସଂକୋଚ ଭିତରେ ସେ ନିତ୍ୟକର୍ମ ଶେଷ କଲେ; ଦ୍ରବ୍ୟସିଂହ ବାବୁଙ୍କ ଅନୁରୋଧ ଯୋଗେ କିଛି ମଧ୍ୟ ଖାଇଲେ । ତା ପରେ ଦୁହେଁ ଗାଁ ଭିତରକୁ ଗଲେ ।

ଦୁର୍ଗନ୍ଧିଆ ମଇଳା ଗନ୍ଧ ନାକ ଭିତରେ ପଶି ଯାଉଛି । ସ୍ଥାନେ ସ୍ଥାନେ ଅଣଓସାରିଆ ବାଟ ଉପରେ ମଧ୍ୟ ମଇଳା ଆଖିରେ ପଡ଼ି ଯାଉଛି । ମାତ୍ର କୁମୁଦିନୀଙ୍କୁ ଏ ସବୁ ବଡ ଅଡୁଆ ଲାଗୁଥାଏ । ସେ ଦୁଇ ଆଡ଼କୁ ଚାହିଁ ପଛରୁ ଥାଇ ଦିବ୍ୟସିଂହ ବାବୁଙ୍କୁ କହିଲେ, "ଏହି ବାଡ଼ ଗୁଡ଼ିକରେ ଭଲ ଭଲ ଗଛ ଲଗାଇ ଥିଲେ କେଡ଼େ ସୁନ୍ଦର ଦିଶୁ ନ ଥାନ୍ତା ? ଭଲ ଫୁଲ ଫୁଟି ଥାନ୍ତା !" ଦିବ୍ୟସିଂହ ବାବୁ କିଛି ନ କହି ଗମ୍ଭୀର ଭାବରେ 'ହୁଁ' ଟିଏ ମାରିଲେ । କିଛିକ୍ଷଣ ପରେ କହିଲେ, "ଦରିଦ୍ରର ଦୋଷଗୁଣ ରାଶି ରାଶି ।" ଯାଉଁ ଯାଉଁ ବାଟରେ ଜଣକ ଘର ଦେଖା ଗଲା । ଦିବ୍ୟସିଂହ ବାବୁ କହିଲେ, "ଏଇଠିକି ଯିବା ।" ଦୁହେଁ ଯାକ ସେ ଘର ଦୁଆରେ ଯାଇ ପହଞ୍ଚିଲେ । ଘର ବୋଲି ତାକୁ କହିବା ଶବ୍ଦର ଅପବ୍ୟବହାର ମାତ୍ର । ବୋଧହୁଏ ଦୁଇବର୍ଷ ହେଲା ଛାଉଣୀ ହୋଇ ନାହିଁ । ପଛ କାନ୍ଥରେ ବର୍ଷାପାଣି ବହି, କାନ୍ଦଲା ମୁହଁରେ କଜଳ ବହିଗଲା ପରି ଦେଖାଯାଉଛି— ପିଣ୍ଡା ଠାଏ ଠାଏ ଖସି ପଡ଼ିଛି । ସେହି ପିଣ୍ଡା ଉପରେ ବସି ପଡ଼ି ପାଟିକରି ଡାକ ମାରିଲେ, "ଘରେ କିଏ ଅଛି ?" ଘର ଭିତରୁ ଆବାଜ ଆସିଲା- "ସେ ନାହାନ୍ତି, ବିଲ ଆଡ଼କୁ ଯାଇଛନ୍ତି ।" ଦିବ୍ୟସିଂହ ବାବୁ ପୁଣି ପାଟି କରି କହିଲେ, "ଆଛା, ତୁମେ ବାହାରକୁ ଆସ । ମୋ ପାଟି ବାରି ପାରୁଛ ତ ?"

କିଛି ସମୟ ପରେ ଜଣେ ସ୍ତ୍ରୀଲୋକ ମଇଳା, ଚିରା ଲୁଗା ଖଣ୍ଡେ ପିନ୍ଧି ଅତି ସଂକୋଚରେ ବାହାରକୁ ଆସି ଚାହିଁ ଦେଇ ପୁଣି ଘର ଭିତରେ

ଲୁଚିଗଲା । ଦିବ୍ୟସିଂହ ବାବୁ କୋମଳ ଭାବରେ ପଚାରିଲେ, "ଗମା କୁଆଡ଼େ ଯାଇଛନ୍ତି କି ?" ଭିତରୁ ଉତ୍ତର ଆସିଲା 'ବଲକୁ' । ଦିବ୍ୟସିଂହ ବାବୁ କହିଲେ, "ବଲରୁ କଅଣ ଆଣୁଛି ।" ଭିତରୁ ସେହିପରି ଉତ୍ତର ଆସିଲା, 'ଏଇ ଘାସପତର, ଯାହା ମିଳୁଛି ।" ଦିବ୍ୟସିଂହ ବାବୁ ଘର ଭିତରକୁ ଉଠିଲେ । ଘର ଭିତର ଛୋଟ ଅଗଣାରେ ଶୁଖା ହୋଇଥିବା କେତେକ ଘାସ ପତର ହାତରେ ଧରି ବାହାରକୁ ଆସି କୁମୁଦିନୀକୁ ଦେଖାଇଲେ । "ଏହି ଜିନିଷ ଏମାନେ ଖାଉଛନ୍ତି । ଏଇଗୁଡ଼ାକୁ ସଂଗ୍ରହ କରିବା ପାଇଁ ପୁରୁଷ ବଲକୁ ଯାଇଛନ୍ତି । ସ୍ତ୍ରୀ ଘରେ ରହି ତାକୁହିଁ ଅନାଇ ବସିଛନ୍ତି ।" କୁମୁଦିନୀ ସେ ଜିନିଷକୁ ହାତରେ ନେଇ ଭଲକରି ଦେଖିଲେ । କ'ଣ ତାହା ଜାଣି ନ ପାରି ପଚାରିଲେ, "ଏ କଅଣ ? ଏହା କି ପତ୍ର ।" ଦିବ୍ୟସିଂହ ବାବୁ ଗମ୍ଭୀର ଭାବରେ କହିଲେ, "ତାର କଅଣ ନାଆଁ ଅଛି । ଯାହା ଯେଉଁଠି ଉଠିଛି, ଶାଗୁଆ ଦେଖାଯାଉଛି, ତାକୁ ତୋଳି ଆଣି ଖାଇ ନିଜର ପେଟ ପୂରାଉଛନ୍ତି ।"

କୁମୁଦିନୀ କିଛି ସମୟ ବିସ୍ମୟରେ ସେ ଜିନିଷକୁ ଦେଖିଲେ । ତାପରେ ପଚାରିଲେ, 'ଏମାନଙ୍କର କଣ ଜମି ନାହିଁ ?' ଦିବ୍ୟସିଂହ ବାବୁ ପିଣ୍ଡାରେ ବସି କହିଲେ "ଅଛି, ପ୍ରାୟ ୪।୫ ମାଣ ହେବ । ମାତ୍ର ଗତ ଚାରିବର୍ଷ ବନ୍ୟାରେ ଏମାନେ କିଛି ପାଇ ନାହାନ୍ତି । କରିବେ କଣ ?" ଏହି ସମୟ ଭିତରେ କୁଆଁ କୁଆଁ ଶବ୍ଦ ଭିତରୁ ଶୁଭିଲା । ଦିବ୍ୟସିଂହ ବାବୁ ଅତି ପରିଚିତ ଲୋକ ଭଳି ପଚାରିଲେ, 'କିଲୋ ପିଲାଟିଏ ହୋଇଛି କି ?' ଭିତରୁ ଉତ୍ତର ଆସିଲା ଅସ୍ପଷ୍ଟ ଭାବରେ 'ହଁ' । ଦିବ୍ୟସିଂହ ବାବୁ ଘର ଭିତରକୁ ଯାଇ ପିଲାକୁ ଦେଖିଲେ । ସେତିକିରେ ସନ୍ତୁଷ୍ଟ ନ ହୋଇ କୁମୁଦିନୀଙ୍କୁ ଦେଖିବାକୁ ଡାକିଲେ । ଘରର ସ୍ତ୍ରୀଟି ଦିବ୍ୟସିଂହ ବାବୁଙ୍କୁ ଲାଜ କରୁ ନାହିଁ ; କିନ୍ତୁ କୁମୁଦିନୀଙ୍କୁ ଅପରିଚିତ ହୋଇଥିବାରୁ ଲାଜ କରୁଛି । ଦିବ୍ୟସିଂହ ବାବୁ ମୁରବି ସ୍ୱରରେ କହିଲେ, "ମୁଁ ତ ମରଦ ପୁଅ, ମୋତେ ଲାଜ କରୁନାହୁଁ, ମାଇକିନିଆଁଙ୍କୁ ଲାଜ କାହିଁକି କରୁଛୁ ?"

ଏକ ଅନ୍ଧାର କୋଠରୀ, ଗୋଟିଏ ଛୋଟ ଦରଜା ବାଟେ ବହୁ କଷ୍ଟରେ ସୂର୍ଯ୍ୟାଲୋକ କେଜାଣେ କେତେ ସ୍ଥାନରେ ପ୍ରତିଫଳିତ ହୋଇ ଶେଷରେ ସେ କୋଠରୀ ଭିତରକୁ ଟିକିଏ ଟିକିଏ ଯାଉଛି । ହଠାତ୍ ଭିତରକୁ ଚାଲିଗଲେ ଅନଭ୍ୟସ୍ତ ଆଖିକୁ ସବୁ ଅନ୍ଧାର ଦେଖାଯିବ । କେଉଁଠି ଶିଶୁଟି କାହିଁ କାହିଁ ହୋଇ କାନ୍ଦୁଛି ? ଦିବ୍ୟସିଂହ ବାବୁ ଓ କୁମୁଦିନୀ ତା ଭିତରକୁ ଗଲେ । କୁମୁଦିନୀ କିଛିକ୍ଷଣ ରହି ଆଉ ଛିଡ଼ା ହୋଇ ପାରିଲେ ନାହିଁ । କିଛି ତାଙ୍କୁ ଦେଖା ଯାଉ ନାହିଁ । ଖାଲି ଦୁର୍ଗନ୍ଧମୟ ସେ କୋଠରୀ । ସେ ବାହାରକୁ ଆସି ସ୍ତ୍ରୀଲୋକଟିକୁ କହିଲେ, 'ପିଲାକୁ ବାହାରକୁ ଆଣ ।' ଦିବ୍ୟସିଂହ ବାବୁ ମଧ୍ୟ ବାହାରକୁ ଚାଲିଆସି ପିଲାକୁ ଆଣିବାକୁ କହିଲେ । ଘର ଭିତରକୁ ଯାଇ ଅତି ମଇଳା ଛିଣ୍ଡା କନା ସମେତ ଶିଶୁଟିକୁ କୋଳରେ ଧରି ମା ବାହାରକୁ ଆସି ଛିଡ଼ା ହେଲା । ମା କୋଡରେ ଅତି ଉତ୍ତ୍ୟକ୍ତ ହୋଇ ପିଲାଟି କାନ୍ଦୁଛି ।

କୁମୁଦିନୀ ପଚାରିଲେ, 'ଏହାକୁ କଣ ଖାଇବାକୁ ଦିଆଯାଏ ।' ଦିବ୍ୟସିଂହ ବାବୁ ମଧ୍ୟ ସେହି ଶିଶୁର ମୁଣ୍ଡ ଉପରେ ହାତ ଥୋଇ ମୁହଁ ଟିକିଏ ପୋଛି ଦେଇ ମାଆକୁ ପ୍ରଶ୍ନ ପଚାରିଲେ । ସେ ଧୀରେ ଧୀରେ କହିଲା, "ଗଣ୍ଡିଏ ଚାଉଳ ଆଠ ଦିନ ହେଲା ମାଗି ଆଣିଥିଲି, ତାକୁ ଫୁଟାଇ ପାଣି ଟିକିଏ ଟିକିଏ ଦେଉଛି ।"

କୁମୁଦିନୀ ଲକ୍ଷ୍ୟ କରି ଦେଖିଲେ ଯେ, ମାଆର ସ୍ତନ ଅତି ଶୁଷ୍କ । ତେଣୁ ଶିଶୁଟି ସେଥିରୁ କମ୍ କ୍ଷୀର ପାଉଥିବ । ଅତି ଦୁଃଖରେ ଦୀର୍ଘ ନିଃଶ୍ୱାସଟିଏ ପକାଇଲେ । ସେ ଦୃଶ୍ୟ ସହ୍ୟ କରି ପାରିଲେ ନାହିଁ । ବାହାରକୁ ଚାଲି ଆସିଲେ । ଦିବ୍ୟସିଂହବାବୁ ସେହି ସ୍ତ୍ରୀଲୋକକୁ ଗୋଟିଏ ଟଙ୍କା ଦେଇ କହିଲେ, 'ରାମା ଆସିଲେ କହିବୁ ମୁଁ ଆସିଥିଲି, ଏଥିରେ ଏ ପିଲାକୁ ଖୁଆଇବୁ, ବୁଝିଲୁ ?' ସେ ସ୍ତ୍ରୀଲୋକଟି ଟଙ୍କାଟି ଚାହିଁ ଧୀରେ ଧୀରେ ପଚାରିଲା, "ପୁଣି କେବେ ଆସିବ ?"—"ଠିକଣା ନାହିଁ, ପୁଣି ଆସିଲେ କହି ଦେବ ।"

ବାହାରକୁ ଚାଲି ଆସି କୁମୁଦିନୀ ସେଠୁ ଚାଲିଯିବାକୁ ବ୍ୟଗ୍ର ଭାବ ପ୍ରକାଶ କଲେ । ଦିବ୍ୟସିଂହବାବୁ ମଧ୍ୟ ଆସିଲେ । ବାଟରେ କୁମୁଦିନୀ ଚିନ୍ତାକୁଳ ହୋଇ ପଚାରିଲେ "ଏତେ ଗରିବ, ଏଥିରେ ବବାହ ହୁଅନ୍ତି କାହିଁକି ? ସନ୍ତାନ ଜନ୍ମ କରି ଦରିଦ୍ରତାକୁ ପ୍ରଶ୍ରୟ ଦିଅନ୍ତି ବା କାହିଁକି ?"

ଦିବ୍ୟସିଂହବାବୁ ଟିକିଏ ହସି କହିଲେ, "ସେ ହେଉଛି ଦେଶର ଆଉ ଏକ ସମସ୍ୟା ।"

ଟିକିଏ ଆଗକୁ ଯାଇ ଆଉ ଗୋଟିଏ ଘର ଭେଟିଲେ । ସେ ଘରଟି ଅପେକ୍ଷାକୃତ ଭଲ ଦେଖାଯାଉଛି । ବାହାର ପିଣ୍ଡାରେ ଘରର ମାଲିକ ବସିଛନ୍ତି । ଦିବ୍ୟସିଂହବାବୁ ଦୂରରୁ 'ମହାପାତ୍ରେ, ନମସ୍କାର', ବୋଲି କହି ସେ ଦୁଆରକୁ ଗଲେ । କୁମୁଦିନୀ ମଧ୍ୟ ସାଙ୍ଗରେ ଗଲେ । ଏମାନଙ୍କୁ ବସିବା ପାଇଁ କହିବା କର୍ତ୍ତବ୍ୟ ବୋଲି ମହାପାତ୍ରଙ୍କୁ ଜଣା ନାହିଁ । ସେ ଥରେ ଦୁଇଥର କୁମୁଦିନୀଙ୍କ ମୁହଁକୁ ଚାହିଁ ଦେଇ ଦିବ୍ୟସିଂହବାବୁଙ୍କୁ ପଚାରିଲେ, "ଆପଣ କେବେ ଆସିଥିଲେ ?" ଦିବ୍ୟସିଂହବାବୁ ଅପେ ଅପେ ପିଣ୍ଡାରେ ବସି କହିଲେ, "ବାଃ, ଆପଣ ତ ଖୁବ୍ ଆମ ଖବର ବୁଝୁଛନ୍ତି । ଆମେ କାଲିଠାରୁ ଆସି ଆପଣଙ୍କ ଗ୍ରାମରେ ଅଛୁ ପରା !" ମହାପାତ୍ରେ ହସି ହସି କହିଲେ, "ଏଥର କିଛି ଚାଉଳ ବଣ୍ଟା ହେବ, ନା କଅଣ ?" ଦିବ୍ୟସିଂହ ବାବୁ ମୁଣ୍ଡ ହଲାଇ କହିଲେ, "କିପରି ହେବ ? ବଡ ଲୋକେ ଦାନ କଲେ ସିନା ହେବ ।" ମହାପାତ୍ରେ ମୁହଁ ଶୁଖାଇ କହିଲେ, "କିଛି ନ ଦେଲେ ତ ଏ ଲୋକେ ମରିଯିବେ । ଏବର୍ଷ ଧାନ ଆଦୌ ମିଳିଲା ନାହିଁ ।"

ଦିବ୍ୟସିଂହବାବୁ ପଚାରିଲେ, "ଆପଣଙ୍କ ଧାନ ସବୁ ଅସୁଲ ହୋଇ-ଯାଇଛି ତ ?"

ମହାପାତ୍ରେ ଦୁଃଖରେ କହିଲେ, "ହଁ, ସବୁ ହୋଇଛି କାହିଁ ?" ଦିବ୍ୟସିଂହବାବୁ କୁମୁଦିନୀଙ୍କ ଆଡକୁ ଚାହିଁ ଦେଇ ତାଙ୍କ ପରବର୍ତ୍ତୀ ପ୍ରଶ୍ନ ଓ ଉତ୍ତରକୁ ମନ ଦେଇ ଶୁଣିବାକୁ ଇଙ୍ଗିତ କଲେ ।

ଦବ୍ୟସିଂହ ବାବୁ—"ରମା ତାର ଯେତକ ଦେଣା ସବୁ ଦେଇ ଦେଇଛି ତ ?"

ରମା ନା ଶୁଣି ମହାପାତ୍ରେ ଟିକେ ଉଠି ବରକ୍ଷ ସ୍ୱରରେ କହିଲେ, "ସେଇଠା ଦୁଆଳିଆ, ଏଥରକ ଯାହା ଧାନ ଥିଲା ତାକୁ ଗିଣ୍ଡାବାଡ ଆଣି ନିଗୃହି ଖାଇ ଦେଲା । ଏଣେ ମୋ ଧାନ ବାକି ପଡ଼ିଛି । ମୁଁ ଯେତେ ବୁଝାଉଛି, ଯାହା କିଛି ଧୀରେ ଧୀରେ ମୋତେ ଦିଅ, ତୁମ ଘରେ ଥିଲେ ତୁମେ ଖାଇ ଦେବ, ମୋ ଘରେ ଥିଲେ ତ କାମେ ଆସିବ ।"

ଦବ୍ୟସିଂହବାବୁ ଖୁବ୍ ଜୋରରେ ଅନେକ ବେଳଯାଏ ହସିଲେ । ହସ ଯୋଗେ ସେ କହିବାକୁ ଯାଇ କହିପାରୁ ନ ଥାନ୍ତି । ତାପରେ ସେ ମହାପାତ୍ରଙ୍କୁ କହିଲେ, "ଆପଣଙ୍କ ଘରେ ଥିଲେ କାମେ ଆସିବ ଅର୍ଥାତ୍ ଉପାସେ ରହିଲେ ସେମାନେ ନେଇ ଖାଇବେ, ବଳରୁ ଆଣି ତ ସେଇଯା କଲେ—ଆପଣ କଅଣ କହୁଛନ୍ତି, ମହାପାତ୍ରେ ?"

ମହାପାତ୍ରେ ଟିକିଏ ଅପଦସ୍ତ ହୋଇ ଗଳ୍ପପର ହୋଇଗଲେ—ତାପରେ ଗମ୍ଭୀର ହୋଇଯାଇ କହିଲେ, "କେବେ ଯିବେ ?" ଦବ୍ୟସିଂହ ବାବୁ କହିଲେ, "ମୁଁ ଅତି ଶୀଘ୍ର ଯିବି, ମୋ ସାଙ୍ଗରେ ଏ ଭଦ୍ର ମହିଳା ଅଛନ୍ତି, ତେଣୁ ଶୀଘ୍ର ଯିବି ।"

ତାପରେ ମହାପାତ୍ରେ ନମସ୍କାର କରି ତାଙ୍କୁ ବିଦାୟ ନେବାପାଇଁ ଇଙ୍ଗିତ କଲେ । ଦବ୍ୟସିଂହବାବୁ ଓ କୁମୁଦିନୀ ଚାଲି ଆସିଲେ । ବାଟରେ ଦବ୍ୟସିଂହବାବୁ କହିଲେ, "ଏ ହେଉଛି ଏ ଗାଁ ମହାଜନ । କିଛି ବେଶୀ ରଖିଛି ତାହା ନୁହେଁ; ମାତ୍ର ନ ଥିଲା ସ୍ଥଳେ ଜଣେ ବଡ଼ ଲୋକ ବୋଲାଉଛି ।" କୁମୁଦିନୀ ଗମ୍ଭୀର ଭାବେ କହିଲେ, "ଲୋକଟା ବଡ଼ ଅତ୍ୟାଚାରୀ । ସେ ରମାଠୁଁ ମଧ୍ୟ ଧାନ ନେବାକୁ ବସିଥିଲା ?"

ଦବ୍ୟସିଂହବାବୁ ଗମ୍ଭୀର ଭାବରେ କହିଲେ, "ପ୍ରଥମ ନଜରରେ ତାଙ୍କୁ ଅତ୍ୟାଚାରୀ କୁହାଯାଇ ପାରେ; ମାତ୍ର ଏ ଯେ ଦରିଦ୍ରତାର ଧ୍ୱଂସଲୀଳା

ବୃଲିଛନ୍ତି ସେଥିରେ ସମସ୍ତେ ତ କାମୁଡ଼ା ହୋଇ ପ୍ରତ୍ୟେକଙ୍କୁ ଖାଇଯିବାକୁ ବସିଛନ୍ତି ।

—"ମୁଁ ଜାଣେ ମହାପାତ୍ରଙ୍କ ଅବସ୍ଥା, ତାଙ୍କର ବାର୍ଦ୍ଧକ ଚଢ଼ୁଛି, କାରଣ ସେ ଅତ୍ୟାଚାରୀ ବୋଲି । ସେ ଅତ୍ୟାଚାର ବନ୍ଦ କଲେ ସେ ମଧ୍ୟ ଉପାସେ ରହିଯିବେ । ଏ ସବୁର ସମୂହ ପ୍ରତିକାର ନ ହେଲେ ରକ୍ଷାନାହିଁ ।" ନାନା ପ୍ରଶ୍ନ କୁମୁଦିନୀଙ୍କ ମନକୁ ଉଠୁଥିଲା । କିନ୍ତୁ ସେ ଅନ୍ୟ ଚିନ୍ତାରେ ମଗ୍ନ ଥିବାରୁ କିଛି କହିଲେ ନାହିଁ । ତାହା ପରେ ଆହୁରି ଅନେକଙ୍କ ଘରକୁ ଯାଇ, କାହାକୁ ୫ଟଙ୍କାଏ, କାହାକୁ ଦୁଇଟଙ୍କା, କାହାକୁ ବା ଆଠଅଣା, ଏହିପରି ବିତରଣ କରି ପୂର୍ବରୁ ସଂଗୃହୀତ ହୋଇଥିବା ୫୨୫ଙ୍କା ଯାକ ଖର୍ଚ୍ଚ କରିଦେଇ ଦିବ୍ୟସିଂହବାବୁ ଫେରିଲେ । କୁମୁଦିନୀ ବିସ୍ମିତ ହୋଇଗଲେ ଯେ, ଦିବ୍ୟସିଂହବାବୁ ଓ ଲଲମୋହନ ବାବୁଙ୍କ ପରି ଲୋକ ବାଜାଯାଏ ବୁଲି ମୋଟେ ୫ ୨୫୯ ମାତ୍ର ଅନାହାରୀଙ୍କ ସାହାଯ୍ୟ ସକାଶେ ସଂଗ୍ରହ କରି ପାରିଲେ । ସେ ଏ ବିଷୟରେ ଦିବ୍ୟସିଂହ ବାବୁଙ୍କୁ ପଚାରିଲେ । ଦିବ୍ୟସିଂହ ବାବୁ ଦୁଃଖରେ କହିଲେ, "ସେହିତ ଦେଶର ଅବସ୍ଥା ।" କୁମୁଦିନୀ ଚିନ୍ତିତ ହୋଇ ପଚାରିଲେ, "ଏ ଦୁର୍ଭିକ୍ଷ ପାଇଁ କଣ ପ୍ରତିକାର ହେବ ?" ଦିବ୍ୟସିଂହ ବାବୁ ପ୍ରସନ୍ନ ଭାବରେ କହିଲେ, "ଯେତିକି ମୋହାରା ସମ୍ଭବ ମୁଁ ସେତିକି କରୁଛି । କରିବ କଣ ? ଗୃହଆଡେ ବଡ଼ ବଡ଼ ସମସ୍ୟାମାନ ଓ ସେ ସବୁ ମଧ୍ୟର ସହିତ ଏପରି ଛନ୍ଦାଛନ୍ଦି ଯେ, ସେଥିରୁ ଉଧୁରିବା ବାଟ ହେଉଛି, ଯେ ଯେତିକି ପାରୁଛି ସେ ସେତିକି ତାର ରୁଚିଅନୁସାରେ କରୁଥାଉ । ଅନ୍ୟଥା ଲୋକ ପାଗଳ ହୋଇଯିବ ।"

କୁମୁଦିନୀ କିଛି ସମୟ ନୀରବ ରହି ଧୀରେ ଧୀରେ କହିଲେ, "ସେ ଶିଶୁଟି ମା କୋଳରେ ଥାଇ କୁଆଁ କୁଆଁ ହୋଇ କାନ୍ଦୁଥିଲା । ତା ବର୍ତ୍ତମାନ ସୁଦ୍ଧା ମୋ ଆଖି ଆଗରେ ନାଚୁଛି । ମାଆର ଆଖି ସନ୍ତାନ ଉପରେ ପଡ଼ି ଛଳ ଛଳ ହୋଇ ଯାଉଥାଏ । ଦାରିଦ୍ର୍ୟର ଜ୍ୱାଳାରେ କେତେବେଳେ ହୁଏତ ଭୋକୁଥିବା ପିଲାଟି ମରି ଯାଆନ୍ତା କି ?" ଏତିକି କହୁ କହୁ

କୁମୁଦିନୀଙ୍କ ଆଖି ଛଳ ଛଳ ହୋଇ ଆସିଲା । ଦିବ୍ୟସିଂହବାବୁ ସେ କଥାରୁ ଭୁଲେଇ ଦେବା ପାଇଁ ଚେଷ୍ଟାକଲେ; ମାତ୍ର ପାରିଲେ ନାହିଁ । କୁମୁଦିନୀ ନିଜକୁ ଯେତେ ସଂଯତ କଲେ ମଧ୍ୟ ଲୁହ ତାଙ୍କୁ ମାନିଲା ନାହିଁ । ଶେଷରେ ସେ ଆଖି ପୋଛିଦେଇ ନିଜପାଖରେ ଥିବା ପାଞ୍ଚଟି ଟଙ୍କା ଦିବ୍ୟସିଂହ ବାବୁଙ୍କୁ ଦେଇ କହିଲେ, "ଏହାକୁ ସେହି ଶିଶୁ ଓ ତା ମାଆର ପୋଷଣ ପାଇ ଦିଅନ୍ତୁ ।" ଦିବ୍ୟସିଂହ ବାବୁ ଟଙ୍କାଯାକ ନେଇ ଅତି ଖୁସିହୋଇ ସାଙ୍ଗେ ସାଙ୍ଗେ ଧାମାକୁ ଡକାଇ ସେ ଟଙ୍କା ଦେଇଦେଲେ ।

ଭାବପ୍ରବଣ କୁମୁଦିନୀକୁ ନେଇ ବେଣୀବନ ଗାଁରେ ରହିବା ଦିବ୍ୟସିଂହ ବାବୁଙ୍କୁ ଅଡୁଆ ଲାଗିଲା । ତେଣୁ ତାଙ୍କ କାମ ଶୀଘ୍ର ଶେଷକରି ସେ ତହିଁ ଆରଦିନ ସେଠାରୁ ବାହାରିଲେ ।

ଯିବାବେଳକୁ ଯେପରି, ଆସିଲା ବେଳକୁ ସେହିପରି ବାଟସାରା କିଛିଦୂର ଚାଲି, ପୁଣି କିଛିକ୍ଷଣ ବସି କୌଣସି ପ୍ରକାରେ କୁମୁଦିନୀ ଦିବ୍ୟସିଂହ ବାବୁଙ୍କ ସହିତ ଆସି ସାକ୍ଷୀଗୋପାଳରେ ପହଞ୍ଚିଲେ । ପୁରୀ ଆଡ଼କୁ ଗାଡ଼ି ଯିବାବେଳ ଥାଏ । ମାତ୍ର ପୁରୀରୁ ଯେ ଗାଡ଼ି ଆସେ, ସେ ବାହାରି ଯାଇଛି । ଦିବ୍ୟସିଂହ ବାବୁ ତରତରରେ କୁମୁଦିନୀକୁ କହିଲେ, "ଏଠି କିଛି ଖାଇଦିଅ, ଏହି ଗାଡ଼ିରେ ଚାଲିଯିବ ।"

କୁମୁଦିନୀ ବିମର୍ଷ ହୋଇ ପଚାରିଲେ, "ଆପଣ ?"

ଦିବ୍ୟସିଂହ ବାବୁ କହିଲେ, "ମୁଁ ତ ଉଦ୍ରଖ ଫେରିଯିବି, ଆଶ୍ରମକୁ ।"

କୁମୁଦିନୀ ଟିକିଏ ଚମକି ପଡ଼ିଲା ପରି ହେଲେ । କିଛିକ୍ଷଣ ଚୁପ୍ ରହି କହିଲେ, "ଆପଣଙ୍କ ଯିବା ପର୍ଯ୍ୟନ୍ତ ମୁଁ ଆପଣଙ୍କ ସାଙ୍ଗରେ ରହିବି ।"

ଆଉ କିଛି ନ କହି ଦିବ୍ୟସିଂହ ବାବୁ ଧର୍ମଶାଳାକୁ ଗଲେ । ଗୋଟିଏ କୋଠରୀରେ ଲୁଗାପଟା ରଖିଦେଇ କୁମୁଦିନୀକୁ ବିଶ୍ରାମ କରିବାକୁ କହି ଦିବ୍ୟସିଂହ ବାବୁ ବାହାରକୁ ଚାଲିଗଲେ । ଇତିମଧ୍ୟରେ ପଣ୍ଡା ଜଣେ ଆସି କୁମୁଦିନୀଙ୍କ ବେଶଭୂଷାରୁ ତାଙ୍କୁ ହିନ୍ଦୁସ୍ଥାନୀ ଭଦ୍ର ଯାତ୍ରୀ ଲେଖିରେ ତାଙ୍କୁ ପ୍ରଶ୍ନ ଉପରେ ପ୍ରଶ୍ନ କରିବାକୁ ଲାଗିଲା । କୁମୁଦିନୀ ହିନ୍ଦିରେ ତା ସହିତ ଅତି କୌତୁକରେ କଥାବାର୍ତ୍ତା କରୁଥାଆନ୍ତି । ମଝିରେ ପଣ୍ଡା ପଚାରିଲା, "ତୁମେ ଏକା ଆସିଛ, ନା ତୁମ ସ୍ୱାମୀ ସଙ୍ଗରେ ଅଛନ୍ତି ।"

କୁମୁଦିନୀ ପରିହାସରେ କହିଲେ, "ମୋ ସ୍ୱାମୀ ସଙ୍ଗରେ ଅଛନ୍ତି ।"

ତା ପରେ ପଣ୍ଡା ସାକ୍ଷୀଗୋପାଳଙ୍କ ମାହାତ୍ମ୍ୟ ବର୍ଣ୍ଣନା କରି କୁମୁଦିନୀଙ୍କୁ ପୁତ୍ରଲାଭର ପ୍ରଲୋଭନ ଦେଖାଇବାରେ ଲାଗିଲା ।

କୁମୁଦିନୀ ସବୁ ଶୁଣୁ ଥାଆନ୍ତି । ଅବଶ୍ୟ ଅର୍ଥଲୋଭରେ ପଣ୍ଡା ପୁତ୍ର ପ୍ରାପ୍ତିର ଶୁଭେଚ୍ଛା ଜ୍ଞାପନ କରିଥିଲା । କୁମୁଦିନୀ ମଧ୍ୟ ପରିହାସରେ ଏତେବେଳ ପର୍ଯ୍ୟନ୍ତ ସବୁ କଥାବାର୍ତ୍ତା ଚଳାଇଥିଲେ । ମାତ୍ର ସନ୍ତାନଙ୍କ ଜନନୀ ହେବାର ଆଶୀର୍ବାଦ ତାଙ୍କୁ ବଡ଼ ବିଚଳିତ କରିଦେଲା । ହଠାତ୍ ତାଙ୍କ ମୁହଁ ଗମ୍ଭୀର ହୋଇଗଲା—ଆଖି ଛନ୍ତାକୁଳ ହୋଇଗଲା । ଚତୁର ପଣ୍ଡା ମଧ୍ୟ ତାଙ୍କ ମୁହଁରୁ କଣ ବୁଝି ସେହିକଥାକୁ ବାରମ୍ବାର କହିବାରେ ଲାଗିଲା । କୁମୁଦିନୀ ନୀରବ ହୋଇ ଶୁଣି ଶୁଣି ଶେଷରେ ଲୁଗାକାନି ଦେଇ ମୁହଁକୁ କୋଳରେ ଜାକି ଦେଲେ । ଅଜଣା ଭାବରେ କେତେ ବିନ୍ଦୁ ଅଶ୍ରୁ ମଧ୍ୟ ବୋହି ପଡ଼ିଲା । ଇତିମଧ୍ୟରେ ଦିବ୍ୟସିଂହବାବୁ ଆସି ଏ ଦୃଶ୍ୟ ଦେଖି ବିରକ୍ତ ହେବାରୁ ପଣ୍ଡା ବୁଝିଲା ଯେ, ଏମାନେ ଯାତ୍ରୀ ନୁହାନ୍ତି । ସେ ଚାଲିଗଲା ।

କୁମୁଦିନୀ ଅନାଇବା ମାତ୍ରକେ ଦିବ୍ୟସିଂହ ବାବୁ ତାଙ୍କର ଆରକ୍ତ ଆଖିରୁ ଜାଣି ପାରିଲେ ଯେ, ନିର୍ଗତ ଅଶ୍ରୁ ତାର ଚିହ୍ନ ରଖିଦେଇ ଯାଇଛି । ସେ ବ୍ୟସ୍ତହୋଇ ପଚାରିଲେ, "କଣ ? ପଣ୍ଡା ସଙ୍ଗରେ କଥା ହେଲା କି ? ଏମାନେ ଏତେ ମୂର୍ଖ ଯାହାକୁ ପାରୁ ତାକୁ ଅତି ବ୍ୟସ୍ତ କରି ପକାନ୍ତି ।" କୁମୁଦିନୀ ନିଜ ଓଠ ଉପରେ ବଳକାର ଈଷତ୍ ହାସ୍ୟର ଏକ ରେଖା ଟାଣି କହିଲେ, "ନା କିଛି ନୁହେ । ପଣ୍ଡା ପଚାରିଲା, "ତୁମେ ଏକା ଆସିଛ, ନା ତୁମ ସ୍ୱାମୀ ସଙ୍ଗରେ ଅଛନ୍ତି ।" ମୁଁ କହିଲି, "ମୋ ସ୍ୱାମୀ ମୋ ସଙ୍ଗରେ ଅଛନ୍ତି ।" ଏହା କହି ହସିଲେ,—ଯେପରି କି ପଣ୍ଡାଙ୍କ ସହିତ ପରିହାସରେ ସେ ଜିଣିଛନ୍ତି । ଦିବ୍ୟସିଂହବାବୁ ଠିକ ଏ ମୁରୁକି ହସା ଦେଇ ଗୋଡ଼ ହାତ ଧୋଇଲେ ।

ଖାଇପିଇ ସାରି ସନ୍ଧ୍ୟା ବେଳେ ଦିବ୍ୟସିଂହ ବାବୁ ବସି ସୂତା କାଟୁଛନ୍ତି—କୁମୁଦିନୀ ଆସି ପାଖରେ ବସିଲେ । କିଛିକ୍ଷଣ ନୀରବ ରହି ତାପରେ ଧୀରେ ଧୀରେ କହିଲେ, "ଆପଣଙ୍କୁ ଛାଡ଼ିଯିବାପାଇଁ ମୋର କାହିଁକି ମନ ହେଉ ନାହିଁ । ଆପଣ ପୁରୀ ଚାଲନ୍ତୁ, କିଛିଦିନ ସେଠାରେ ରହି ପୁଣି ଆଶ୍ରମକୁ ଯିବା ।"

ଦିବ୍ୟସିଂହବାବୁ ହସି ହସି କହିଲେ, "ନା, ମୁଁ ଅନେକ ଦିନୁଁ ଆଶ୍ରମରୁ ଆସିଲିଣି—ଆଜି ଫେରି ଯିବି । ତୁମେ ଚାଲ ଆମ ଆଶ୍ରମ ଦେଖି ଆସିବ । ଅବଶ୍ୟ ସେଠି ଦେଖିବା ଜିନିଷ କିଛି ନାହିଁ । ଆମେ କେତେ ଜଣ କର୍ମୀ ଏକାଠି ରହୁ । ଦେଶର ସବୁତ ଯାଇଛି, ରହିଛି କେବଳ ସେହି ସନ୍ନ୍ୟାସର ଭୂତ; କର୍ପୂର ଉଡ଼ିଯାଇ କନା ରହିବା ଭଳି । ତେଣୁ ଆମେ ଯେଉଁଠି ରହୁ, ତାହାକୁ ଆଶ୍ରମ କୁହାଯାଏ । ତେବେ କାମ କରିବାର ବାୟୁମଣ୍ଡଳ ସେଠି ଅଛି ।"

କୁମୁଦିନୀ ପଚାରିଲେ, "ଆଶ୍ରମ କେଉଁଠି ?"

"—ଭଦ୍ରଖ ଷ୍ଟେସନଠାରୁ ପାଞ୍ଚମାଇଲ ଦୂରରେ ।"

କୁମୁଦିନୀଙ୍କୁ ଠିକ ଏ ଗାତ୍ରକମ୍ପ ହେଲାପରି ହେଲା । ଭଦ୍ରଖ ନା ଶୁଣି ସେ ଯେପରି ଚମକି ଉଠିଲେ । ସେ କିଛି ନ କହି ବୁଡ଼ାକଣ୍ଠା ଆଡ଼କୁ ଅନାଇ କଣ ଭାବୁ ଥାଆନ୍ତି ।

ଦିବ୍ୟସିଂହବାବୁ କିଛି ସମୟ ଅପେକ୍ଷା କରି ପୁଣି କହିଲେ, 'ଯିବ ଆଶ୍ରମକୁ ?' କୁମୁଦିନୀ ମୁହଁ ତଳକୁ କରିଦେଲେ । କିଛି ସମୟ ପରେ ଦିବ୍ୟସିଂହ ବାବୁ ଜାଣିଲେ ଯେ କୁମୁଦିନୀଙ୍କ ଆଖିରୁ ଲୁହ ବହୁଛି । ସେ ବ୍ୟସ୍ତ ହୋଇ କହିଲେ, "କଣ ମନେ ପଡୁଛି ? ଏତେ ଭାବପ୍ରବଣ ତୁମେ ? କଥା କଣ କିଛି ତ କହୁନାହଁ ?" କୁମୁଦିନୀ ଆଖି ପୋଛି ଦେଇ ନିଜକୁ ସଂଯତ କରି ଯେପରି ତାଙ୍କର କିଛି ହୋଇ ନାହିଁ ଏହିପରି ଭାବ ଦେଖାଇ କହିଲେ, "ସେ ଆଶ୍ରମ ଚଳେ କିପରି ?"

ଦିବ୍ୟସିଂହବାବୁ ଧୀର ସ୍ୱରରେ କହିଲେ, "ମହାତ୍ମା ଗାନ୍ଧିଙ୍କ ତପସ୍ୟା ଫଳରେ ଏ ଦେଶରେ ଅନେକ ଲୋକ ବାହାରିଛନ୍ତି, ଯେଉଁମାନେ ନିଜର ଅର୍ଥୋପାର୍ଜନକୁ ସାଧାରଣଙ୍କ ସେବାରେ ଖର୍ଚ୍ଚ କରିବା ପାଇଁ ଉତ୍ସାହୀ ହୋଇଛନ୍ତି । ଅବଶ୍ୟ ସେମାନଙ୍କ ସଂଖ୍ୟା ବେଶୀ ନୁହେଁ । ମାନ-ସାଧାରଣ କାମ କରିବାକୁ ହେଲେ ଉପାସେ ରହିବାକୁ ହେବ ନାହିଁ ।

ଜଣେ ଧନୀ ଲୋକ ନିଜର ଜୀବନର ଶେଷରେ ତାଙ୍କର ସମସ୍ତ ଧନ, ଦରିଦ୍ରଙ୍କୁ ଯେ ସେବା କରିବେ ସେମାନଙ୍କ ଭରଣ ପୋଷଣ ପାଇଁ ଗାନ୍ଧିଜୀଙ୍କ ହାତରେ ଦେଇଥିଲେ। ସେହି ଧନରୁ ସେ ଆଶ୍ରମ ଚଳେ। ଅର୍ଥାତ୍ ଆମ୍ଭେମାନେ ସେଥିରୁ କିଛି କିଛି ପାରିଶ୍ରମିକ ପାଉଥାଉଁ।

କୁମୁଦିନୀଙ୍କ ମନ ଟିକିଏ ଭଲ ହୋଇ ଆସିଲାଣି। ସେ ଉତ୍ସୁକ ହୋଇ ପଚାରିଲେ, "ସେଠି କି କି ନିୟମ ପାଳିତ ହୁଏ ?"

ଦିବ୍ୟସିଂହ ବାବୁ—"କୌଣସି ବିଶେଷ ନିୟମ ସେଠି ନାହିଁ। କେବଳ ସମୁଦାୟ ଶକ୍ତି ଦରିଦ୍ରଙ୍କ ସେବାରେ ଦେବାକୁ ହେବ।

କୁମୁଦିନୀ—"ନା, ମୁଁ ପଚାରୁଥିଲି ଗାନ୍ଧିଜୀଙ୍କର ଯେ କେତୋଟି ବ୍ରତ ଅଛି, ବ୍ରହ୍ମଚର୍ଯ୍ୟ ପ୍ରଭୃତି, ସେ ସବୁ ନିୟମ ସେଠି ଅଛି କି ନାହିଁ।

ଦିବ୍ୟସିଂହବାବୁ—"ଗାନ୍ଧିଜୀଙ୍କ ଏପରି କୌଣସି ବ୍ରତ ନାହିଁ ଯାହା ଜଣକୁ ଅନ୍ୟମାନଙ୍କ ଠାରୁ ଅଲଗା କରିଦେବ। ସେହିତ ତାଙ୍କର ମହାତ୍ମ୍ୟ। ବ୍ରତଗୁଡ଼ିକରେ ସହନଶୀଳତା ଏତେ ପରିମାଣରେ ଅଛି ଯେ, ତଦ୍ୱାରା ସେ ବ୍ରତର ମହାତ୍ମ୍ୟ ବଢ଼ୁଛି। ଆଉ ମଧ୍ୟ ନୂଆ ଗୋଟାଏ ସମ୍ପ୍ରଦାୟ ସୃଷ୍ଟି ହେଉନାହିଁ। ବ୍ରହ୍ମଚର୍ଯ୍ୟ ଆଦର୍ଶ ରହିଛି; ମାତ୍ର ସେ ଆଦର୍ଶକୁ ଯେ ପହଞ୍ଚି ନ ପାରିଛି ସେ ଘୃଣ୍ୟ ହେଉନାହିଁ। ତେଣୁ ବିବାହର ମଧ୍ୟ ସ୍ଥାନ ସେଥିରେ ଅଛି। କିନ୍ତୁ ସେ ଆଦର୍ଶ ଥିବାରୁ ଉଦ୍ଦାମ ବିବାହିତ ଜୀବନର ଅବକାଶ ସେଠି ରହୁନାହିଁ। ଆଦର୍ଶକୁ ମାନି ତେଣିକି ନିଜକୁ ମିଥ୍ୟାଗୃହୀ ନ କରି ଯେତିକି ସମ୍ଭବ ସେତିକି ସେ ଆଦର୍ଶ ଦିଗରେ ଅଗ୍ରସର ହେବା ପ୍ରକୃଷ୍ଟ ପନ୍ଥା। ଏହାହିଁ ଗାନ୍ଧିଜୀଙ୍କର ଦୁନିଆକୁ ନୂତନ ଦାନ। ନୂଆ ଆଦର୍ଶ ସେ ଜଗତକୁ ଯୋଗାଇ ନାହାନ୍ତି; ମାତ୍ର ଆଦର୍ଶକୁ କାମରେ ପରିଣତ କରିବାର ସୀମା ସେ ଦେଖାଇ ଦେଇଛନ୍ତି। ତେଣୁ ସେ ସବୁ ଆଦର୍ଶ ବର୍ତ୍ତମାନ ଯେ କୌଣସି ଲୋକର ଦୈନନ୍ଦିନ ଜୀବନରେ ଯେତେଦୂର ସମ୍ଭବ ପରିପାଳିତ ହୋଇପାରେ, ସେଥିପାଇଁ ସଂସାର ତ୍ୟାଗୀ ହେବାର ଓ

ଅମ୍ବାର ତ୍ୟାଗୀ ହେଲେ ମଧ୍ୟ ଶେଷରେ ବୌଦ୍ଧମାନଙ୍କର ଯେ ଦଶା ହେଲା ସେପରି ମିଥ୍ୟାଗୃହୀ ହେବାର ଆବଶ୍ୟକତା ସେଥିରେ ଆଦୌ ନାହିଁ ।"

କୁମୁଦିନୀ ମନ ଦେଇ ଶୁଣି ଏହାକୁ ବୁଝିବାକୁ ଚେଷ୍ଟା କରୁଥିଲେ । ସେ ଗମ୍ଭୀର ଭାବରେ ପଚାରିଲେ ଯେ, "ସେ ଆଶ୍ରମରେ କେହ ବିବାହିତ ଅଛନ୍ତି ? କେହି ସେଠାରେ ରହି ପରେ ବିବାହ କରିପାରେ ?

ଦବ୍ୟର୍ଷି ହରିବାବୁ ଦୃଢ଼ ଭାବରେ କହିଲେ, "ନିଶ୍ଚୟ, ଆମର ସେଠି ତ ସମସ୍ତେ ବିବାହିତ । ମୋ ଛଡ଼ା ଅନ୍ୟମାନଙ୍କ ସ୍ତ୍ରୀ ବାଳକ ଅଛନ୍ତି । ତା ଛଡ଼ା ଜଣେ ସେଠାରେ ରହି ବିବାହ ମଧ୍ୟ କରିପାରେ । ମାତ୍ର ସେଠି ରହି ଦାମ୍ପତ୍ୟ ଜୀବନକୁ ପ୍ରଧାନ ବୋଲି ମନେ କରିବାକୁ ହେବ ନାହିଁ । ସେଥିରେ ମାତି ଯିବାକୁ ମଧ୍ୟ ସୁବିଧା ନାହିଁ । ଏ ସବୁ ଆନ୍ତରିକତା ଉପରେ ନିର୍ଭର କରେ । ମିଥ୍ୟାଗୃହକୁ ଦୂରରେ ରଖି ଆଦର୍ଶ ଅନୁସରଣ କରିବାକୁ ଯାଇ ନିଜର ସୀମା ସ୍ୱୀକାର କରିନେବାହିଁ ହେଉଛି ଗାନ୍ଧିଜୀଙ୍କ ପ୍ରଦର୍ଶିତ ପନ୍ଥା ।

କୁମୁଦିନୀ କଣ କହିବେ କହିବେ ବୋଲି ହୋଇ ଅଟକି ଗଲେ । ଦବ୍ୟର୍ଷି ହରିବାବୁ ପଚାରିଲେ, "କଅଣ କହୁଛ କୁନ୍ଦ" । କୁମୁଦିନୀ ଲଜ୍ଜାରେ ମୁହଁ ତଳକୁ କରି ଦେଇ ଧୀରେ ଧୀରେ ଅସ୍ପଷ୍ଟ ଭାବରେ କହିଲେ, "ମୁଁ କହିବାକୁ ଯାଉଥିଲି—ଆପଣ ଇଚ୍ଛା କଲେ ଆଶ୍ରମ ନିୟମାନୁସାରେ ବିବାହ କରି ପାରନ୍ତି କି ନା ?"

ଦବ୍ୟର୍ଷି ହରିବାବୁ ପୁଣି ଗାନ୍ଧିତତ୍ତ୍ୱ ବୁଝାଇ କହିଲେ, "ହଁ, କରି ପାରେ । ସେଥିପାଇଁ ନିୟମରେ କୌଣସି ବ୍ୟାଘାତ ଘଟିବ ନାହିଁ । ମାତ୍ର ସେହି ବିବାହ ପଛରେ ପଡ଼ି, ସେବା ଧର୍ମରୁ ମୁଁ ଭ୍ରାନ୍ତ ହୋଇ ପାରିବି ନାହିଁ । ତା ହେଲେ ଆଶ୍ରମ ଛାଡ଼ି ଦେବାରେ ମୋତେ କେହି ବାଧା ଦେଇ ପାରିବେ ନାହିଁ । ମୋ ମନ ମାନୁଛି ବୋଲି ମୁଁ ସେଠାରେ ଅଛି ଓ ସେହି କାମରେ ମୋର ଯେତିକି ଶକ୍ତି ସେତିକି ମୁଁ ଦେଉଛି ।

କୁମୁଦନୀ ଆଉ କିଛି ନ କହି ଚୁପ୍ ରହିଲେ । ଦିବ୍ୟସିଂହବାବୁ ପୁଣି କହିଲେ, "ଯିବ ଆଶ୍ରମକୁ ? ଗାନ୍ଧିଜୀ ଏ ଯୁଗର ପ୍ରବର୍ତ୍ତକ । ସେ କିଛି ନୂଆ କଥା କହୁ ନାହାନ୍ତି । ମାତ୍ର ପୁରୁଣା କଥାକୁ ନୂଆ ଢଙ୍ଗରେ କହୁଛନ୍ତି । ଯେ, ଯେ କୌଣସି ସ୍ତରରେ ଅଛି, ସେ ମଧ୍ୟ ସେ ନିର୍ଦ୍ଦେଶ ଅନୁସାରେ ଚଳି ଲାଭ ଉଠାଇ ପାରେ ।" କୁମୁଦନୀ ଧୀରେ ଧୀରେ କହିଲେ, "ମୁଁ କିଛି ସମ୍ବନ୍ଧ ପରେ କହିବ ।"

ରାତିରେ ଦିବ୍ୟସିଂହବାବୁ ଶୋଇବା ପାଇଁ ସଜ କରୁଛନ୍ତି । କୁମୁଦନୀ ମଧ୍ୟ ନିଜ ବିଛଣାରେ ଶୋଇବା ଆଗରୁ ବସି କଣ ଭାବୁଛନ୍ତି, ଏହି ସମୟରେ ସେ ହଠାତ୍ ଦିବ୍ୟସିଂହବାବୁଙ୍କୁ ପଚାରିଲେ "ଆଚ୍ଛା ! ଆପଣ ବେଶ୍ୟାମାନଙ୍କ ସମ୍ବନ୍ଧରେ କଣ ଭାବନ୍ତି ?"

ଦିବ୍ୟସିଂହ ବାବୁ ବିଛଣାରେ ବସିପଡ଼ି କହିଲେ, "ବେଶ୍ୟା ସମସ୍ୟା, ହୁଁ, ସେ ମଧ୍ୟ ଖୁବ୍ ବଡ଼, ସେମାନଙ୍କ କଥା ପଢ଼ିଲେ ମୋର ବଡ଼ ଦୟା ହୁଏ । କେତେ ନିରାହା ବାଳିକା, ସମାଜର ଅତ୍ୟାଚାରକୁ ବା ଦରିଦ୍ରତାର ଉତ୍ପୀଡ଼ନକୁ ନିଜର ସମ୍ମାନ ବିକ୍ରୟ କରି ଜୀବିକା ପୋଷିବାକୁ ବାଧ୍ୟ ହେଉଛନ୍ତି ।"

କୁମୁଦନୀ—"ସେମାନଙ୍କୁ ଆପଣ ଘୃଣା କରନ୍ତି ନାହିଁ ?"

ଦିବ୍ୟସିଂହ ବାବୁ—"ସେମାନଙ୍କୁ ଯେ ଘୃଣା କରେ ସେ ଅମନୁଷ୍ୟ । ସେମାନେ ଆମରି ମାଆ ଭଉଣୀ ପରି । ଘଟଣାଚକ୍ରରେ ବିପଥଗାମୀ ହୋଇ ଯାଇଛନ୍ତି । ହୁଏତ ଅଧିକାଂଶ ସେଥିପାଇଁ ନିଜେ ଦାୟୀ ନୁହନ୍ତି । ତା'ଛଡ଼ା ପୁରୁଷର ନିମ୍ନ ଚରିତ୍ରତା ଏ ସମସ୍ୟା ସୃଷ୍ଟି କରିଛି । ଏଣୁ ପୁରୁଷ ହୋଇ ମୁଁ ଲଜ୍ଜିତ ହେବି ସିନା, ସେମାନଙ୍କୁ ଘୃଣା କରିବାର ମୋର ଅଧିକାର ନାହିଁ ।"

କୁମୁଦନୀ ହଠାତ୍ ବିଛଣାରୁ ଉଠି ଦିବ୍ୟସିଂହ ବାବୁଙ୍କ ବିଛଣା ପାଖକୁ ଆସି ତାଙ୍କ ଗୋଡ଼ ଧରି ପଡ଼ିଗଲେ । ଦିବ୍ୟସିଂହବାବୁ ଅତି ବିସ୍ମିତ

ହୋଇ, "ଏ କଣ ? କଣ ପାଗଳ ନା କଣ ?" କହି ଉଠିଲେ । ତାପରେ କୁମୁଦିନୀ ଉଠି ବସି କାନ୍ଦିବାରେ ଲଗିଲେ । ଦିବ୍ୟସିଂହବାବୁ କିଛି ବୁଝି ପାରୁ ନ ଥାନ୍ତି, ତାଙ୍କ ମନରେ ସନ୍ଦେହ ଜାତ ହେଉଥାଏ । ଏ ବାଳିକା ପ୍ରମାଦ ଗ୍ରସ୍ତ ହୁହେ ତ ! ସେ ବିରକ୍ତ ହୋଇ କହିଲେ, "ଏପରି କାହିଁକି ହେଉଛ ? ମୋତେ ବଡ଼ ଖରାପ ଲାଗୁଛି ।"

କୁମୁଦିନୀ ନିଜକୁ ସମ୍ଭାଳି ନେଇ ରୁଦ୍ଧ କଣ୍ଠରେ କହିଲେ, "ମୋର ସାହସ ନାହିଁ ଉଦ୍ୟାନ ଯିବାପାଇଁ । ଅନ୍ୟ କେଉଁଠି ଆପଣଙ୍କ ଆଶ୍ରମ ହୋଇଥିଲେ ମୁଁ ନିଶ୍ଚୟ ଆପଣଙ୍କ ସାଙ୍ଗରେ ଯାଇଥାନ୍ତି । ମାତ୍ର ଯେଉଁଠି ଏ ଜୀବନ ନରକ ହୋଇଛି, ସେଠିକି ଯିବା କଥା ଭାବିବାବେଳକୁ ମୋର ଦେହ କମ୍ପି ଉଠୁଛି । ଏତେ ମହାନ୍ ଆପଣ, ଏତେ ଦୟାଳୁ ଆପଣ, ଆପଣଙ୍କ ନିର୍ଦ୍ଦେଶମତେ ଦରିଦ୍ର ସେବାର ଅଧିକାର ପାଇବାକୁ ମୋ ଜୀବନର ସାର୍ଥକତା ବୋଲି ମନେ କରୁଛି । ମାତ୍ର ବର୍ତ୍ତମାନ ସୁଦ୍ଧା ମୁଁ ତା'ଠାରୁ ବହୁ ଦୂରରେ । ଆଶୀର୍ବାଦ କରନ୍ତୁ, ମୁଁ ସେ ଅଧିକାର ଲଭିବା ହୁଏ । ଏତିକି କହି ପୁଣି ଗୋଡ଼ଧରି ପଡ଼ିଗଲେ । ଦିବ୍ୟସିଂହବାବୁ ଏତେ ବିସ୍ମିତ ଯେ, ସେ କିଛି କହିପାରୁ ନ ଥାନ୍ତି । କିଛି ସମୟ ପରେ କୁମୁଦିନୀ ଉଠି ନିଜ ବିଛଣାକୁ ଗଲେ । ବିସ୍ମୟ ଓ ତଦ୍‌ଜନିତ ବିରକ୍ତି ଯୋଗେ ଦିବ୍ୟସିଂହବାବୁ କିଛି ନ କହି ବିଛଣାରେ ପଡ଼ିଗଲେ ।

ସକାଳ ଗାଡ଼ିରେ ଦିବ୍ୟସିଂହବାବୁ ଉଦ୍ୟାନ ଚାଲିଗଲେ ଓ କୁମୁଦିନୀ ସେହିଦିନ ପୁରୀ ଆସିଲେ । ବିଦାୟ ସମୟରେ କୁମୁଦିନୀଙ୍କ ଅଶ୍ରୁ ପ୍ରବାହ ଦିବ୍ୟସିଂହ ବାବୁଙ୍କ ଆଖିରେ ମଧ୍ୟ କେତେ ବିନ୍ଦୁ ସାହାନୁଭୂତି ଅଶ୍ରୁ ଆଣି ଦେଇଥିଲା ।—"ଚିଠିପତ୍ର ଦେବେ, ବରାବର ଖବର ବୁଝିବେ ଓ ଆଶ୍ରମକୁ ଆସିଲେ ସେ ଭାରି ଖୁସି ହେବେ—" ଇତ୍ୟାଦି ପ୍ରକାର ସାନ୍ତ୍ୱନା ଦେଇ ଦିବ୍ୟସିଂହ ବାବୁ ବିଦାୟ ନେଇଗଲେ ।

ବୃମ୍ବଦଶା ପୁତ୍ରୀ ଗୁଣ୍ଡିଲ୍ମପରେ ଲାଲମୋହନ ଆଇନ ଅନୁସାରେ ବିବାହ ଦଲିଲ୍ ଟିଠା କରାଇବାପାଇଁ ତତ୍ପର ହୋଇ ପଡିଥିଲେ । ସେତିକି ଜାଣ୍ଟୁ କିଛି ବଡ଼ କଥା ନୁହେଁ—ମାତ୍ର ତା ପଛରେ ତାଙ୍କର ଯେ ଆବେଗ ଓ ଉନ୍ମାଦନା ରହିଛି, ତାହାହିଁ ତାଙ୍କୁ ଅତି ବ୍ୟସ୍ତ କରି ଦେଇଥିଲା ।

ଦୀନବନ୍ଧୁବାବୁ ଓକିଲ ତାଙ୍କର ଜଣେ ପୁରୁଣା ବନ୍ଧୁ । ତାଙ୍କର-ଠାରେ ଯାଇ ଆଇନ ବୁଝି ଟିଠା ତିଆରି କରିବାପାଇଁ କହିଲେ । ଦୀନବନ୍ଧୁବାବୁ ପ୍ରଥମେ ମନେ କଲେ ଯେ ବୋଧହୁଏ ପରିହାସରେ ଲାଲମୋହନବାବୁ ଏ କଥା କହୁଛନ୍ତି—ମାତ୍ର ଯେତେବେଳେ ସେ ପ୍ରକୃତ କଥା ଜାଣିଲେ, ସେ ବିସ୍ମିତ ହୋଇ ଲାଲମୋହନ ବାବୁଙ୍କୁ ପଚାରିଲେ, "ତୁମେ ପରା ବିବାହ କରିଛ ? ପୁଣି ଏ କି ବିବାହ ? ସାଧାରଣ ଜୀବନରେ ତୁମର ଯେ ଖ୍ୟାତି ଟିକିଏ ଅଛି, ତାକୁ କଣ ଜାଣୁ ଜାଣୁ ଧୂଳିରେ ଲୋଟାଇ ଦେବ ?"

ଲାଲମୋହନବାବୁ ମନେ ମନେ ଟିକିଏ ବିରକ୍ତ ହେଲେ; ମାତ୍ର ତାହାରେ ତାର କୌଣସି ଚିହ୍ନ ପ୍ରକାଶ ନ କରି କହିଲେ, "କାହିଁକି, ଏଥିରେ କ୍ଷତି କଣ ? ବିବାହ ଇତ୍ୟାଦି ଲୋକର ବ୍ୟକ୍ତିଗତ ବିଷୟ । ଏଥିରେ ସାଧାରଣ ଲୋକଙ୍କର କି ଅଧିକାର ଅଛି ଯେ ସେମାନେ ତର୍କ କରିବେ ?"

ଦୀନବନ୍ଧୁବାବୁ ହସି ହସି କହିଲେ, "ତମର କି ଅଧିକାର ଅଛି ଯେ, ତୁମକୁ ସାଧାରଣ ଲୋକେ ମାନିବେ। ସେମାନେ ଯେ ତୁମକୁ ସମ୍ମାନ କରୁଛନ୍ତି, ଏଠା ସେମାନଙ୍କ ସ୍ୱକୀୟ ନୁହେଁ କି ? ସେହି ଦୃଷ୍ଟିରୁ ସେମାନେ ଯେ ସମ୍ମାନ ଦାନ କରୁଥିଲେ, ତାକୁ ପ୍ରତ୍ୟାହାର କରିବାର ଅଧିକାର ସେମାନଙ୍କର ଅଛି—ନୁହେଁ କି ?"

ଲଲମୋହନ ଏତେ ଯୁକ୍ତିପାଇଁ ପ୍ରସ୍ତୁତ ନ ଥିଲେ। ଜନସାଧାରଣଙ୍କ ଦୃଷ୍ଟିକୋଣରୁ ସେ ଏ ବିଷୟକୁ ବିଚାର କରିବାର ଅବକାଶ ପାଇ ନ ଥିଲେ। ସେ ଯାହା କହୁଥିଲେ ତାହା ତାଙ୍କର ସତନ୍ତ୍ର ଚିନ୍ତା ମାତ୍ର। ସେ କହିଲେ,"ସାଧାରଣଙ୍କଠାରୁ ସମ୍ମାନ ମୁଁ କେବେ ଦାବୀ କରି ନାହିଁ। ମୋଦ୍ୱାରା ଯେତିକି ହେଉଛି, ମୁଁ ସାଧାରଣ କାର୍ଯ୍ୟ କରୁଛି। ସେଥିପାଇଁ ସାଧାରଣ କଣ ମୋର ସ୍ୱକୀୟ ଜୀବନ ଉପରେ ହସ୍ତକ୍ଷେପ କରିବେ ?"

ଦୀନବନ୍ଧୁ ବାବୁ—"କରିବା ଅନ୍ୟାୟ ଯଦି କହ, ତେବେ ସେମାନେ ଯଦି ତୁମର ସେବା ନ ଗ୍ରହନ୍ତି, ତେବେ ଅନ୍ୟାୟ କାହିଁକି ହେବ ? ଅର୍ଥାତ୍ ତୁମର ସାଧାରଣ ଜୀବନରେ ବ୍ୟାଘାତ ଘଟିଲେ ତୁମର କିଛି କହିବାର ନାହିଁ ?"

ଲଲମୋହନବାବୁ—"ବାସ୍ତବିକ ବନ୍ଧୁ ହିସାବରେ ବୁଝାଇ ମୋତେ କହ, ମୋର କେଉଁଠି ଅନ୍ୟାୟ ହେଉଛି—ମୁଁ ବିବାହ କରିଥିଲି, କୌଣସି କାରଣରୁ ମୋର ସେ ବିବାହରେ ସୁଖ ଓ ଶାନ୍ତି ମିଳିଲା ନାହିଁ। ତେଣୁ ମୁଁ ମୋ ମନ ଅନୁସାରେ ଅନ୍ୟ ବିବାହ କଲି। ଏଥିରେ ମୋର ସାଧାରଣ ଜୀବନର ଆନ୍ତରିକତାରେ କେଉଁଠି ବ୍ୟାଘାତ ଘଟୁଛି, ମୁଁ ବୁଝିପାରୁ ନାହିଁ।"

ଦୀନବନ୍ଧୁବାବୁ ଟିକିଏ ଚୁପ୍ ରହି କହିଲେ, "ମୁଁ ଯଦି ମନ ଖୋଲି କହେ ତୁମେ ବିରକ୍ତ ହେବ ନାହିଁ ତ ?"

ଅତି ବୃଢ଼ଭାବରେ ଲଲମୋହନ 'ନାଁ' ବୋଲି କହିଲେ । ତାପରେ ଦୀନବନ୍ଧୁ ବାବୁ ଗଳା ଖଙ୍କାରି କହିଲେ, "ସାଧାରଣ ଜୀବନ ବୋଲନ୍ତେ, ଅନ୍ୟର ଦୁଃଖରେ ସହାନୁଭୂତି ଓ ତଦନୁସାରେ ସେ ଦୁଃଖ ଦୂର କରିବା ପାଇଁ ଚେଷ୍ଟା—ଏହି ତ ? ତୁମେ ତୁମର ନବ ବିବାହିତ ପତ୍ନୀ ସହିତ ବେଶ୍ ଆମୋଦପ୍ରମୋଦରେ ଦିନ କଟାଉଛ । ଦେଶେ ତୁମର ଆଉ ଜଣେ ସ୍ତ୍ରୀ ଦୁଃଖରେ ଜୀବନକୁ ଦୁର୍ବହ ମନେ କରୁଛି । ଏହି ଦୁଇ ଦୃଶ୍ୟକୁ ଏକ ସଙ୍ଗରେ ରଖି ଦେଖି ?—କଅଣ ମନେ କରୁଛ ?"

ଲଲମୋହନ ଉତ୍ତେଜିତ ହୋଇ କହିଲେ, "ଦୁଃଖ କିଛି ତାର ହେବ ନାହିଁ । ମୋର ସମ୍ପତ୍ତିରେ ଯେତିକି ଅଂଶ ଅଛି, ସେଥିରେ ସେ ଖୁସିରେ ଚଳିବ ।"

ଦୀନବନ୍ଧୁବାବୁ ହସ ଉଠି କହିଲେ, "ଖାଇବାପାଇଁ କଅଣ ଲୋକେ ବିବାହ ହୋଇ ଥାନ୍ତି ?"

ଲଲମୋହନବାବୁ ଟିକିଏ ଅପ୍ରତିଭ ହୋଇ ଯାଇ କହିଲେ, "ଯେଉଁଥିପାଇଁ ବିବାହ, ତା' ଯେ ନିର୍ମୂଳ, ଅନ୍ୟ ଉପାୟ କଣ ?"

ଦୀନବନ୍ଧୁ ବାବୁ ଗମ୍ଭୀର ହୋଇ କହିଲେ, "ଅବଶ୍ୟ ମ ତୁମର ଭିତରର କଥା ଜାଣେ ନାହିଁ । କିନ୍ତୁ ମୋର ଜାହିଁ ... ମନେ ହେଉଛି ଅଧୁନିକ ଶିକ୍ଷିତା ରମଣୀର ଲୋଭରେ ଜଣେ ନିରୀହା ଗ୍ରାମ୍ୟ ବାଳିକାକୁ ବଳି ଦିଆ ହେଉଛି । ମୋର ମଧ୍ୟ ବେଶୀ କିଛି କହିବାର ନାହିଁ । କିଛି ମନେ କରିବେ ନାହିଁ । ବନ୍ଧୁ ବୋଲି ଓ କଲେଜ ସାଙ୍ଗ ବୋଲି ଏ ସବୁକଥା କହିଲି ।"

ଲଲମୋହନବାବୁ କିଛିକ୍ଷଣ ଚୂପ୍ ରହି ତାପରେ କହିଲେ, "ଆଚ୍ଛା ! ତାହାହେଲେ ଛାଡ଼ପତ୍ର ବ୍ୟବସ୍ଥା ଯେଉଁ ସମାଜରେ ଅଛି ତା କଅଁଣ ଖରାପ ? ବିବାହ କରି ମାନଙ୍କେ ମୃତ୍ୟୁମାଡ ଆ-ଜୀବନ ପଡ଼ି ରହିବାକୁ ହେବ ? ଏହି ଯେ ହିନ୍ଦୁ ସମାଜର ବିଧି—ଏହା କଅଁଣ ଭଲ ?

ଦୀନବନ୍ଧୁ ବାବୁ ଆଉ ଏ ଯୁକ୍ତରେ ମନ ନଥିଲା ଭଳି ଭାବ ପ୍ରକାଶ କରି କହିଲେ, "ସେ ଏକ ବଡ଼ ପ୍ରଶ୍ନ । ମୋ ମତରେ ଛାଡ଼ପତ୍ର ବ୍ୟବସ୍ଥା ସମାଜରେ ମଙ୍ଗଳଜନକ ନୁହେଁ । ଛାଡ଼ ସେ କଥା—ମୋତେ ଯଦି କହିବ, ମୁଁ ତେବେ ଜଲଦ ଛଠା କରିଦେବ ।"

ଯୁକ୍ତ ନ କରି ଦୀନବନ୍ଧୁ ବାବୁ ଯେ ଶାନ୍ତ ରହିଲେ, ଏହାହିଁ ଲଲମୋହନ ବାବୁଙ୍କ ମନରେ ବଡ଼ ଧକ୍କା ଦେଲା । ତାଙ୍କ ମନରେ ବିକଳ୍ପ ଜାତ ହେଲା, ସେ କିଛି ଭୁଲ କହୁଛନ୍ତି କି ? ଜଲଦ ଛଠା କରିବାପାଇଁ ନ କହି ସେ ଉଠିଲେ ଯିବାପାଇଁ । ଦୀନବନ୍ଧୁ ବାବୁ—ବସ, ବସ କହୁଥାଆନ୍ତି । ମାତ୍ର ଲଲମୋହନବାବୁ ପରେ ଆସିବ ବୋଲି କହି ଉଠି ଚାଲିଗଲେ ।

ଧର୍ମଶାଳାରେ ପୁଣି ସେ ବିଷୟ ଭାବିଲେ । ଯେଉଁ ଦୁଇଟି ଛବି ଲଗାଲଗି କରି ଦୀନବନ୍ଧୁ ବାବୁ ଥୋଇଲେ, ତାହାହିଁ ତାଙ୍କ ଆଖି ଆଗରେ ନାଚୁଥାଏ । କୁମୁଦିନୀ ସହିତ ତାଙ୍କର ହସାହସି ଉତ୍‌ଫୁଲ୍ଲ ଜୀବନ, ତାରି ପାଖରେ ତାଙ୍କର ପ୍ରଥମ ସ୍ତ୍ରୀ ନଶାମଣିଙ୍କର ବିଷର୍ଣ୍ଣ ବଦନ, ଏ କିପରି ତାଙ୍କୁ ଅପ୍ରୀତିକର ବୋଧ ହେଲା । ତାଙ୍କର ହୃଦୟ ଯେପରି ଏ ଦୃଶ୍ୟ ଦେଖିବାକୁ ସିଧା [illegible] କଲା । ସେ ଭାବି ହେଲେ, ବିବାହିତ ମୁଁ, ସେଇଠି ମୋ ଜୀବନ ଶେଷ । ଅରୁଚିକର ଉପନ୍ୟାସ ଭଳି ତାର ପ୍ରଥମ ସଂସ୍କରଣରେହିଁ ଆୟୁ ଶେଷ । ଦ୍ୱିତୀୟ ସଂସ୍କରଣର ପରିକଳ୍ପନା ବାତୁଳତା ନୁହେଁ ତ ?

ବହୁଦିନୁ ସେ ନଶାମଣିଙ୍କୁ ଭେଟି ନାହାନ୍ତି । କାରଣ ସେ ଘରକୁ ଯାଉନାହାନ୍ତି । ବିବାହିତ ଜୀବନର ପ୍ରଥମ ବର୍ଷେ ଦୁଇବର୍ଷ କଥା ତାଙ୍କର ମନେ ପଡ଼ିଗଲା । କେତେ ସ୍ନେହ, କେତେ ଅନୁକମ୍ପା ଭିତରେ ସେ· ଗଣ୍ଠ କରିଛନ୍ତି । ତାପରେ କିପରି ତାଙ୍କ ମନରେ ପ୍ରତିକ୍ରିୟା ଆରମ୍ଭ ହେଲା—ସେ କଥା ସେ ମନେକଲେ । କିଛି ପାଠଶାଠ ପଢିନାହିଁ, ଦୁନିଆର କୌଣସି ଖବର ସେ ଜାଣେ ନାହିଁ ବା ଜାଣିବାର ଶକ୍ତି ନାହିଁ ।

ନିଜର ସମସ୍ତ ଅଭିଳାଷକୁ କେବଳ ଅଳଙ୍କାର ଓ ବେଶଭୂଷାରେ କେନ୍ଦ୍ରୀ-
ଭୂତ କରି ରଖିଛି । ସୁନ୍ଦର ରୂପକୁ ଚଢ଼େଇଧରି ଫାଶ ବୋଲି ମନେକରି,
ସେଇଥିରେ ସ୍ୱାମୀଙ୍କୁ ବାନ୍ଧି ରଖିବାପାଇଁ ସବୁବେଳେ ଚେଷ୍ଟା । ତା
ମନକଥା ବୁଝିବା ପାଇଁ ମୁଁ କେତେ ଚେଷ୍ଟା କଲି । ତାକୁ ମୋ ସଙ୍ଗକୁ
ଆଣିବା ପାଇଁ ଅନେକ ଦୂର ତା ସାଙ୍ଗକୁ ମୁଁ ଗଲି, କିନ୍ତୁ ସେତ ମୋ
ମନକଥା ବୁଝିବା ପାଇଁ ଚେଷ୍ଟା କଲା ନାହିଁ ? ସେ ତ ଅଙ୍ଗୁଳିଏ ସୁଦ୍ଧା ସ୍ଥାନ
ଛାଡ଼ିଲା ନାହିଁ ? ପାରିବ କିପରି ? ତାର ଯୋଗ୍ୟତା ନାହିଁ, ସେ ଯଦି
ଜଣେ ଧନୀ କାମୁକର ପତ୍ନୀ ହୋଇଥାଆନ୍ତା, ତେବେ ତା ଜୀବନ ସାର୍ଥକ
ହୋଇଥାଆନ୍ତା । ମୋ ସଙ୍ଗରେ ତାର ପଟ ପଡ଼ିବ କିପରି ? ମଝିରେ ମଝିରେ
ମୁଁ ଯେତେବେଳେ ଘରକୁ ଯାଏ, କେବଳ ଶରୀର ସମ୍ପର୍କ ଛଡ଼ା ତା ମନର
ସମ୍ପର୍କ ଆଦୌ ଘଟିଲା ନାହିଁ । କଣ ତା' ସଙ୍ଗରେ କଥାବାର୍ତ୍ତା କରିବା ମୋତେ
ରୁଚି ଦିଏ ନାହିଁ । ଯେସବୁ କାମରେ ମୁଁ ଉନ୍ନତ ସେ ତ ତାର କିଛି
ବୁଝେ ନାହିଁ । ଯେ ସବୁଥିରେ ଉନ୍ନତି, ସେ ତ ତାର କିଛି ବୁଝେ-
ନାହିଁ । ଏହିପରି ସିନା ଜୀବନଟା ଧୀରେ ଧୀରେ ଅତି ନୀରସ ହୋଇଗଲା ।
କୁମୁଦିନୀଙ୍କ ସମ୍ପର୍କରେ ଆସିବା ଦିନ ପର୍ଯ୍ୟନ୍ତ, କି ଛଟପଟ ବେଳେ ବେଳେ
ମୁଁ ନ ହୋଉଛି ! କୁମୁଦିନୀଙ୍କ ସହିତ ଆଳାପ ହେଲା ଦିନୁ କେତେ ଶାନ୍ତି ମୁଁ
ନ ପାଉଛି ! କେହି ଜଣେ ଦରକାର; ଯାହାଠାରେ ନିଜର ଯାହା କିଛି
ସବୁ ଉନ୍ମୁକ୍ତ କରି ଥୋଇ ଦେଇ ହେବ । ସେଇ ତ ଶାନ୍ତି, ସେଇ ତ ସୁଖ ।

ଏ ସବୁ ଚିନ୍ତା ତାଙ୍କୁ ବଡ଼ ବିବ୍ରତ କରି ପକାଉଥାଏ । ବେଳେ ବେଳେ
ଭାବୁଥାଆନ୍ତି, ସେ ନିଜେ ଜଣାଶୁଣା ଲୋକ ହୋଇ ନ ଥାଆନ୍ତେ କି, ତାହା-
ହେଲେ ତାଙ୍କ ଜୀବନର ଅନ୍ଧି ସନ୍ଧି ପ୍ରତି କେହି ଦୃଷ୍ଟି ପକାନ୍ତେ ନାହିଁ ।
ଦିନବନ୍ଧୁ ବାବୁ ଯେ ଖ୍ୟାତିନାଶର ଆଶଙ୍କା କଲେ ତାହା ସମ୍ଭବ ବୋଲି
ସେ ମନେ କରୁଥାଆନ୍ତି । କିନ୍ତୁ ଉପାୟ କଣ ? ଯଦି ଖ୍ୟାତି ନଷ୍ଟ ହୁଏ, ଓ
ସାଧାରଣ ସେବାରୁ ସେ ବଞ୍ଚିତ ହୁଅନ୍ତି, ତେବେ କେବଳ ବିବାହିତ
ଜୀବନର ସୁଖ ଭୋଗ କରିବା ପାଇଁ ସେ କୁମୁଦିନୀଙ୍କୁ ବିବାହ କରିବେ ।
ନା, ତା କେବେ ହେବନାହିଁ । କିନ୍ତୁ ଖ୍ୟାତି ବା ନଷ୍ଟ ହେବ କାହିଁକି ?

ଯଦି ପୂର୍ବପରି ଅନ୍ତରର ସହିତ ସେ ଦେଶସେବା କରନ୍ତି, ତେବେ ତ ଖ୍ୟାତିନାଶର ଆଶଙ୍କା ନାହିଁ । କିନ୍ତୁ ଯେଉଁଠି ସେ ଦ୍ୱିତୀୟ ବିବାହ ପରେ ଆଶ୍ରମ ଖୋଲି ବସିବେ ସେଠି ଲୋକେ ଆଙ୍ଗୁଳି ଦେଖାଇ କହିବେ, ଏ ଲୋକଟା ଗୋଟିଏ ବାହାହୋଇ ସେଥିରେ ମନମାନିଲା ନାହିଁ ଯେ, ଆଉ ଗୋଟିଏ ବାହାହୋଇଛି । ଏ ପୁଣି ଆଶ୍ରମ କରୁଛି !

ଏହିପରି ନାନାଚିନ୍ତାରେ ସେ ଏପାଖ ସେପାଖ ହୋଇ ବିବାହ ଦଲିଲ୍‌ର ଚିଠା ତିଆର କରି ପାରିଲେ ନାହିଁ । ମାତ୍ର ସେଥିପାଇଁ ତ ବେଶୀ ଡେରି ଲାଗିବ ନାହିଁ, ଏହି ଶାନ୍ତ୍ୱନାରେ ସେ ଏ ବିଷୟରୁ ଭଲକରି ଭାବିବାରେ କୁଣ୍ଠିତ ହୋଇ ନ ଥିଲେ ।

## —୧୭—

ଲାଲମୋହନ ବାବୁ ଧର୍ମଶାଳାରେ ବସିଛନ୍ତି, ଏହି ସମୟରେ ସୁଦର୍ଶନ ଆସି ଖବର ଦେଲା ଯେ, କୁମୁଦିନୀ ଡାକି ପଠାଇଛନ୍ତି। ହଠାତ୍ ନାନାପ୍ରକାର ଭାବ ଏପରି ଭାବରେ କାମ କଲା ଯେ, ଲାଲମୋହନବାବୁ କିଛି ସମୟ ସ୍ତବ୍ଧ ହୋଇଗଲେ। ଏତେ ଶୀଘ୍ର ସେ ଫେରି ଆସିବେ ବୋଲି ତାଙ୍କର ଧାରଣା ନ ଥିଲା। ସେ ଭାବିଥିଲେ ଅନ୍ତତଃ ସାତ ଆଠ ଦିନ ଲାଗିବ; ମାତ୍ର ମୋଟେ ଚାରିଦିନ ଭିତରେ ଫେରି ଆସିଲେ, ଅଥଚ ବିବାହ ଦଲିଲ ଚିଠା ହୋଇନାହିଁ। ଏ କଥା ଶୁଣିଲେ ସେ କଣ ଭାବିବେ—ଏହି ଚିନ୍ତା ହିଁ ଲାଲମୋହନ ବାବୁଙ୍କୁ ଉତ୍କଟ ଭାବରେ ଆକ୍ରମଣ କଲା। ସେ ନିଜକୁ ଯେତେ ଶୀଘ୍ର ସମ୍ଭବ ପ୍ରକୃତିସ୍ଥ କରି କୁମୁଦିନୀଙ୍କ ବସାକୁ ବାହାରିଲେ।

ସୁଦର୍ଶନ ତେଣେ ବଜାର ସଉଦା କରି ପଛରେ ଆସୁଛି। ବସାରେ କେହି ନାହାନ୍ତି। ଏକାକୀ କୁମୁଦିନୀ ଚୌକି ଉପରେ ବସି ତାଙ୍କର ଅନୁପସ୍ଥିତିରେ ଆସିଥିବା ଚିଠିପତ୍ର ସବୁ ଓଲଟ ପାଲଟ କରୁଛନ୍ତି।

ଲାଲମୋହନଙ୍କ ମୁହଁରେ ହସ, ମାତ୍ର ସେ ହସ ଭିତରେ ସଂକୋଚ ମଧ୍ୟ ଲୁଚି ରହିଛି। ସେ ଆସି ନମସ୍କାର କହି ଆଉ ଗୋଟିଏ ଚୌକି ଉପରେ ବସି ପଡ଼ିଲେ। କୁମୁଦିନୀ କିଛି ନ କହି ଗମ୍ଭୀର ଭାବରେ ଚିଠିପତ୍ର ପଢ଼ୁଥାନ୍ତି। କିଛି ସମୟ ଗଲା। ଶେଷରେ ଲାଲମୋହନ ବାବୁ ପଚାରିଲେ, "ଏତେ ଜଲଦି କିପରି ଫେରି ଆସିଲେ ?" କୁମୁଦିନୀ ଚିଠିପତ୍ର ରଖିଦେଇ ଗମ୍ଭୀର ଭାବରେ ଉତ୍ତର କଲେ, "ଏକ ସମ୍ବାଦ ଶୁଣିଲି, ସେଥିପାଇଁ ଶୀଘ୍ର ଚାଲି ଆସିଲି।

କାଳେ ଏଥି ମଧ୍ୟରେ ତୁମେ ଗୁଡ଼ାଏ ବୃଥା ପରିଶ୍ରମ କରିପକାଇବ, ସେ କଥାକୁ ବନ୍ଦ କରିବାପାଇଁ ।"

ଉଦ୍‌ବିଗ୍ନ ହୋଇ ଲାଲମୋହନବାବୁ କୁମୁଦିନୀଙ୍କ ମୁଁହକୁ ଚାହିଁ ରହି-ଥାଆନ୍ତି । କୁମୁଦିନୀ ଆଖି ତଳକୁ କରି ଆଉ କୌଣସି ପ୍ରକାର ଉପକ୍ର-ମଣିକା ନ କରି ସିଧା ସେହି ପ୍ରଶ୍ନ ଗମ୍ଭୀର ଭାବରେ ପଚାରିଲେ, "ଲାଲ-ମୋହନବାବୁ ! ତୁମେ କୁଆଡ଼େ ବିବାହିତ ?"

ଚମକି ପଡ଼ିଲାପରି ଲାଲମୋହନ ବାବୁ ଚୌକି ଉପରେ ଏପାଖ ସେପାଖ ହୋଇ ଦୃଢ଼ଭାବରେ କହିଲେ, "ହଁ ମୁଁ ବିବାହିତ । ହେଲା କଅଣ ?"

କୁମୁଦିନୀ ସେହିପରି ଗମ୍ଭୀର ଭାବରେ କହିଲେ, "କାହିଁ, ଏ କଥା ତ ତୁମେ ମୋତେ କେବେ କହିନାହଁ ?"

ଲାଲମୋହନ ବାବୁ—"କହିବାର ପ୍ରୟୋଜନ ନାହଁ । ଅତୀତ ଉପରେ ଜୋର ଦେବା ଲୋକ ମୁଁ ନୁହେଁ । ତେଣୁ ମୁଁ ତୁମ ଅତୀତ ଶୁଣିବାକୁ ଚାହିଁ ନାହିଁ ବା ମୋର ଅତୀତ ବ୍ୟାଖ୍ୟାନ କରିବାର ପ୍ରୟୋଜନ ବୁଝି ନାହିଁ ।"

କୁମୁଦିନୀ କିଛି ସମୟ ନୀରବ ରହି ତା'ପରେ କହିଲେ, "ଏପରି ଭାବରେ ଆଖି ବୁଜି ଅନ୍ଧାରକୁ ଡିଆଁ ମାରିବା ତ ଭଲ ନୁହେଁ ?"

ଲାଲମୋହନ ବାବୁ ହସି ହସି କହିଲେ, "ଏତ ଅନ୍ଧାରକୁ ଡିଆଁ-ମାରିବା ନୁହେଁ ? ଏ ଅନ୍ଧାରରୁ ଡିଆଁ ମାରିବା ।" କୁମୁଦିନୀଙ୍କ ମୁଁହରେ ଟିକେ ହସ ମଧ୍ୟ ଦେଖାଗଲା । ଲାଲମୋହନ ନିଜ କଥାକୁ ବୁଝାଇ କହିଲେ, "ତୁମେ କିଅଣ ମୁଁ ଜାଣିଛି ଓ ମୁଁ କିଏ ତା' ବୋଧହୁଏ ତୁମେ ଜାଣିଛ । ତେଣୁ ଅତୀତର ଆଲୋଚନାରେ ଆବଶ୍ୟକ କଅଣ ? ଏକମାତ୍ର ଆଲୋଚନାର ବିଷୟ, ବର୍ତ୍ତମାନ ଓ ଭବିଷ୍ୟତ ।"

କୁମୁଦିନୀ ମୁଣ୍ଡ ହଲାଇ ଧୀରେ ଧୀରେ କହିଲେ, "ମାତ୍ର ସେ ସିନା ଅଭାଗିନୀ ହୋଇ ପଡ଼ି ରହିବ ।"

ଲଳମୋହନ ଗମ୍ଭୀର ହୋଇ କହିଲେ,—"ବହୁଚିନ୍ତା କରି ମୁଁ ଦେଖିଲି ଯେ ତାକୁ ସୌଭାଗ୍ୟ କରିବାର ଶକ୍ତି ବା ଅବକାଶ ମୋର ନାହିଁ । ତେଣୁ ମନେ ମନେ ମୁଁ ତାକୁ ବିଦାୟ ଦେଇଛି—ଅବଶ୍ୟ ତାର ଭରଣ-ପୋଷଣର ବ୍ୟବସ୍ଥା କରିଛି; ମାତ୍ର ବାଲି କଳସି ବେକରେ ବାନ୍ଧି ମୁଁ ପହଁରି-ପାରିବି ନାହିଁ । ସେ ତ ମୋ କଥା । ମାତ୍ର ତୁମର ଆପତ୍ତି କଅଣ ? ଆଉ ମଧ୍ୟ ସମାଜରେ ବହୁବିବାହ ତ ନୂଆକି ନୁହେଁ ?"

କୁମୁଦିନୀ ହଠାତ୍ କହିଲେ, "ତା ତ ନୂଆକି ନୁହେଁ । ମାତ୍ର ସବୁ ଆଗକୁ ମୁଁ ବିଚାର କରୁଛି—ଆଚ୍ଛା, ତୁମେ କଣ ତୁମ ମନରେ ସ୍ଥିର କରିଛ ଯେ, ତା ସହିତ ଆଉ ସମ୍ପର୍କ ରଖିବ ନାହିଁ ?"

ଲଳମୋହନ ବାବୁ ଦୃଢ଼ଭାବରେ କହିଲେ, "ହଁ ତାହାହିଁ ସ୍ଥିର କରିଛି ।" ମାତ୍ର ଏ କଥା କହିବାବେଳେ ତାଙ୍କ ସ୍ୱର ଭିତରେ ଟିକିଏ ଥରିଗଲା । ସେ ଟିକିଏ ଚୁପ୍ ହୋଇ ବସି ରହିଲେ ।

କୁମୁଦିନୀ—"କାହିଁକି ଏପରି ସିଦ୍ଧାନ୍ତରେ ପହଞ୍ଚିଲ ?"

ଲଳମୋହନ—"ପୁଣି ସେହି ଅତୀତର ଆଲୋଚନା, ମୁଁ ତ ତୁମର ଅତୀତ ଜାଣିବା ପାଇଁ ଛଳେ ହେଲେ ସ୍ପୃହା ପ୍ରକାଶ କରିନାହିଁ । ତୁମେ କାହିଁକି ମୋର ଅତୀତ ଜାଣିବା ପାଇଁ ଏତେ ବ୍ୟାକୁଳ ।"

କୁମୁଦିନୀ ଅଳ୍ପ ହସି ହସି କହିଲେ, "ତାର କାରଣ—ମୁଁ ନାରୀ । ମୁଁ ଜାଣେ—ନାରୀ କପରି ଅତ୍ୟାଚାରିତା । ମୁଁ ଜାଣେ ପୁରୁଷ କପରି ମାଟି ଗୋଡ଼ି ପରି ନାରୀକୁ ବ୍ୟବହାର କରେ । ତେଣୁ ମୁଁ ବ୍ୟସ୍ତ । ସେ ବିଚାରୀ ପାଇଁ—ଯାହାକୁ ତୁମେ ବିଦାୟ ଦେଇଛ ବୋଲି କହୁଛ ।"

ଲଳମୋହନ ବାବୁ ଅତି ବ୍ୟସ୍ତ ହୋଇ ପଡ଼ିଲେ, ତାଙ୍କୁ ବାସ୍ତବିକ୍ ବିରକ୍ତ ଲାଗିଲା ଏ ବିଷୟରେ ଆଉ କଥାବାର୍ତ୍ତା ଚଳାଇବା ପାଇଁ । ସେ ମୁହଁ ଝାଡ଼ି କହିଲେ, "ଏ ବିଷୟରେ ମୁଁ କୌଣସି ପ୍ରକାର ଆଲୋଚନା କରିବାକୁ ଚାହେଁ ନାହିଁ । ସେହି ହେଉଛି ମୋର ଜୀବନର ଦୁର୍ବଳ ସ୍ଥାନ,

ସେଇଠି କେବଳ ଜୀବନରେ ମୁଁ ଦୁଃଖ ଓ ନୈରାଶ୍ୟ ଭୋଗେ । ସେଥିପାଇଁ ନୂତନ ବିବାହର ପରିକଳନା । ତୁମେ ସେଇଠି ପୁଣି ଆଘାତ କରୁଛ—ମୁଁ ଯାଉଛି ବର୍ତ୍ତମାନ, ପରେ ଆସିବ ।"

କୁମୁଦଙ୍ଗୀ ବ୍ୟସ୍ତ ହୋଇ ପଡ଼ି ତରତରରେ କହିଲେ, "ବସ, ବସ, ଏତେ ବ୍ୟସ୍ତ କାହିଁକି ? ଖାଲି କଣ ପ୍ରେମର କଥା ଛଡ଼ା ଆଉ କିଛି କଥା ନାହିଁ । ଜଗତରେ କଅଣ ସୁଖର କଥାଛଡ଼ା ଦୁଃଖର ଆଲୋଚନା ଆଦୌ ନାହିଁ ? ହୃଦୟର ସଂଯୋଗ ସେଇଠି, ଯେଉଁଠି ସୁଖ ଓ ଦୁଃଖର ଉଭୟ ଆଲୋଚନା ନିର୍ବିକାର ଭାବରେ କରାହୁଏ । ସେଥିପାଇଁ ତ ମୁଁ ତମକୁ ମୋ ଅତୀତ ଶୁଣାଇବା ପାଇ ବ୍ୟସ୍ତ । ଆମର ବିବାହ ପରେ କଅଣ ମନେ କରିଛ ଆମର ଜୀବନ କେବଳ ଗୋଲାପ ଫୁଲର ସେଜ ଉପଭୋଗ କରିବ ?—କେତେ କଣ୍ଟା ଅଜାଣତରେ ମୁନ୍ଦା ଆସି ବାଜିବ ? ତାକୁ ତ ସହିନେବାକୁ ହେବ ? ହଁ, କଣ୍ଟା ବାଜିବା ମାତ୍ରକେ ମୁଁ ପୁଣି ନୂତନ ସ୍ୱାମୀ ଖୋଜିବ ବା ତୁମେ ପୁଣି ତୃତୀୟ ସ୍ତ୍ରୀ ଖୋଜିବ । ଜୀବନରେ ଅତି ନିର୍ଲଜ୍ଜ ଧକ୍କା ଖାଇଛି ବୋଲି ମୁଁ ଚମକୁଛି—ଡର ମାଡୁଛି, କାଳେ ପୁଣି ଯାଇ ଖାଲରେ ପଡ଼ିବ । ଏ ସବୁ ବିଷୟରେ ଉତ୍ତେଜନା ଯେତେ କମ୍ ରହେ ତେତେ ଭଲ ହୁଏ କି ଲାଲମୋହନ ବାବୁ ?"

ଲାଲମୋହନ ବାବୁ ମୁହଁ ତଳକୁ କରି ସବୁ ଶୁଣୁଥିଲେ । ତାଙ୍କ ମନରେ କୁମୁଦଙ୍ଗୀଙ୍କ ଅତୀତ ଜାଣିବା ପାଇଁ ଟିକିଏ ଇଚ୍ଛା ଜାଗ୍ରତ ହେଲା ଭଳି ସେ ଅନୁଭବ କଲେ । ସେ ମୁହଁ ଟେକି ଧୀରେ ଧୀରେ ଚକିତ ଭାବରେ କହିଲେ, "କି ଧକ୍କା ଜୀବନରେ ତୁମେ ସହିଛ ?"

କୁମୁଦଙ୍ଗୀ ହସି ଉଠି କହିଲେ, "ଏତେବେଳେ ମୋର ଅତୀତ ଜାଣିବା ପାଇଁ ଇଚ୍ଛା ହେଲା ? ତେଣୁ ମୁଁ କହୁଛି ବିବାହ ବର୍ତ୍ତମାନ ବନ୍ଦ ରହୁ । ପୁଣି ବିଷୟକୁ ଭଲକରି ଭାବିବାକୁ ଦେବା ଉଚିତ ।"

ଲାଲମୋହନ ବାବୁ ରାସ୍ତା ଆଡ଼କୁ ଅନାଇ କିଛି ସମୟ ଚିନ୍ତା କରି କହିଲେ, "ତୁମେ ଜାଣ କୁମୁଦଙ୍ଗୀ, ତୁମକୁ କେନ୍ଦ୍ର କରି ମୋ କଳ୍ପନା-

ବର୍ଷାସରେ କେତେ ବଡ଼ ବୃକ୍ଷ ମୁଁ ଆଙ୍କି ସାରିଲଣି । ଶେଷରେ ସେ କଅଁଳ କେବଳ ଗୁଳ୍ମଙ୍କର ଖଡ଼ିଅଙ୍କା ଚିତ୍ରପରି କିଛି ସମୟରେ ପୋଛି ଦେବାପାଇଁ ଅଙ୍କା ହେଲା ?"

କୁମୁଦିନୀ ଦୁଃଖିତ ସ୍ୱରରେ କହିଲେ, "ତୁମେ ଜାଣ, ମୁଁ ମଧ୍ୟ କିଛି କମ୍ ଧରଣର ଚିତ୍ର ଅଙ୍କିନାହିଁ । ବିବାହିତ ଜୀବନର ସୁଖ ମୋତେ ଯେତେ ଅସ୍ଥିର ନ କରୁଛି, ମା ହେବାର ଇଚ୍ଛା ତା ଠାରୁ ବେଶୀ ଅସ୍ଥିର କରୁଛି । ଶିଶୁଟିଏ କୋଳରେ ଦେଖିଲେ ମୋର ଯେପରି ଜୀବନର ସମସ୍ତ ସୁଖ ମିଳିଯିବ ।"—ଏତିକି କହି ସେ ନୀରବ ହୋଇ ତଳକୁ ଅନାଇ ରହିଲେ ।

କିଛି ସମୟ ପରେ ଦୁଇ ଗୋଟି ବିନ୍ଦୁ ଲୁହ, ତାଙ୍କ ଆଖିରୁ ଖସି ପଡ଼ିବାର ଲଳମୋହନ ବାବୁ ଦେଖିଲେ । ତା'ପରେ ରୁମାଲରେ କୁମୁଦିନୀ ଆଖି ପୋଛି ଦେଲେ ।

ଲଳମୋହନ ବାବୁ କରୁଣ ଭାବରେ କିଛି ସମୟ କୁମୁଦିନୀଙ୍କୁ ଚାହିଁ ରହିଲେ । ତା ପରେ ଧୀରେ ଧୀରେ କହିଲେ, "ତେବେ ବର୍ତ୍ତମାନ ବିବାହ ସ୍ଥଗିତ ରହୁ, ମାତ୍ର—।"

କୁମୁଦିନୀ ରୁଦ୍ଧକଣ୍ଠରେ କହିଲେ, "ବର୍ତ୍ତମାନ ଥାଉ ଏ ବିଷୟରେ ଚର୍ଚ୍ଚା—ପୁଣି ପରେ କଥାବାର୍ତ୍ତା ହେବା—ମୁଁ ଗୃହେ ସ୍ନେହ ଏପରି ସ୍ନେହ ଯେ ସେଥିରେ ଭାଗିଦାର କେହି ଆଉ ରହିବେ ନାହିଁ । ସେହି ସ୍ନେହ ଶିଶୁଠାରେ ପ୍ରତିଫଳିତ ହେବ, ଯାହାକୁ ଜୀବନ ସଙ୍ଗୀ କରି ମୋର ପାପ ଜୀବନ ସାଙ୍ଗ କରିବି । ତେଣୁ ତୁମର ପ୍ରଥମ ବିବାହ କଥା ଶୁଣି ମୁଁ ବିଚଳିତ ହେଲି । କିଛି ମନେ କରିବେ ନାହିଁ । ବର୍ତ୍ତମାନ ମୋତେ ଭାବିବାକୁ ଅବସର ଦିଅନ୍ତୁ ।"

ଲଳମୋହନ ବାବୁଙ୍କୁ ଏ କଥା ମଧ୍ୟ ଲାଗିଲା । ସେ ତୁନି ହୋଇ ରହିଲେ । ତା'ପରେ ଏଣୁ ତେଣୁ କଥା ହୋଇ ସେ ଧର୍ମଶାଳାକୁ ଫେରିଗଲେ ।

ବାସ୍ତବିକ୍ ଲଲମୋହନ ବାବୁଙ୍କ ମନରେ ବଡ଼ ଆଘାତ ଲଗିଲା । ତାଙ୍କ ବନ୍ଧୁ ଦୀନବନ୍ଧୁ ବାବୁ ଯାହା କହୁଥିଲେ ତା ସତ ବୋଲି ଜଣା ପଡ଼ିଲା । ବିବାହିତ ଲୋକ ଆଉ ଗୋଟିଏ ବିବାହ କରିବାକୁ ଗଲେ ପ୍ରଥମେ ସେ ପୁରୁଷକୁ ଦୋଷୀ ବୋଲି ଧରି ନିଆହେଉଛି । ଏହାହିଁ ଯଦି ରୀତି ହୁଏ, ତେବେ ସମୁଦାୟ ହିନ୍ଦୁ ବିବାହ ପ୍ରଥାହିଁ ଉଚ୍ଛନ୍ନ ହେବା ଆବଶ୍ୟକ— ତା ନହେଲେ ବହୁ ଜୀବନ ଅକାରଣ ଅଶାନ୍ତିରେ ଜଳି ପୋଡ଼ି ଭସ୍ମ ହୋଇଯିବ । ସେ କାହିଁକି ପ୍ରଥମେ ବିଦ୍ରୋହର ଧ୍ୱଜା ନ ଉଡ଼ାଇବେ । ଅର୍ଥାତ୍ ନିଜ ସ୍ତ୍ରୀକୁ କିଛି ଭରଣ ପୋଷଣ ଦେଇ ଆଇନ ଅନୁସାରେ ଆଗ ଛାଡ଼ପତ୍ର ଦେଇ ନ ଦେବେ, ଏହା'ହି ତାଙ୍କ ମନକୁ ଆଲୋଡ଼ନ କରିବାକୁ ଲଗିଲା । ଆହୁରି ମଧ୍ୟ ସେ ନିଜକୁ ପରୀକ୍ଷା କରି ଦେଖିଲେ ଯେ,ଜନମତକୁ ଏଡ଼େଇ ଦେବା ଯେତେ ସହଜ ବୋଲି ସେ ଭାବୁଥିଲେ, ତାହା ତେତେ ସହଜ ନୁହେଁ । ଭାବି ସ୍ଥିର କଲେ, ଏ ବିଷୟରେ ଦିବ୍ୟସିଂହ ବାବୁଙ୍କ ସହିତ ଆଲୋଚନା କରିବେ । ଆହୁରି ମଧ୍ୟ ପରୋକ୍ଷରେ ତାଙ୍କ ସମ୍ବନ୍ଧରେ, କୁମୁଦିନୀ ଓ ଦିବ୍ୟସିଂହ ବାବୁଙ୍କ ସମ୍ବନ୍ଧରେ କିଛି କଥା ହୋଇଛି । ନହେଲେ କୁମୁଦିନୀ କାହୁଁ ଜାଣିଲେ ତାଙ୍କ ପ୍ରଥମ ବିବାହ କଥା—ଏଣୁ ଦିବ୍ୟସିଂହ ବାବୁଙ୍କ ସହିତ କଥାବାର୍ତ୍ତା ହୋଇଗଲେ ଓ ସେ ଯଦି ତାଙ୍କ ବିବାହକୁ ସମର୍ଥନ କରନ୍ତି, ତେବେ ବହୁ ପରିମାଣରେ ପଥ ପରିଷ୍କାର ହୋଇଯିବ । ଏହା ସ୍ଥିର କରି ସେ ସେହିଦିନ ରାତି ଗାଡ଼ିରେ ଭଦ୍ରାଖ ଯିବାର ସ୍ଥିର କଲେ । ଯିବା ପୂର୍ବରୁ ଥରେ କୁମୁଦିନୀଙ୍କ ସହିତ ଦେଖା କରିବାକୁ ଗଲେ । କୁମୁଦିନୀ ବସି ଖବରକାଗଜ ପଢ଼ୁଥିଲେ । ତାଙ୍କ ମୁହଁରୁ ଜାଣି ପାରିଲେ

ଯେ, ସେ ପ୍ରସନ୍ନ ମନରେ ଅଛନ୍ତି । ଲାଲମୋହନ ବାବୁଙ୍କୁ ଚୌକିରେ ବସିବାକୁ ଦେଇ କୋମଳ ଭାବରେ ପଚାରିଲେ, "କଅଣ ଆଉ ଖବର, ଲାଲମୋହନ ବାବୁ ?" ଲାଲମୋହନ ବାବୁ ହଠାତ୍ ତାଙ୍କ ମନ କଥାର ଅବତାରଣା ନ କରି ଅନ୍ୟମନସ୍କ ଭାବରେ କହିଲେ, "ଖବର୍ ତୁମଠି ନାଁ । ବ୍ରହ୍ମଗିରି ଯାଇଥିଲ କଅଣ ଦେଖିଲ, କାହିଁ କିଛି ତ କହିଲ ନାହିଁ ।"

କୃଷ୍ଣମୋହନ—"ଦେଖିବି କଅଣ—ଅକଳଙ୍କିତ ଦାରିଦ୍ର୍ୟ—ଯାହାଙ୍କୁ ଲୋକେ ବଡ଼ଲୋକ ବୋଲି କହୁଛନ୍ତି, ସେ ସୁଦ୍ଧା ଏତେ ଗରିବ ମୁଁ ତ ଦେଖି ନଥିଲି । ଯାହାଙ୍କ ଘରେ ଆମର ଖାଇବା ପିଇବାର ବନ୍ଦୋବସ୍ତ ହୋଇଥିଲା—ସେ ଖୁବ୍ ଚଳାଚଳ ଘର ବୋଲି ଲୋକେ କହନ୍ତି । ମାତ୍ର ତାଙ୍କ ଘର ଭିତରେ ମୁଁ ଦେଖିଲି, ଗୃହଚଳନ ଲକ୍ଷ୍ୟ କଲି । ତାଙ୍କୁ ଅନ୍ୟମାନଙ୍କ ସହିତ ତୁଳନା ନ କରି ଏକାକୀ ବିଚାର କଲେ ସ୍ୱଚ୍ଛନ୍ଦରେ କୁହାଯିବ ଯେ, ସେ ଜଣେ ଗରିବ ଲୋକ, ତଥାପି ଯେଉଁଠି ଲୋକେ ଖାଇବାକୁ ପାଉ ନାହାନ୍ତି, ସେଠି ଯେ ଧୁଇଁ ଓଳି ପେଟ ପୂରିବା ଭଳି ଖାଇବାକୁ ପାଉଛି—ସେ ମଧ୍ୟ ବଡ଼ଲୋକ ।"

ଲାଲମୋହନ ବାବୁ—"ଦରିଦ୍ରତା ତ ଗୋଟିଏ ସମ୍ବନ୍ଧବାଚକ ଶବ୍ଦ । ସେହି ହେତୁରୁ ମୁଁ ଚୂଡ଼ା ଗୁଡ଼ଲ ବାଣ୍ଟିବାକୁ ପସନ୍ଦ କରେ ନାହିଁ । ଯେଉଁମାନେ ଅଭାବଗ୍ରସ୍ତ ସେମାନେ ନିଜକୁ ଏପରି କାହିଁକି ନ କହିବେ ଯେ, ସେମାନେ ଅଭାବରେ ଥିବା ପର୍ଯ୍ୟନ୍ତ ଅନ୍ୟମାନେ ଭଲଭାବରେ ଚଳି ପାରିବେ ନାହିଁ । ଦେଶସାରା ପ୍ରବଳ ଅସନ୍ତୋଷର ଏକ ବିରାଟ ଅଗ୍ନିଦାଣ୍ଡ ଘଟୁ । ହୋଇଯାଉ ଭସ୍ମସାତ୍ । ଯୁଗ ଯୁଗ ବ୍ୟାପୀ ଯେ ଦୈନ୍ୟ ଆବର୍ଜନା ଏ ଦେଶ ସମାଜରେ ଜମାଟ ବାନ୍ଧି ଯାଇଛି—ଯେଉଁଠି ମୁଁ ଦେଖେ ଟିକିଏ ହେଲେ ସେ ପ୍ରକାର ସକ୍ରିୟ ଅସନ୍ତୋଷର ବହିଃପ୍ରକାଶ, ମୁଁ ସେଠି ମୋ ପ୍ରାଣକୁ ଢାଳି ଦିଏଁ । କିନ୍ତୁ ଦେଶରେ ବହୁ ମାନ୍ୟଗଣ୍ୟ ଲୋକ ଅଛନ୍ତି, ଯେଉଁମାନେ ଗରିବଙ୍କୁ ଆଧାର ଦେଲାଭଳି ହେବ ମୁହଁରେ ଗଣ୍ଡେ ଗଣ୍ଡେ ଚୂଡ଼ା ଗୁଡ଼ଲ ଦେବାକୁ ବଡ଼ ମନେ କରନ୍ତି ।

କୁମୁଦିନୀ ମଝିରେ ବାଧା ଦେଇ କହିଲେ, "ଶବ୍ୟାଙ୍ଗି ବାବୁ ସେହିପରି ଲୋକ । କିନ୍ତୁ ସେ ଏତେ ମହାନ୍, ତାଙ୍କର ହୃଦୟ ଏତେ ବଡ଼, ମୁଁ ଏପରି ଲୋକ ପ୍ରାୟ ଦେଖି ନାହିଁ । ମୋର ମନେହୁଏ—ସେ ଯାହା କହୁଛନ୍ତି, ତାର ପରିଣାମ ତୁମେ ଯାହା କହୁଛ ତାହାହିଁ ଘଟିବ ।"

କେଜାଣେ କାହିଁକି କୁମୁଦିନୀଙ୍କ ମୁହଁରେ ଶବ୍ୟାଙ୍ଗି ବାବୁଙ୍କ ପ୍ରଶଂସା ଲାଲମୋହନ ବାବୁଙ୍କ ମନରେ ଠେକିଲା । ହୁଏତ ତାହା ପ୍ରଣୟୀର ଈର୍ଷା ବା ସାଧାରଣ ଜୀବନରେ ଏକାଧିକ ବଡ଼ ଲୋକଙ୍କ ଭିତରେ ଯେପରି ପରସ୍ପର ଅସହିଷ୍ଣୁତା ସାଧାରଣତଃ ଦେଖାଯାଏ । ତାହା ଯାହାହେଉ, ସେ ନିଜ ମନ ଭାବକୁ ପ୍ରକାଶ ନ କରି ଧୀରେ ଧୀରେ କହିଲେ, "ଆଜି ଯାଉଛି ତାଙ୍କ ପାଖକୁ ।" କୁମୁଦିନୀ ବ୍ୟଗ୍ର ହୋଇ କହିଲେ, "ତୁମେ ଭଦ୍ରଖ ଯାଉଛ ଆଜି ?" ଲାଲମୋହନ ତଳକୁ ମୁହଁ କରି ରହିଲେ, "ଯାଉଛି ତାଙ୍କ ସହିତ ଆଲୋଚନା କରିବି । ହିନ୍ଦୁ ବିବାହ ପ୍ରଥା ସମ୍ବନ୍ଧରେ । ମୁଁ ଭାବୁଛି ଆଇନ ଅନୁସାରେ ମୋ ପ୍ରଥମ ବିବାହିତ ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେଇଦେବି । ତାର ଭରଣ ପୋଷଣର ବ୍ୟବସ୍ଥା କରି ଦେବି । ତାହାହେଲେ ମୁଁ ସେଥିରୁ ସମ୍ପୂର୍ଣ୍ଣ ଭାବରେ ମୁକ୍ତ ହୋଇଯିବି ।"

କୁମୁଦିନୀ ହସି ହସି କହିଲେ, "ଆଚ୍ଛା, ତା ପରେ ଯଦି ମୁଁ କହେ ଯେ ବିବାହ କରିବି ନାହିଁ—ତେବେ ?"

ଲାଲମୋହନ ବାବୁ ବ୍ୟସ୍ତ ହୋଇ ପଡ଼ିଲେ । ତାଙ୍କ ମୁଖମଣ୍ଡଳ ବିବର୍ଣ୍ଣ ହୋଇଗଲା । ସେ ଟିକିଏ ରହିଯାଇ କହିଲେ, "କୁମୁଦିନୀ, ସମୁଦାୟ ହୃଦୟଟୁକୁ ଅଜାଡ଼ି ଦେଇ ମଧ୍ୟ ତୁମ ମନର କଥା ମୁଁ କିଛି ଜାଣି ପାରିଲି ନାହିଁ । ଆଶା ଦେଖାଇ ନିରାଶ କରିବାରେ ତୁମର ଏତେ ଆନନ୍ଦ ?"

କୁମୁଦିନୀ ହସି ଉଠି କହିଲେ, "କିଛି ମନେ କର ନାହିଁ । ମୁଁ ଜାଣିବାକୁ ଚାହେଁ ଯେ, ମୋ ପାଇଁ ତାକୁ ଛାଡ଼ିଦେଇ ନା ମୋତେ ବାନ୍ଧି ଦେଇ ମଧ୍ୟ ତାକୁ ତୁମର ଛାଡ଼ିବାର କଥା ।"

ଲାଲମୋହନ ବାବୁ ସେହିଦିନ ରାତି ଗାଡ଼ିରେ ଭଦ୍ରକ ଗଲେ । ତହିଁ-
ପର ଦିନ ସକାଳେ ଭଦ୍ରକ ଷ୍ଟେସନରେ ପହଞ୍ଚି ସେଠୁଁ ପାଞ୍ଚ ମାଇଲ ଯାଇ
ଦିବ୍ୟସିଂହ ବାବୁଙ୍କ ଆଶ୍ରମରେ ପହଞ୍ଚିଲେ । ସେତେବେଳକୁ ଦିବ୍ୟସିଂହ ବାବୁ
କୁଆଡ଼େ କାମରେ ବାହାରି ଯାଇଥାନ୍ତି । ସେଥିଯୋଗୁଁ ଲାଲମୋହନ
ବାବୁଙ୍କୁ କିଛି ଅସୁବିଧା ଭୋଗିବାକୁ ହେଲା ନାହିଁ । କାରଣ ସେ ଆଶ୍ରମରେ
ସୁପରିଚିତ । ଦିବ୍ୟସିଂହ ବାବୁଙ୍କ ଅନୁପସ୍ଥିତିରେ ଯେ ଆଶ୍ରମ କାମ
ଦେଖାଶୁଣା କରନ୍ତି; ସେ ଲାଲମୋହନ ବାବୁଙ୍କୁ ଅଭିବାଦନ କରି, ତାଙ୍କ
ଲୁଗାପଟା ତାଙ୍କ ହାତରୁ ନିଜେ ନେଇ, ଏକ କୋଠରୀରେ ରଖି ଦେଲେ
ଓ ଗୋଡ଼ ହାତ ଧୋଇବା ପାଇଁ ପାଣି ଦେଲେ ।

ଗୋଡ଼ ହାତ ଧୋଇସାରି ଲାଲମୋହନ ବାବୁ ପଚାରିଲେ, "କି
ବ୍ରଜକିଶୋର ବାବୁ, ଆଶ୍ରମ କାମ କିପରି ଚାଲିଛି ?"

ବ୍ରଜକିଶୋର ଖଣ୍ଡେ ସପ ବିଛାଇ ଦେଇଥିଲେ ସେଇଠି
ଲାଲମୋହନ ବସିଲେ । ବ୍ରଜକିଶୋର ପାଖରେ ବସି ଈଷତ୍ ହାସ୍ୟ କରି
କହିଲେ, "ଆଶ୍ରମ କାମ ଭଲ ଚାଲିବ କୁଆଡୁ ? ଆପଣମାନେ ତ ଏଆଡ଼କୁ
ମନ ଦେଉ ନାହାନ୍ତି ।"

ଲାଲମୋହନ ବାବୁ ସେହି ପୁରୁଣା ଯୁକ୍ତି ବିଷୟରେ କହିବା ପାଇଁ
ତିଆରି ହୋଇଗଲେ । ଯାହାକୁ ସେ ବରାବର ଏହି ଆଶ୍ରମ ବାଲାଙ୍କ
ବିରୋଧରେ ପ୍ରୟୋଗ କରନ୍ତି । ସେ କହିଲେ, "କେତେ ମଠ ଏ ଭାରତବର୍ଷରେ
ଅଛି, କେତେ ସାଧୁ ସନ୍ଥ ସେଠି ପଡ଼ି ରହିଛନ୍ତି । ଆପଣମାନେ ତା ସାଙ୍ଗକୁ
ଆଉ କେତୋଟା ଯୋଗ କରି ଦେଶର କରୁଛନ୍ତି କଣ ? ଏ ସବୁ ବିଷୟରେ

ଯୁକ୍ତ ପାଇଁ ବ୍ରଜକିଶୋର ବାବୁ ମଧ୍ୟ ତିଆର । ସେ ଗମ୍ଭୀର ହୋଇ କହିଲେ, "ସେହି ମଠ ସବୁ ଅଛି ବୋଲି ଭାରତ ବର୍ଣ୍ଣସଂସ୍କୃତି ଅକ୍ଷୁର୍ଣ୍ଣ ଅଛି; ନ ହେଲେ ଭାରତର ସଂସ୍କୃତି ଆଜି କେବଳ ପ୍ରାଚୀନ ସାହିତ୍ୟର ବିଷୟ ହୋଇ ରହିଥାନ୍ତା ।

ଲାଲମୋହନ ବାବୁ—"ଯେତେ ମଠ ଅଛି, ସବୁ ଯଦି ଏକ କଲମ-ଗାରରେ ଲୋପ କରି ଦିଆହୋଇଥାନ୍ତା, ଯେପରି ଇଉରୋପର ଦେଶ ମାନଙ୍କରେ କରା ହୋଇଛି, ତେବେ ଏ ଭାରତ ଆଜି ଆଉ କିଛି ହେଉ ବା ନ ହେଉ ପରାଧୀନ ହୋଇ ରହି ନ ଥାନ୍ତା । କି ସଂସ୍କୃତି ଆମର ଅଛି ! ପରାଧୀନ ବୋଲି ପୃଥିବୀରେ ଗୁରିଆଡେ ଛି ଛି କାର । ଆମେ ଏଇଠି ବସି ଧୋତି ପିନ୍ଧି ଚୁଟି ହଲାଇ କହୁଛୁ, ଏଇ ଆମର ସଂସ୍କୃତି ।"

ବ୍ରଜକିଶୋର ବାବୁ—"ମୁଁ ଧର୍ମଗତ ଜୀବନ କଥା କହୁଛି, ଯାହା ଭାରତକୁ ଏକ ସ୍ୱତନ୍ତ୍ର ଜାତି ଓ ତାର ଅତୀତ ଇତିହାସ ସହିତ ତାକୁ ହଜାର ହଜାର ବାଧାର ସମ୍ମୁଖୀନ ହୋଇ ସଂଯୁକ୍ତ କରି ରଖିଅଛି—ସେହି ବିଶେଷତ୍ୱ କଥା ମୁଁ କହୁଛି ମାତ୍ର । ଅବଶ୍ୟ ବହୁ ଆବର୍ଜନା ତାକୁ ଘୃଣ୍ୟ କରି ପକାଉଛି; ମାତ୍ର ସେ ସବୁରୁ କିଛି ଯେ ଆବଶ୍ୟକତା ନାହିଁ ଏ କଥା ଆପଣ କହି ପାରିବେ ନାହିଁ ।"

ଲାଲମୋହନ ବାବୁ—"ସେ ସବୁ ବାଜେ କଥା । ମୋ ହାତରେ ଯଦି କ୍ଷମତା ଥାଆନ୍ତା, ମୁଁ ଆଗେ ଏ ଜଗନ୍ନାଥ ଦେଉଳକୁ ଏକ ସଂଗ୍ରହାଳୟ ବନାଇ ଦିଅନ୍ତି, ଯେଉଁଠି ଐତିହାସିକ ଉଲ୍ଲେଖ୍ୟ ବସ୍ତୁର ପ୍ରଦର୍ଶନୀ ଖୋଲି ଯାଆନ୍ତା । ପ୍ରତ୍ୟେକ ମଠକୁ ଏକ ଏକ ଶିକ୍ଷା କେନ୍ଦ୍ର କରି ଦିଅନ୍ତି । ଯେପରି ଅକ୍ସଫୋର୍ଡ କେମ୍ବ୍ରିଜ ପ୍ରଭୃତି ପ୍ରଥମେ ମଠ ଥାଇ ଶେଷରେ ବିଶ୍ୱବିଦ୍ୟାଳୟ ହୋଇଛି । ଧର୍ମକୁ ଯେ ଏକ ସମାଜଗତ ବିଷୟ କରି ଜାତିର ବାଡ଼ରେ ତାକୁ ଘେରି ରଖିଛନ୍ତି, ତାକୁ ଏକାଥରେ ମୁଁ ଲୋପ କରିଦିଅନ୍ତି । ଦୈନିକ ଧର୍ମ ବ୍ୟକ୍ତିଗତ ବିଷୟ ହୋଇ ରହନ୍ତା । ସମାଜ ସହିତ ତାର ସମ୍ପର୍କ ରହନ୍ତା ନାହିଁ ।

ଏହି ସମୟରେ ହରୀଶ୍ଚନ୍ଦ୍ରବାବୁ ଆସି ପହଞ୍ଚିଲେ । ସେ ଲାଲମୋହନ ବାବୁଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇ ତାଙ୍କ ପାଖରେ ବସି ପଡ଼ିଲେ । ଲାଲମୋହନବାବୁ ପୂର୍ବକଥା ବନ୍ଦ କରିବା ପରେ କହିଲେ, "ଜାତି ଜାତି ହୋଇ ଏ ସମାଜଟା ସର୍ବନାଶ ହୋଇଗଲା । କ୍ଷମତା ଥିଲେ ଏକ ବର୍ଷରେ ଏ ଜାତି ଲୋପ ହୋଇଯାନ୍ତା ।"

ହରୀଶ୍ଚନ୍ଦ୍ର ବାବୁ ହସି ହସି କହିଲେ—"କପରି" ?

ଲାଲମୋହନ ବାବୁ—"କପରି, ମୋଠାରେ କ୍ଷମତା ଥିଲେ ମୁଁ ଘୋଷଣା କରି ଦିଅନ୍ତି ଯେ, ଚାକିରୀ ପାଇଁ ଦରଖାସ୍ତରେ ବା କୌଣସି ସରକାରୀ କାଗଜପତ୍ରରେ କେହି ନିଜର ଜାତି ଉଲ୍ଲେଖ କରିବେ ନାହିଁ । କୌଣସି ପାଠ୍ୟ ପୁସ୍ତକ, ଉପନ୍ୟାସ ଇତ୍ୟାଦି କେଉଁଥିରେ ଜାତିର କଥା ଉଲ୍ଲିଖିତ ହେବ ନାହିଁ, ଏତିକରେ ତ ଜାତିର ଠାଣ ବାରପଣ କମିଯିବ । ଗାଁରେ ଜାତି ଯେଉଁ ଧରଣର ଅଛି; ସେତ କ୍ରମଶଃ ଅପସରି ଯାଉଛି; ମାତ୍ର ତଥା କଥିତ ଶିକ୍ଷିତ ଲୋକେ ଚାକିରୀ ବାକିରୀ ଓ ରାଜନୈତିକ ପ୍ରାଧାନ୍ୟ ପାଇଁ ଜାତିକୁ ଆବୁରୁଛନ୍ତି । ତଦ୍ଵାରା ସେ ଅର୍ଦ୍ଧମୃତ ଅନୁଷ୍ଠାନ ପୁଣି ଜୀବନ ପାଉଛି । ତାକୁ ତ ସହଜରେ ବନ୍ଦ କରି ଦିଆଯାଇ ପାରନ୍ତା ।"

ହରୀଶ୍ଚନ୍ଦ୍ର ବାବୁ କିଛିକ୍ଷଣ ଚୁପ୍ ରହି ତା ପରେ କହିଲେ, "ଆଚ୍ଛା, ସେ ସବୁ ବିଷୟ ପରେ ହେବ । ତୁମେ ଆସିଲ କୁଆଡେ ? ସେ କଥା ମଧ୍ୟ ପରେ ହେବ । ଆଗେ ଗାଧୁଆ ପାଧୁଆ କର, ଥଣ୍ଡା ହୁଅ । ପହଞ୍ଚିବା ମାତ୍ରକେ ବଡ଼ ବଡ଼ ବିଷୟର ଆଲୋଚନା ଆରମ୍ଭ କରି ଦେଲ ?"

ଲାଲମୋହନ ବାବୁ ମୁରୁକି ହସାଦେଇ କହିଲେ, "ରାତି ସାରା ରେଳରେ ଚାଲି ଚାଲି ଥକି ପଡିଛି ନା କଣ ? ବିଶ୍ରାମ ନକଲେ କଥାବାର୍ତ୍ତା କରି ପାରିବ ନାହିଁ ?"

ହରୀଶ୍ଚନ୍ଦ୍ର ବାବୁ ବନ୍ଧୁ ସ୍ନେହରେ ଲାଲମୋହନବାବୁଙ୍କ ପିଠିରେ ହାତ ପକାଇ କହିଲେ, "ସୂର୍ଯ୍ୟ ଚନ୍ଦ୍ର ବରଂ ବିଶ୍ରାମ ଖୋଜିବେ କିନ୍ତୁ

ଲାଲମୋହନ ବାବୁଙ୍କର ବିଶ୍ରାମ ନେବା ନାହିଁ । କଣ ଆଉ ସବୁ ଗଡ଼ଜାତ ଖବର ?"

ଲାଲମୋହନ ବ୍ରଜକିଶୋର ବାବୁଙ୍କ ଆଡ଼କୁ ଅନାଇ କହିଲେ, "ଗଡ଼ଜାତରେ ସବୁଆଡ଼େ ମହାଉତ୍ତେଜନା । ମୁଁ ତ ଆଶା କରୁଛି, ଅଳ୍ପ ଦିନେ ହିଁ କରି ଚାରିଆଡ଼େ କିଆଁ ଜଳି ଉଠିବ । କିଏ ଜାଣେ ସେଥିରେ କେତେ ଲୋକ ଆହୁତ ହୋଇ ପଡ଼ିଯିବେ । ସେତେବେଳେ ଆପଣମାନେ ଆଶ୍ରମ ଛାଡ଼ି ଜନତା ସଙ୍ଗରେ କାନ୍ଧକୁ କାନ୍ଧ ମିଳାଇବେ କି ?"

ବ୍ରଜ କିଶୋର ବାବୁ ହଠାତ୍ କହିଲେ, "ଆମେ ତ ଏକ କାମରେ ଲାଗିଛୁ । ଆପଣମାନେ ତା କରନ୍ତୁ ?"

ଲାଲମୋହନ ବାବୁ—"କି କାମ ଆପଣମାନେ କରୁଛନ୍ତି ? ସେବର୍ଷ ଏପରି କାମ କଲେ କିଛି ଲୁଆଡ଼େ ହେବ ନାହିଁ ।"

ଦିବ୍ୟସିଂହ ବାବୁ ହସି ଉଠି କହିଲେ, "କଥା କହିବା ବେଳେ ଲାଲମୋହନର ମୁହଁରେ ବାଡ଼ୁଲ ବାଜେ ନାହିଁ । କେହି କାହାର କାମରେ ଦୋଷ ଦେଖିବା ଉଚିତ ନୁହେଁ । କେତେ ସମସ୍ୟା ଦେଶରେ ପଡ଼ିଛି । ଯେ ଯେତିକି ପାରୁଛି ନିଜରୁଚି ଅନୁସାରେ ସେ ସେତିକି କରୁ । ପରସ୍ପର ଠେଲା ପେଲାରେ ଲାଭ କଣ ? ସେହି କଥା ମୁଁ ସେଦିନ କୁମୁଦିନୀକୁ କହୁଥିଲି । ଅଚ୍ଛା ଲାଲମୋହନ, କୁମୁଦିନୀ କେଉଁଠି ? ଭଲ ଅଛନ୍ତି ?"

ଲାଲମୋହନ ବାବୁ—"ହଁ ଭଲ ଅଛନ୍ତି । ସେ ବର୍ତ୍ତମାନ ପୁରୀରେ । ମୁଁ ତ ସେଇଁଠୁ ଆସୁଛି ।"

ଦିବ୍ୟସିଂହ ବାବୁ କହିଲେ, "ଏତେ ଭାବ ପ୍ରବଣ ସେ, ବ୍ରହ୍ମ-ଗିରିରେ ଖାଲି ତ ସେ କାନ୍ଦିଲେ ।"

ଲାଲମୋହନ ବାବୁ ବିସ୍ମିତ ହୋଇ ପଚାରିଲେ, "କାହିଁକି" ?

ଦିବ୍ୟସିଂହ ବାବୁ—"ମୁଁ ଜାଣେ ? ଯେତେ ପଚାରିଲି କିଛି କହିଲେ ନାହିଁ ।"

ଲାଲ ମୋହନ ବାବୁ ଗମ୍ଭୀର ହୋଇଗଲେ । କିଛି ସମୟ ତଳକୁ ଚାହିଁ ବସି ରହିଲେ । ତାପରେ ଉଠିଲେ ଗାଧୁଆ ପାଧୁଆ କରିବା ପାଇଁ ।

ଖାଇବା ବେଳେ ବିବସିଂହ ବାବୁଙ୍କ କୋଠାଘରେ ଆଉ କେହି ନାହାନ୍ତି। ଖାଇସାରି ସେ ଓ ଲାଲମୋହନ ବାବୁ ଦୁହେଁ ନିଭୃତରେ କଥାବାର୍ତ୍ତା ହେଉଛନ୍ତି । ଲାଲମୋହନ ବାବୁଙ୍କ ମୁହଁରୁ ତାଙ୍କର କୁମୁଦିନୀ ସହିତ ମିଳାମିଶା କେତେଦୂର ଅଗ୍ରସର କରି ଯାଇଛି, ସବୁ ଧୀରଭାବରେ ଶୁଣି ବିବ୍ୟସିଂହ ବାବୁ କହିଲେ, "ତୁମେ ସେ ବାଳିକାର ସମସ୍ତ ବିବରଣ ଜାଣି ନାହଁ । ଅଥଚ ଏତେ ଦୂର ଗଡ଼ିଗଲ କିପରି ?"

ଲାଲ ମୋହନ ବାବୁ—"ଧରି ନିଅନ୍ତୁ ତାର ଅତୀତ ଅଛି ଖରାପ । ସେଥିରେ ଯାଏ ଆସେ କଣ । ମୋର ସ୍ୱଭାବ ତ ଆପଣ ଜାଣନ୍ତି । ମୁଁ ସବୁବେଳେ ଉତ୍ତେଜନାରେ ରହିବା ପାଇଁ । ନ ହେଲେ ମୋର ଶିରା ପ୍ରଶିରାରେ ରକ୍ତ ପ୍ରବାହ ଶିଥିଳ ହୋଇଗଲା ପରି ଜଣାପଡ଼େ । ତେଣୁ ମନ ଯେତେବେଳେ ଦୌଡ଼େ କେଉଁଠି ହେଲେ କିଛି ଆନନ୍ଦ ପାଇବା, ସେତେବେଳେ ମୁଁ ଏକ ବିରାଟ ଶୂନ୍ୟ ଅନୁଭବ କରେଁ । ଆପଣ ଜାଣନ୍ତି, ମୋର ପ୍ରଥମ ସ୍ତ୍ରୀ ସହିତ ସମ୍ପର୍କ । ସେ ବିଷୟରେ ମୁଁ ତ କେତେ ଥର ଆପଣଙ୍କୁ କହିଛି । ମୁଁ କରିବି କଣ ?"

ବିବ୍ୟସିଂହ ବାବୁ—"ମୁଁ ବୁଝୁଛି—ମାତ୍ର ଏ ବିଷୟରେ ତୁମେ ନିଶ୍ଚିତ ଯେ, କୁମୁଦିନୀ ସହିତ କିଛି ଦିନ ପରେ ସେହି ପରି ଶିଥିଳତା ଅନୁଭବ କରିବ ନାହିଁ, ଯେପରି କଣାମଣିଠାରେ ଘଟିଲା ?"

ଲାଲମୋହନ—"ହଁ, ମୁଁ ସେ ବିଷୟରେ ନିଶ୍ଚିତ ।"

ଦବ୍ୟସିଦ୍ଧ ବାବୁ—"ଏତେ ଶୀଘ୍ର କଷ୍ଟିତ ବୋଲି ଅନୁଭବ କରୁଛ ? ମାତ୍ର ମୋତେ ତ ବୋଧହେଉଛି, ଏଠି ମଧ୍ୟ ସେହିପରି ହେବ । କାରଣ ଯେ କୌଣସି ବସ୍ତୁ ପୁରୁଣା ହୋଇଗଲେ ସେଠି ଆଉ ଉତ୍ତେଜନା ରହେନାହିଁ । ଯେ ସଙ୍ଗୀତ ନୂଆ ଶୁଣିଲାବେଳେ ପ୍ରାଣକୁ ଉଲ୍ଲସିତ କରେ, ସେଥିକୁ ଏକାଧିକଥର ଶୁଣିଲେ, ସେଥିରେ ଏକ ସ୍ମରଣ ଆସି ଥାଏ । ତା ଛଡ଼ା ଆଉ ଏକ ଦିଗ ଅଛି ।" ଏତିକି କହି ଦବ୍ୟସିଦ୍ଧ ବାବୁ ନୀରବ ହୋଇ ରହିଗଲେ ।

ଲାଲମୋହନ ବାବୁ ଉତ୍ସୁକ ହୋଇ ଗୃହିଁ କିଛିକ୍ଷଣପରେ ପଚାରିଲେ—"କଅଣ ?"

ଦବ୍ୟସିଦ୍ଧ ବାବୁ ଧୀରେ ଧୀରେ କହିଲେ, "ଏ ଜୀବନରେ ଆଉ ଆନନ୍ଦ ଖୋଜି ଲାଭ କଅଣ ? ସେହି ଆନନ୍ଦଟିକୁ ତ ଆମେ ଦେଶ ପାଖରେ ବଳି ଦେଇଛୁ ବୋଲି ଭାବୁ । ସେହି ଆନନ୍ଦର ଅଭାବହି ଆମକୁ ଆନନ୍ଦ ଦେବା ଉଚିତ । ଯେ ଆନନ୍ଦ ତୁମେ ଖୋଜୁଛ, ସେହି ଆନନ୍ଦ ତୁମ ଜୀବନ ସହିତ ଖାପ ଖାଇବ ନାହିଁ । କାରଣ ସେହି ଆନନ୍ଦଟିକକ ପାଇଁ ତା ପଛରେ ବହୁତ ଲାଗିବାକୁ ହେବ, ଯାହା ମୁଁ ଜାଣେ ତୁମେ କରିବାକୁ ପ୍ରସ୍ତୁତ ନୁହଁ । ତାହୋଇଥିଲେ କଣାମଣି ବୋଧହୁଏ ସେହି କୁମୁଦିନୀ ପରି ହୋଇଥାଆନ୍ତା । ମୁଁ ବୁଝି ପାରୁଛି, ସାଧାରଣ କାର୍ଯ୍ୟରେ ଆଶା ନିରାଶାର ଦୌଡ଼ାଦୌଡ଼ି ଭିତରେ ମନ ଯେତେବେଳେ କ୍ଲାନ୍ତ ହୁଏ, ସେତେବେଳେ ସେ ସେଠୁଁ ଅପସରି ଯାଇଁ ଶୀତଳ ଛାୟାରେ ଟିକେ ବିଶ୍ରାମ ନେବା ପାଇଁ ଗୃହେଁ । ମାତ୍ର ସେହି ଛାୟାଟିକୁ ବଜାୟ କରି ରଖିବା ପାଇଁ ଗଛ ମୂଳରେ ଟିକେ ପାଣି ଦେବାଠାରୁ ଆରମ୍ଭ କରି କେତେ କାମ ଯେ କରିବାକୁ ହେବ, ହୁଏତ ସେହି କାମରେହିଁ ଲାଗିଯିବ । ଭାବି ଦେଖ ତୁମେ ଜଣେ ଗୃହସ୍ଥର ଜୀବନ ଯାପନ କରିବାରେ ଲାଗିଲ । କିଏ ଏ ଅତ୍ୟାଗୃହିତଙ୍କୁ ଉତ୍ସାହ ଦେବ । କିଏ ନିର୍ଭୀକ ନଥିଲେ ସମସ୍ତଙ୍କୁ ସାହସ ସାନ୍ତ୍ୱନା ଦେବ ? ଏଇ ତ ତୁମେ କହୁଛ, ଗଡ଼ଜାତ ସାରା କଅଁ ଲାଗିବା ଉପରେ । କିଏ ଜାଣେ

ସେତେବେଳେ ତୁମର ଅବସ୍ଥା କଣ ହେବ ? ମାତ୍ର ଯଦି ତୁମେ ନିଜର ଆନନ୍ଦ ପାଇଁ ଆଉ ଜଣଙ୍କୁ ସଙ୍ଗରେ ରଖ, ହୁଏତ ତୁମେ, ସେତେଦୂର କାର୍ଯ୍ୟକ୍ଷମ ହୋଇ ପାରିବ ନାହିଁ ।"

ଲଲମୋହନ ବାବୁ—"ଯଦି ସେ ଦିଗରୁ କିଛି ଅସୁବିଧା ନ ହୁଏ, ତେବେ ଅନ୍ୟ କୌଣସି ଦିଗରୁ କିଛି ଆପତ୍ତି ଅଛି କି ?"

ଦିବ୍ୟସିଂହ ବାବୁ—"କାହିଁକି ସେ ଆଡକୁ ମନ ଦେଉଛ ? ମୋତେ କାହିଁକି ସେ କଥାଟା ଅବାଗିଆ ଲାଗୁଛି ।"

ଲଲମୋନ ବାବୁ କିଛି ନ କହି ଚୁପ୍ ହୋଇ ଗମ୍ଭୀରଭାବରେ ବସିଥିବା ସପ ଉପରେ ଆଙ୍ଗୁଳିରେ ଗାର କାଟୁଥାନ୍ତି ।

କିଛି ସମୟ ପରେ ଦିବ୍ୟସିଂହ ବାବୁ ପୁଣି କହିଲେ, "ଘରକୁ କେବେ ଯାଇଥିଲ ?"

ଲଲମୋହନ ବାବୁ—"ସାତ ଆଠ ମାସ ହେଲା ଯାଇଥିଲି, ଦିନେ ଦୁଇ ଦିନ ପାଇଁ ।"

ଦିବ୍ୟସିଂହ ବାବୁ—"ଚିଠି ପତ୍ର ବରାବର ପାଉଥିବ ।"

ଲଲମୋହନ ବାବୁ—"ଚିଠିପତ୍ର ଦେବ କିଏ ? ଆପଣ ତ ଜାଣନ୍ତି ଭାଇମାନେ ମୋ କାମକୁ ପସନ୍ଦ କରନ୍ତି ନାହିଁ । ମୋର ସ୍ତ୍ରୀ ତ ଲେଖାପଢ଼ା ଜାଣେ ନାହିଁ । ଆଉ କିଏ ଅଛି ଚିଠିପତ୍ର ଦେବ ?"

ଦିବ୍ୟସିଂହ ବାବୁ—"ସେ ଦିଗରୁ ତୁମେ ମୋରି ଭଳି ପ୍ରାୟ ନିଶ୍ଚିନ୍ତ ।"

ଲଲମୋହନ ବାବୁ ଅନ୍ୟମନସ୍କ ଭାବରେ ଏକ ଦୀର୍ଘ ହୁଁ ମାରିଲେ । ଦିବ୍ୟସିଂହ ବାବୁ ପୁଣି କହିଲେ, "ଛାଡ଼, ଏ ଜୀବନରେ ସବୁ କଥା ଏକ ସଙ୍ଗରେ ମିଶା କରିନାହିଁ । ଦାମ୍ପତ୍ୟ ଜୀବନର ସୁଖ ଏ ଜନ୍ମରେ ଅନ୍ତତଃ ନାହିଁ । ଏହିପରି ମନକୁ ମାରିଦେଇ ଲାଗ କାମରେ ।"

ଲଲମୋହନ ବାବୁ କିଛି କହିଲେ ନାହିଁ । ମାତ୍ର ତାଙ୍କ ମନରେ ବଡ଼ ବ୍ୟଥିତ ହେଲେ । କୌଣସି ପ୍ରକାରେ ସେ ଦିବ୍ୟସିଂହ ବାବୁଙ୍କୁ ରାଜି କରାଇବା ପାଇଁ ଚେଷ୍ଟା କଲେ । ସେ କହିଲେ, "ଯଦି ସେ ଓ ମୁଁ ବିବାହ କରିବାକୁ ମନସ୍ଥ କରୁଁ, ଆପଣ ଆମ ବିବାହରେ ଯୋଗଦାନ କରିବେ ?"

ଦବ୍ୟସିଂହ ବାବୁ ପ୍ରସନ୍ନ ଭାବରେ କହିଲେ, "ଯୋଗ ଦେବାରେ ମୋର ଆପତ୍ତି ନାହିଁ । କାରଣ ବିବାହର ଦାୟିତ୍ୱ ତ ମୋର ନୁହେଁ, ବନ୍ଧୁର ଦାୟିତ୍ୱ ତୁଲାଇବା ପାଇଁ ଯେପରି ବର୍ତ୍ତମାନ ପରାମର୍ଶ ଦେଉଛି, ସେତେବେଳେ ସେହିପରି ସେହି ହିସାବରେ ଯୋଗ ଦେବ ।"

ଲଲମୋହନବାବୁ—"ମୁଁ ଚାହେଁ ଯେ, ଏ ବିବାହ ଯେମିତି ବିରୁଦ୍ଧ ଲୋକମତ ସୃଷ୍ଟି ନ ହେଉ ।"

ଦବ୍ୟସିଂହ ବାବୁ "ଯଦି ବିବାହହିଁ କରିବ, ତେବେ ଲୋକମତ ପ୍ରତି ଦୃଷ୍ଟି କାହିଁକି ? ଗୃହଆଡ଼େ ସମସ୍ତେ ଜୟ ଜୟକାର କରୁଥିବେ ଓ ତାହାଙ୍କ ଢଙ୍ଗରେ ତୁମର ସବୁ କାମ ତୁମେ କରିବ, ଏପରି ଆଶା ବା କାହିଁକି କରୁଛ ?"

ଲଲମୋହନ ବାବୁ—"ନା ମୁଁ ସେ ବିଷୟରେ ଚିନ୍ତିତ ନୁହେଁ କିନ୍ତୁ କୁମୁଦିନୀ—"

ଦବ୍ୟସିଂହ ବାବୁ—ଅଚ୍ଛା, ଭଲ, ସେ କହୁଥିଲା ତା ଘର ବାଲେଶ୍ୱର ଜିଲ୍ଲାରେ କେଉଁଠି ଜାଣ ?

ଲଲମୋହନ ବାବୁ—"ମୁଁ କିଛି ତାର ଅତୀତ ସମ୍ବନ୍ଧରେ ଜାଣେ ନାହିଁ ।"

ଦବ୍ୟସିଂହ ବାବୁ—"ଏ ତ ବଡ଼ କୌତୂହଳ ଜନକ । ମୁଁ ତାକୁ ଅଁପ୍ର ଆଶ୍ରମକୁ ଡାକିଥିଲି । ମାତ୍ର ସେ ଯେପରି ଏ ଅଞ୍ଚଳକୁ ଆସିବାକୁ ନାରାଜ, ସେହିପରି ଜଣାଗଲା ।

ଲଲମୋହନ ବାବୁ—"ମାତ୍ର ତାର ତ ଆପଣଙ୍କ ସମ୍ବନ୍ଧରେ ଭାରି ଉଚ୍ଚ ଧାରଣା । ସେ କହେ ଯେ, ଆପଣ ଜଣେ ଅଦ୍ୱିତୀୟ ଆଦର୍ଶ ପୁରୁଷ ।"

ଦବ୍ୟସିଂହ ବାବୁ—"ହଁ ସେ ଜଣେ ଭାବପ୍ରବଣ ବାଳିକା । ପ୍ରଶଂସା କଲେ ବା ନିନ୍ଦା କଲେ ଶେଷ ସୀମାକୁ ଚାଲି ଯାଉଥିବ ।"

ଲଲମୋହନ ବାବୁ—"ବାସ୍ତବିକ ତାର ହୃଦୟ ଏତେ ସରଳ ଓ, ସେବାକାମରେ ଏତେ ମନ ଯେ, ଆପଣ ଜାଣିଲେ ଅବାକ୍ ହୋଇଯିବେ ।"

ଦେବୀସିଂହ ବାବୁ—"ହୋଇଥିବ, ଆଚ୍ଛା, ଏ କଥା ଥାଉ । ଏ ସମ୍ବନ୍ଧରେ ତୁମେ ଯାହା ଭାବ ସ୍ଥିର କରିବ । ବର୍ତ୍ତମାନ ଦେଶର କଥା ପଡ଼ୁ ।"

ଲାଲମୋହନ ବାବୁ—"ଆପଣମାନେ ତ ଦେଶଠାରୁ ନିଜକୁ ଦୂରରେ ରଖୁଛନ୍ତି । ଦେଶର ସମସ୍ୟାକୁ ନିଜ ଉପରକୁ ନେଉ ନାହାନ୍ତି ।"

ଦେବୀସିଂହ ବାବୁ—"ସେ ଭୁଲ କଥା, ତୁମ କାମ ଆମ କାମ ଏକା—ଏ ଫୁଟବଲରେ ଖେଳାଳିଙ୍କ ଭିତରେ ଯେପରି ସହଯୋଗ ରହେ ସେହିପରି ରହିବା ଉଚିତ । ତୁମେ ଆଗରେ ଖେଳୁଛ—ଆମେ ପଛରେ ତୁମକୁ ସାହାଯ୍ୟ କରୁଛୁ ।"

ଲାଲମୋହନ ବାବୁ—"ମୋର କାହିଁକି ଧାରଣା ହୋଇଛି ଯେ, ଏ ପ୍ରକାର ଆଶ୍ରମ ସବୁ ଦେଶ ଉପରେ ବୃଥା ପରି ।"

ଦେବୀସିଂହ ବାବୁ—"ସେ ଭୁଲ ଧାରଣା—ଉତ୍ତେଜନାର ଅଭାବରେ ତୁମେ ଯେପରି ମନକୁ ଅନ୍ୟଆଡ଼େ ଖେଳାଅ, ସେହିପରି ଯେତେବେଳେ ଉତ୍ତେଜନା ନାହିଁ, ଆଶ୍ରମ କରି ସେଇଠି ପୁଣି ଭବିଷ୍ୟତ ପାଇଁ ତିଆରି ହେବାକୁ ଆମେ ଲାଗୁ । ବିବାହ ଆଡ଼ୁ ତୁମ ମନ ଯଦି ମରିଯାନ୍ତା, ତେବେ ତୁମେ ଏପରି ଏକ ଆଶ୍ରମ କରି ବସନ୍ତ ନାଁ ଆଉ କଣ କରନ୍ତେ ? ଏସବୁ ଶାନ୍ତି ସମୟ ଅତିବାହିତ କରିବାର ଉପାୟ । ସମ୍ମୁଖ ସମର ଯେତେବେଳେ ନାହିଁ, ସେତେବେଳେ ପୁଣି ଭବିଷ୍ୟତ ପାଇଁ ଗୁଳି ବାରୁଦ ତିଆରି କରିବା ତ ଦରକାର । ସମ୍ମୁଖ ସମର ହେଲେ ମଧ୍ୟ ଗୁଳି ବାରୁଦ ତିଆରି ତ ଯୁଦ୍ଧର ଏକ ଅଂଶ ।"

ଲାଲମୋହନ ବାବୁ—"ମାତ୍ର ଏ ଫୁଟବଲକୁ ଯେଉଁମାନେ ସବୁ ମନେ କରୁଛନ୍ତି—"

ଦେବୀସିଂହ ବାବୁ—"ସେମାନେ ମଧ୍ୟ ସେହିପରି ଭୁଲ୍ କରୁଛନ୍ତି । ମୁଁ ଜାଣେ ଆମର ଏହି ଆଶ୍ରମରେ ଅନେକ ଏହିପରି ଅଛନ୍ତି, ଯେଉଁମାନେ ମଠରେ ବାବାଜି ଯେପରି ପଡ଼ିଥାନ୍ତି, ସେହିପରି ପଡ଼ିଛନ୍ତି । ସେମାନଙ୍କ

ହାର ଦେଶରେ କାମ ବେଶୀ କଷ୍ଟ ହେବ ନାହିଁ ; ମାତ୍ର ତୁମ ପରି ଲୋକ ଯଦି ଅବସର ସମୟରେ ଏଥିରେ ଯୋଗ ଦିଅନ୍ତେ, ତେବେ ସବୁ ଖେଳାଳିଙ୍କ ଭିତରେ ସହଯୋଗ ସୂତ୍ର ସ୍ଥାପିତ ହୁଅନ୍ତା । ଯେଉଁମାନେ ଆଗରେ ଭଲ ଲଢ଼ନ୍ତି ଓ ଯେଉଁମାନେ ପଛରେ ରହି ସାମଗ୍ରୀ ଯୋଗାଉଛନ୍ତି, ଏ ସମସ୍ତଙ୍କ ଭିତରେ ଏକ କାର୍ଯ୍ୟକାରୀ ସହଯୋଗ ସ୍ଥାପିତ ହୁଅନ୍ତା ।”

ଲଳମୋହନ ବାବୁ—“ଧରନ୍ତୁ, ମୁଁ ଏଠି ରହିଲି । ମୁଁ କରନ୍ତି କଅଣ ?”

ଦିବ୍ୟସିଂହ ବାବୁ—“ବର୍ତ୍ତମାନ କରୁଛ କଅଣ ? ଏଠି ରହିଲେ ନିଜକୁ ଛଅଟି କରିବାର ଅବକାଶ ମିଳନ୍ତା । ଅନ୍ୟ ସବୁ ଆଡୁ ମନ ଗୋଟାଇ ହୋଇ ଆସି କେବଳ ଦେଶକାମ ଓ ଚିନ୍ତାରେ କେନ୍ଦ୍ରୀଭୂତ ହୁଅନ୍ତା । ଆଶ୍ରମ ବୋଲନ୍ତେ—କିଛି ଗୋଟାଏ ଅତି ବଡ଼ ଜିନିଷ ନୁହେଁ ବା ସେଠି ଯେଉଁ-ମାନେ ରହନ୍ତି, ସେମାନେ ଭାରି ବିଚକ୍ଷଣ ଲୋକ—ତାହା ମଧ୍ୟ ନୁହେଁ । ଜଣେ ଦେଶସେବକର କେବଳ ମାତ୍ର ଦେଶଚିନ୍ତା ରହିବ, ସ୍ୱାର୍ଥ ବିଷୟ ଯେନି ଚିନ୍ତା ରହିବ ନାହିଁ —ଏହି ଅଭ୍ୟାସ କରିବା ପାଇଁ ଆଶ୍ରମ ଜୀବନ ଲୋଡ଼ା । ପାରିପାର୍ଶ୍ୱିକ ଅବସ୍ଥା ବିଷୟରେ ଆଖିରେ ଦେଖିବା ଭଳି କାମ କିଛି ନାହିଁ । ସେପରି ସ୍ଥଳେ କଅଣ କଲେ ଦେଶର ମଙ୍ଗଳ ହେବ ସେ ସବୁ କାମର ପରୀକ୍ଷା ନିତାନ୍ତ ଛୋଟ ଆକାରରେ ହେଉ ପଛେ, ନିଜେ କଲେ ମନ ବରାବର ଦେଶ ଚିନ୍ତାରେ ନିଯୁକ୍ତ ଥାଏ । ଶୁଣିଛି, ବଡ ବଡ ଯୋଦ୍ଧା ଟେବୁଲ ଉପରେ ମାନଚିତ୍ର ରଖି ନାନା ପ୍ରକାର ସୈନ୍ୟ ଚାଳନାର କାଳ୍ପନିକ ପରୀକ୍ଷା କରନ୍ତି । ବଡ଼ ବଡ଼ ଖେଳାଳି ନିଜେ ନିଜେ ପାଲ ଉପରେ ଗୋଟି ଚଳାଇ ମନକୁ ସେଇଥିରେ ଲଗାନ୍ତି । ସେହିପରି ଦେଶର ନାନାବିଧ ସମସ୍ୟାର ସମାଧାନ ସମ୍ବନ୍ଧରେ ଚିନ୍ତା କରି, ତାକୁ କାମରେ ନିଜେ ପରୀକ୍ଷା କରିବାରେ ଲାଗିଥିଲେ, ସେଇଥିରେ ଲାଗି ରହିବ । ତେଣୁ ତୁମେ ଆଶ୍ରମରେ ରହିଲେ ବଡ଼ ଭଲ ହୁଅନ୍ତା, ଆଉ ମଧ୍ୟ ତୁମ ସଂସ୍ପର୍ଶରେ ଯେଉଁମାନେ ଆସନ୍ତେ ସେମାନେ ମଧ୍ୟ କିଛି କିଛି ତିଆର ହୁଅନ୍ତେ ।

ଲଲମୋହନ ବାବୁ—"କେଜାଣି କାହିଁକି ମୋର ମନେ ହୁଏ, ଏ ସବୁ ମଠ ପରି ଶେଷରେ ଏହାର ବିରୋଧରେ ଆନ୍ଦୋଳନ କରିବାକୁ ପଡ଼ିବ।"

ବିଦ୍ୟାସିନ୍ଧୁ ବାବୁ—"ତୁମ ଭଳି ଲୋକ ଏହା ଭିତରକୁ ନ ଆସିଲେ ଏସବୁ ସେହିପରି ହୋଇଯିବ, ଏଥିରେ ସନ୍ଦେହ ନାହିଁ। ବିପ୍ଳବ ଓ ସଂଗଠନ ଏହି ଦୁଇ ଭିତରେ ସଂବନ୍ଧ ନ ରହିଲେ ସଂଗଠନର ମୂଲ୍ୟ କିଛି ରହିବ ନାହିଁ। ସେହିପରି ବିପ୍ଳବ ମଧ୍ୟ ସହଜ ସାଧ୍ୟ ହେବନାହିଁ।"

ଲଲମୋହନ ବାବୁ—"ଏ ଅବଶ୍ୟ ଏକ ନୂଆ କଥା। ମୁଁ ଏପରି ଭାବି ନାହିଁ। ମୋର ଧାରଣା ଆପଣ ଯେପରି ଭାବୁଛନ୍ତି, ଆପଣଙ୍କ ଆଶ୍ରମ ବାସୀମାନେ ସେପରି ଭାବନ୍ତି ନାହିଁ।"

ବିଦ୍ୟାସିନ୍ଧୁ ବାବୁ—"ବୋଧହୁଏ ତା ସତ। ସେହି ତ ଅବସାଦର କାରଣ। ଯେଉଁମାନେ ବିପ୍ଳବରେ ବିଶ୍ୱାସ କରନ୍ତି, ସେମାନେ ସଂଗଠନରେ ବିଶ୍ୱାସ କରୁ ନାହାନ୍ତି। ଯେଉଁମାନେ ସଂଗଠନରେ ବିଶ୍ୱାସ କରୁଛନ୍ତି, ସେମାନେ ବିପ୍ଳବରେ ବିଶ୍ୱାସ କରୁ ନାହାନ୍ତି। ଏ ଦୁହିଁଙ୍କ ସହଯୋଗହିଁ ଏକାନ୍ତ ଲୋଡ଼ା।"

ଲଲମୋହନ ବାବୁ—"ଶେଷରେ ମୋତେ ଏ ଆଶ୍ରମକୁ ଆପଣ ଟାଣିବେ କି?"

ବିଦ୍ୟାସିନ୍ଧୁ ବାବୁ—"ଟାଣୁଛି ତ? ଅନ୍ତତଃ ତୁମ ମନକୁ ଶାନ୍ତି ଦେବା ପାଇଁ। ତୁମକୁ ଆହୁରି ବଡ଼ କରିବା ପାଇଁ।"

ଲଲମୋହନ ବାବୁ ଟିକିଏ ହସିଲେ। କିଛିକ୍ଷଣ ନୀରବ ରହି ତା ପରେ କହିଲେ, "କୁମୁଦିନୀ ଓ ମୁଁ ଉଭୟେ ଯଦି ଏଠାରେ ରହୁଁ?"

ବିଦ୍ୟାସିନ୍ଧୁ ବାବୁ—"ଆପତ୍ତି ନାହିଁ। ମୁଁ ତ କୁମୁଦିନୀକୁ ଡାକୁଥିଲି ଆଶ୍ରମକୁ ଆସିବା ପାଇଁ। କିନ୍ତୁ ଜାଣିରଖ ତୁମର ଏ ବିବାହ ପ୍ରସ୍ତାବରେ ମୋର ମତ ନାହିଁ। ଏ ଏକ ଅବ୍ୟାପାର।

ଲଲମୋହନ ବାବୁଙ୍କର ମୁହଁ ଗମ୍ଭୀର ହୋଇଗଲା। ଚିନ୍ତାରେ ଟିକିଏ ନୀରବ ରହି ତାପରେ କହିଲେ, "ଆଚ୍ଛା, ମୁଁ ତାଙ୍କୁ ନେଇ ଏଠାକୁ ଆସିବି। ପରେ ପୁଣି ଏ ବିଷୟ ଆଲୋଚନା ହେବ।"

ବଦ୍ୟସିଂହ ବାବୁଙ୍କଠାରୁ ବିଦାୟ ନେଇ ଲାଲମୋହନ ସିଧା ପୁରୀ ନ ଯାଇ କଟକରେ ପହଞ୍ଚିଲେ । ତାର କାରଣ ଯେଉଁସବୁ ସାଧାରଣ କାର୍ଯ୍ୟର ଭାର ତାଙ୍କ ଉପରେ ଅଛି, ଅନେକ ଦିନୁ ସେ ସବୁର ଖବର ସେ କିଛି ପାଇ ନାହାନ୍ତି । ବିଶେଷତଃ ଯେଉଁ ସବୁ ଗଡ଼ଜାତରେ ଭୂମୂଳ ଆନ୍ଦୋଳନର ସୂତ୍ରପାତ ହେବାରେ ସୂଚନା ମିଳୁଥିଲା ସେଠି କଅଣ ହେଲା ବୁଝିବା ପାଇଁ ତାଙ୍କର କର୍ତ୍ତବ୍ୟ ଜ୍ଞାନ ଜାଗ୍ରତ ହେଲା । କଟକରେ ପହଞ୍ଚି ସେ ବୁଝିଲେ ଯେ, ଢେଙ୍କାନାଳ, ତାଳଚେର, ପାଲଲହଡା, ଗାଙ୍ଗପୁର ପ୍ରଭୃତି ଅନେକ ଗଡ଼ଜାତରେ ଲୋକେ ଖୁବ୍ ମାତିଛନ୍ତି । ଏପରି କି କେତେକ ଜାଗାରେ ଲୋକେ ମେଳି କରି ରାଜ ଦରବାର ଶାସନକୁ ପଙ୍ଗୁ କରି ଦେବା ଉପରେ । ଏଣୁ ରାଜାମାନଙ୍କ ତରଫରୁ ଚିଠି ଯାଉଛି, ଇଂରେଜ ସରକାରଙ୍କୁ ସୈନ୍ୟ ପଠାଇବା ପାଇଁ । ଫୌଜ ଆସିଗଲେ ଅବସ୍ଥା ଅତି ସଙ୍ଗୀନ ହୋଇଯିବ ଓ ନିରସ୍ତ୍ର ଜନତା ସଶସ୍ତ୍ର ସୈନ୍ୟଙ୍କ କପରି ସମ୍ମୁଖୀନ ହେବେ, ଏ ଚିନ୍ତାରେ ଲାଲମୋହନ ବାବୁ ନିମଗ୍ନ ହୋଇଗଲେ । ଅନ୍ଧାର ରାତିରେ ବିଜୁଳି ମାରିଲା ପରି ତାଙ୍କ ମନରେ ଏକ ଚିନ୍ତା ଝଲସି ଗଲା ଯେ, ସେ ନିଜେ ଯାଇଁ ଜନତାଙ୍କୁ ଉଦ୍‌ବୁଦ୍ଧ କରାଇବେ, କପରି ବନ୍ଧୁକ ଧାରୀ ସୈନ୍ୟଙ୍କ ସମ୍ମୁଖୀନ ହେବାକୁ ହେବ । ଦୁର୍ଭିକ୍ଷରେ, ମହାମାରୀରେ ଲକ୍ଷ ଲକ୍ଷ ହଜାର ହଜାର ମରି ଯାଉଛନ୍ତି, ଅଥଚ ସେ ମରଣ ସମ୍ପୂର୍ଣ୍ଣ ନିରର୍ଥକ । ମାତ୍ର ସାର୍ଥକ ମରଣ ଲକ୍ଷ ଲକ୍ଷଙ୍କର ଘଟୁ । ରାହୁ ଗ୍ରାସ କଲାପରି ଯେଁ ବିକଟଦନ୍ତ ଜନତାଙ୍କୁ ଗ୍ରାସ କରୁଛି, ସେ ଛିଡ଼ି ପଳାଉ ।

ଏହି ଚିନ୍ତାକୁ ନିଜ ମନରେ ଖେଳାଇ ଖେଳାଇ ଲଳମୋହନ ବାବୁ ଏକ ଅପୂର୍ବ ଉତ୍ତେଜନା ଅନୁଭବ କଲେ । କିଛି ଦିନ ପାଇଁ କୁମୁଦିନୀଙ୍କ ଚିନ୍ତାରୁ ସେ ମୁକ୍ତ ବୋଲି ଭାବି ସେ ଦୁଃଖିତ ହେଲେ ତାହା ନୁହେଁ, ବରଂ ସେ ସେଥିରେ ଖୁସି ହେଲେ । କାରଣ ତାହାହିଁ ତାଙ୍କର ସ୍ୱଭାବ । ମାତ୍ର ସେ କୁମୁଦିନୀଙ୍କଠାକୁ ଏକ ପତ୍ର ଲେଖିବା ଉଚିତ ମନେକଲେ । ଛୋଟ ଚିଠିଏ, ସେଥିରେ ପ୍ରେମିକର ଭାବର ଅବତାରଣ ଆଦୌ ନାହିଁ । କେବଳ ଲେଖା ଅଛି ଯେ, "ଦରିଦ୍ରସିଂହ ବାବୁଙ୍କ ସହିତ ବିବାହ ବିଷୟରେ ଆଲୋଚନା ହେଲା । ପୁଣି ତାଙ୍କ ସହିତ ଆଲୋଚନା ହେବ; ମାତ୍ର ସେ ବୁଦ୍ଧିଙ୍କୁ ଆଶ୍ରମରେ ରହିବା ପାଇଁ ମଧ୍ୟ ଆଗ୍ରହ ପ୍ରକାଶ କରିଛନ୍ତି । ବର୍ତ୍ତମାନ ସୈନ୍ୟ ଆସୁଛନ୍ତି, ଜାଗ୍ରତ ଜନତାକୁ ଦବାଇବା ପାଇଁ ତାର ପ୍ରତିକାର କରିବାକୁ ହେବ । ତେଣୁ ସେ କିଛି ଦିନ ପୁରୀ ଯାଇ ପାରିବେ ନାହିଁ । ମଝିରେ ମଝିରେ ଚିଠି ଲେଖୁଥିବେ ।" ଏତିକି ମାତ୍ର ଲେଖି କୁମୁଦିନୀଙ୍କଠାକୁ ପଠାଇ ଦେଇ ସେ ଦୀର୍ଘନିଶ୍ୱାସ ପକାଇଲେ । ଏ ଚିଠି ଖଣ୍ଡ ଡାକଘରକୁ ପଠାଇ ଦେବା ପରେ ସେ ଆଉ ତାଙ୍କ ବିଷୟରେ କିଛି ଭାବି ନାହାନ୍ତି । ଏଣିକି କିପରି ସୈନ୍ୟଙ୍କୁ ମୁକାବିଲା କରିବାକୁ ହେବ ଏହି ଏକମାତ୍ର ଚିନ୍ତା ।

  

କଟକରେ ନ ରହି ସେ ସିଧା ଢେଙ୍କାନାଳ ଚଳେ । ଯେଉଁ ଗାଁରେ ପ୍ରଥମେ ପହଞ୍ଚିଲେ, ସେଠି ଦେଖିଲେ ଯେ ରାଜା ଘରର କୌଣସି ଲୋକଙ୍କୁ ସେ ଗାଁକୁ ଛାଡି ଦେଉ ନାହାନ୍ତି । ଯେ ରାଜ ସପକ୍ଷ ଲୋକ ତାର ସେ ଗାଁରେ ସ୍ଥାନ ନାହିଁ । ତାକୁ ବାଧ୍ୟ ହୋଇ ସେ ଗାଁ ଛାଡିବାକୁ ହୋଇଛି । ନ ହେଲେ ତା ଘରେ ନିଆଁ ଲଗାଇ ଦେବେ । ତା' ବିଲରୁ ଫସଲ ହୋଛି ନେବେ ବା ତା'ଘର ଲୁଟ କରିନେବେ । ଜଣକୁ ଏହିପରି କରିବାକୁ ଅନ୍ୟମାନେ ସମସ୍ତେ ପ୍ରଜାପକ୍ଷ ହୋଇ ଗଲେଣି । ବାସ୍ତବିକ ଉକ୍ରଟ ରାଜ ଦ୍ରୋହ ଓତଃପ୍ରୋତ ଭାବରେ ଯେଉଁ ଠି ଲୋକଙ୍କ ହୃଦରେ ପ୍ରବେଶ

କରେ, ସେଠି ରାଜ ସପକ୍ଷ ହୋଇ କି ବଡ଼ମ୍ବନା ତା ଲାଲମୋହନ ବାବୁ ନିଜ ଆଖିରେ ଦେଖି ସ୍ତମ୍ଭୀଭୂତ ହୋଇଗଲେ ।

  

ଗୋଟିଏ ଦଗରେ ସାଧାରଣ ଲୋକଙ୍କ ଦୃଷ୍ଟି ନ ଥିଲା । ସେ ହେଉଛି ସମୁହଭାବରେ ଚିନ୍ତା କରିବା । ସମସ୍ତେ ମନେ କରୁଥିଲେ ତାଙ୍କର ଗାଁଟିଏ ସମୁଦାୟ ଜଗତ । ସେହି ହିସାବରେ ସବୁ ଚିନ୍ତାକରି କାମ କରୁଥିଲେ । ମାତ୍ର ଲାଲମୋହନ ବାବୁ ଗାଁରୁ ଗାଁ ଖବର ଦିଆ ନିଆର ବ୍ୟବସ୍ଥା ଓ ଢେଙ୍କାନାଳ ସାରା ସମସ୍ତେ ଯେପରି ଗୋଟିଏ ବାଟରେ ଚାଲିବେ, ତାର ବ୍ୟବସ୍ଥା କରାଇଲେ । ପ୍ରତ୍ୟେକ ଗାଁରେ ଜଣେ ସର୍ଦ୍ଦାର, ସେ ସର୍ଦ୍ଦାର-ମାନଙ୍କୁ ନେଇ ଗୋଟିଏ କମିଟି ଓ ସେଥିରେ ଜଣେ କର୍ତ୍ତା ଏବଂ ସେ କର୍ତ୍ତା ଯାହା କହିବେ ସମସ୍ତେ ମାନିବେ । ଏହିପରି ଏକ ସୁନ୍ଦର ସଙ୍ଗଠନ ସେ ଛିଡ଼ା କଲେ । ରାଜ ହୁକୁମ କେହି ତ ମାନୁ ନଥିଲେ । ମାତ୍ର ସୈନ୍ୟ ଆସିଲେ ସେମାନଙ୍କୁ ସୁଦ୍ଧା କେହି ମାନିବେ ନାହିଁ । ସେମାନଙ୍କୁ କୌଣସି ପ୍ରକାର ସାହାଯ୍ୟ କରିବେ ନାହିଁ । ସମସ୍ତେ ଛାତିରେ ଗୁଳି ସହିବେ । ଯାହାର ପିଠିରେ ଗୁଳି ବାଜିବାର ଦେଖାଯିବ, ସେ ରାଜପକ୍ଷ ଲୋକ ବୋଲି ଧରି ନିଆଯିବ । ଏ ବିଷୟରେ ସର୍ଦ୍ଦାରମାନଙ୍କୁ ଲାଲମୋହନ ବାବୁ ବୁଝାଇ ଅବସ୍ଥା ଏପରି ସୃଷ୍ଟି କଲେ ଯେ, ବାସ୍ତବିକ ସେଠି ରାଜ ଶାସନ ନାହିଁ । ଏହିପରି କାର୍ଯ୍ୟତଃ ହୋଇଗଲା । ଲୋକଙ୍କ ଭିତରେ ଯେ ଉତ୍ସାହର ପ୍ରବାହ ସେଥିରେ ଏ ସବୁ କରିବା ପାଇଁ ଲାଲମୋହନଙ୍କୁ ବେଶି ସମୟ ଲାଗି ନ ଥିଲା ।

  

ସାତ ଆଠ ଦିନପରେ ଗୋରା ସୈନ୍ୟ ଆସି ଢେଙ୍କାନାଳରେ ପହଞ୍ଚିଲେ । ଚାରିଆଡ଼େ ଏ ଖବର ବ୍ୟାପିଗଲା । ଘର ଝିଆବୁଆଣୀ ସହିତେ ସେ ସୈନ୍ୟଙ୍କୁ ଖଣ୍ଡୁ ଭୂଷା ଉଡ଼ାଇବେ ବୋଲି ମନେ କଲେ । ସାଧାରଣ ଲୋକଙ୍କ ଭିତରେ ସେତେବେଳେ ଅପୂର୍ବ ଉତ୍ତେଜନା । ଲାଲମୋହନ ସେତେବେଳେ ଆଉ ମଣିଷ ହୋଇ ନ ଥାନ୍ତି । ସେ ସେତେବେଳେ ଅଗ୍ନି

କଣ। ତୋଫାନରେ ଉଠିଲା ଜଳ ବୃଦ୍‌ଆଡେ ସଗଠନ ଅନୁସାରେ କାମ ହେଉଛି କି ନା ଦେଖି ବୁଲୁ ଥାଆନ୍ତି ।

ପ୍ରଥମେ ସୈନ୍ୟମାନେ ଆସି କଣ କରିବେ କିଛି ବୁଝି ପାରିଲେ ନାହିଁ । କାରଣ ଲଢେଇତ କେଉଁଠି ନାହିଁ, ସେମାନେ ଲଢିବେ କାହା ସହିତ । ଶେଷରେ ଇଂରାଜ ସରକାରଙ୍କ ତରଫରୁ ଜଣେ ଗୋରା ହାକିମ, ଯେ ସୈନ୍ୟମାନଙ୍କ ନିୟନ୍ତ୍ରଣ କରିବାର ଅଧିକାରରେ ଥିଲେ ସେ ବୁଝି କଲେ ଯେ, ଗାଁକୁ ଗାଁ ଘେରାଉକରି ଲୋକମାନଙ୍କ ଉପରେ ଅତ୍ୟାଚାର କରାଯାଇ, ଯେପରି ଲୋକେ ମେଳ ଭାଙ୍ଗି ଦେବାକୁ ବାଧ ହେବେ । ଏହି ନିର୍ଦ୍ଦେଶ ଅନୁସାରେ ଗୋଟିଏ ଗାଁକୁ ସୈନ୍ୟମାନେ ଘେରାଉ କଲେ । ଗାଁ ଛାଡି ପଳାଇବାର କାହାର ସାଧ ନାହିଁ । ତାପରେ ରଜାଘର ପାଇକମାନେ ବନ୍ଧୁକ ନେଇ ଗାଁ ଭିତରେ ପଶି ଘର ଘର ଲୁଟି କରି ସ୍ତ୍ରୀ ମାନଙ୍କ ସମ୍ମାନ ଉପରେ ହସ୍ତକ୍ଷେପ କରିବାରେ ଲାଗିଲେ । ଗାଁ ସାରା ଯେତେ ଠେକା ଥିଲେ, ସର୍ଦ୍ଦାରଙ୍କ କଥା ଅନୁସାରେ ଲାଠି, ବାଡି, କାତି, କୁରାଢ଼ି, ଯାହା ଘରେ ଯାହା ଥିଲା ସବୁ ନେଇ ଅତ୍ୟାଚାରୀମାନଙ୍କ ସମ୍ମୁଖୀନ ହେଲେ । ଅବସ୍ଥା ଏହିପରି ହେଲା, ଗାଁ ଚାରି ପାଖ ଇଂରେଜ ସୈନ୍ୟ ଘେରିଛନ୍ତି । ଗାଁ ଭିତରେ ରଜାଘର ପାଇକ ପ୍ରାୟ ପଚିଶ ଜଣ ବନ୍ଧୁକ ଧରି ଘର ଘର ପଶି ଅତ୍ୟାଚାର ଚଳାଉଛନ୍ତି ।

ଗାଁ ଯୁବକ ପ୍ରାୟ ୨୫।୩୦ ଜଣ ଖୁବ୍ ଖୋଜା ଖୋଜି କରି ୧୦।୧୨ ଖଣ୍ଡ ଲାଠି; ୫।୭ ଖଣ୍ଡ ଦା; ୨।୪ ଖଣ୍ଡ କୁରାଢ଼ି ଓ କାତି ନେଇ ଆସି ପହଞ୍ଚି-ଛନ୍ତି । ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଏହି ସାଜ ସରଞ୍ଜାମ ନେଇ ଲଢ଼ିବାକୁ ଆସିବା ୨୫।୩୦ ଜଣ ଠେକାଙ୍କୁ ଦେଖି ପଚିଶ ଜଣ ବନ୍ଧୁକଧାରୀ ପାଇକ ଉଦ୍ଧୁରେ ପଳାଇଗଲେ । ତା'ପରେ ଗୋରା ସୈନ୍ୟଙ୍କୁ କାମ ଜୁଟିଲା । କାରଣ ଲଢ଼େଇ ଆରମ୍ଭ ହୋଇଗଲା । ତେଣୁ ସେମାନେ ଗୁଳି ଚଳାଇଲେ । ପ୍ରାୟ କୋଡିଏ ଜଣ ଲୋକ ମରିଗଲେ । ତାପରେ ବଳକା ଥିବା ସୈନ ସୈନ୍ୟ ଅନ୍ୟ ଗାଁକୁ ଚାଲିଲେ ।

ଏହାପରେ ଗାଁକୁ ଗାଁ ଚାଲିଲା—ଘର ଲୁଟ, ପାଶବିକ ଅତ୍ୟାଚାର, ବେଗୀ, ମୁମୂର୍ଷୁ ନାରୀ ବନ୍ଧୁକ ଗୁଳିରେ ମରି ପଡ଼ିଥିବା ମୃତ୍ଦେହକୁ ଦେଖି ଲାଲମୋହନ ଶଙ୍କି ଗଲେ। ସେ ଭାବନ୍ତି ଯେ, ଜାତୀୟ ସଙ୍କଳ୍ପ ମଜଭୁତ ହୋଇ ପରାଧୀନତାର ସମ୍ମୁଖୀନ ହେଲେ, ପରାଧୀନତା ଯେତେ ବଳଶାଳୀ ହେଉ ପଛକେ ଶେଷରେ ପରାସ୍ତ ହେବ। ଏ ଏକ ନିଗୁଢ଼ ତଥ୍ୟ। ମାତ୍ର ସେ ତଥ୍ୟ ଯେତେବେଳେ କାମରେ ପରିଣତ ହେଲା, ସେତେବେଳେ ସେ ଚିନ୍ତା ଶୂନ୍ୟରୁ ଆସି ନାମ ରୂପ ଧରି ଦେଖାଦେଲା, ସେତେବେଳେ ତାଙ୍କ ହୃଦୟକୁ ଥରିଗଲା।

ଜାତୀୟ ସଙ୍କଳ୍ପ ବୋଲନ୍ତେ ବ୍ୟକ୍ତିଗତ ସଙ୍କଳ୍ପର ସମଷ୍ଟି ବୁଝାଏ। ସେ ହିସାବରେ ବ୍ୟକ୍ତିଗତ କ୍ଷତି ଓ ବିନାଶ ଦେଖି ସେ ସ୍ତବ୍ଧ ହୋଇଗଲେ। ତାଙ୍କର ମନ ହେଲା ସେ ଯାଇ ଗୋରା ହାକିମ, ଯେ ସୈନ୍ୟମାନଙ୍କୁ ପରିଚାଳନା କରୁଛି ତାଙ୍କୁ ମାରି ଦେବା ଉଚିତ। ମାତ୍ର ସେ ନିଜକୁ ନିଜେ ସମ୍ଭାଳି ନେଲେ। ନିଜ ମନକୁ ଦୃଢ଼ କଲେ। ଭାବିଲେ ଏ ସବୁ ହେବାର କଥା ହେବ। ଯେଉଁ ଗାଁ ସୈନ୍ୟମାନଙ୍କ ଦ୍ୱାରା ଅତ୍ୟାଚାରିତ ସେ ଗାଁ ସବୁରେ ବୁଲି ଲୋକଙ୍କୁ ସାହସ ଦେଲେ। ସେ ଦେଖି ବିସ୍ମିତ ହେଉଥାନ୍ତି ଯେ, ଏତେ ଅତ୍ୟାଚାର କରି ମଧ୍ୟ ସାଧାରଣ ଲୋକେ ଦବି ନାହାନ୍ତି। କେବଳ ଯେଉଁମାନେ ବାଧ୍ୟ ହୋଇ ରାଜପକ୍ଷର ସ୍ୱାର୍ଥ ଛାଡ଼ିଥିଲେ, ସେହିମାନେ ପୁଣି ମୁଣ୍ଡ ଟେକୁଛନ୍ତି। ସେ ସ୍ୱାର୍ଥର ପୂର୍ଣ୍ଣଲାଭ ଉଦ୍ଦେଶ୍ୟରେ; ମାତ୍ର ପୁଣି ଠେକର ଖାଇ ମୁଣ୍ଡ ନୁଆଁଇ ଦେଇଛନ୍ତି।

ଯେଉଁ ସମୟରେ ଢେଙ୍କାନାଳରେ ଏପରି ବାଉସାଳିଆ ଚାଲିଥାଏ, ସେହି ସମୟରେ ଆପେ ଆପେ ସଂଲଗ୍ନ ଇଲାକା ତାଳଚେରରେ ମଧ୍ୟ ଆନ୍ଦୋଳନ ଲାଗିଥିଲା। ସେଠି ଲୋକେ ଅତ୍ୟାଚାର ସହ୍ୟ ନ କରି ପାରି ହଜାର ହଜାର ପଳାଇ ନିକଟବର୍ତ୍ତୀ ଇଂରେଜ ରାଜ୍ୟରେ ଯାଇ ପହଞ୍ଚିଲେ। ସେ ସମ୍ବାଦ ପାଇ ଲାଲମୋହନବାବୁ ସେଠିକି ଦୌଡ଼ିଲେ। ସେଠି ସେ ଦେଖନ୍ତି ଯେ, ଆବାଳବୃଦ୍ଧବନିତା ପ୍ରାୟ ପଚିଶ ହଜାର ଲୋକେ ପଳାଇ

ଯାଇଅଛନ୍ତି । ସେମାନଙ୍କ ପେଡ଼ ପେଟ୍ରା, ଲୁଗା ·ଛଅଁଣି ଯାହାର ଯାହା ଥିଲା ସବୁ ନେଇ ପଳାଇ ଆସିଛନ୍ତି । ଆମେ କେବେ ଫେରିବୁ ନାହିଁ ବୋଲି ସମସ୍ତେ କହୁଛନ୍ତି ।

ଜଣେ ବୁଢ଼ୀକୁ ଲାଲମୋହନବାବୁ ପଚାରିବାରୁ ସେ କହିଲା, "ପ୍ରଜାକୁ ନେଇ ରଜା । ମାଁ ଝାଳି ଭୂଇଁକୁ ନେଇ ରଜା, ରଜା ଯଦି ପ୍ରଜାକୁ ନ-ଗୃହିଁଲା, ରହୁ ସେ ତା ଭୂଇଁ ନେଇ । ଆମେ ଯିବୁ ନାଇଁ ।" ଏତେ-ଲୋକଙ୍କ ସମାଗମ ଅଥଚ ·ସେମାନଙ୍କ ରହିବା ପାଇଁ ଜାଗା ନାହିଁ । ଖାଇବାର ବ୍ୟବସ୍ଥା ନାହିଁ, ସମସ୍ତେ ଖରାକାକରରେ ପଦାରେ ପଡ଼ିଥାଆନ୍ତି । ଆଖି ଆଗରେ ମା କୋଳରେ ଶିଶୁଟିଏ କାନ୍ଦି କାନ୍ଦି ଆଖି ବୁଜିଦେଲା । ଆଉ କେତେଜଣ ମୁମୂର୍ଷୁ ବୁଢ଼ା ଧୁକି ଧୁକି ହେଉଛନ୍ତି ।

ଏ ସବୁ ଦେଖି ଲାଲମୋହନ ଅବଶ ପ୍ରାୟ ହୋଇଗଲେ । ସେ ତାର କଲେ ଦିବ୍ୟସିଂହବାବୁଙ୍କୁ ଆସିବା ପାଇଁ । ସେ ନିଜେ କଣ କରିବେ କିଛି ବୁଝିପାରୁ ନଥାନ୍ତି । ତାଙ୍କୁ ବୋଧ ହେଉଥାଏ ଅବସ୍ଥା ଯେପରି ତାଙ୍କ ହାତମୁଠାରୁ ବାହାରି ଯାଇ ଓଲଟି ତାଙ୍କୁ ଆକ୍ରମଣ କରିବାକୁ ଆସିଛି । ତଥାପି ସେ ମନ ଦୃଢ଼କରି ସମସ୍ତଙ୍କୁ ଉତ୍ସାହ ଓ ସାନ୍ତ୍ୱନା ଦେବାରେ ଲାଗି ଥାଆନ୍ତି । ଏ ସମୟରେ ତାଙ୍କ ମନରେ କୁମୁଦିନୀର ସନ୍ଧାନ ମୁଦ୍ଧା ନାହିଁ । ଏପରିକି କୁମୁଦିନୀ ଯଦି ବର୍ତ୍ତମାନ ଆସି ପହଞ୍ଚନ୍ତା ସେ ବୋଧହୁଏ ତାଙ୍କୁ ଚିହ୍ନାନ୍ତେ ନାହିଁ । ମାତ୍ର ବେଚାରୀ କୁମୁଦିନୀ କରୁଛନ୍ତି କଣ ?

## —୨୧—

କୁମୁଦିନୀ ଲଳମୋହନ ବାବୁଙ୍କ ପତ୍ର ପାଇ ଯେତେବେଳେ ଜାଣିଲେ ଯେ, ଭବ୍ୟସିଂହବାବୁ ସେମାନଙ୍କ ବିବାହରେ ସମ୍ମତ ଦେଇ ନାହାନ୍ତି; ମାତ୍ର ସେମାନଙ୍କୁ ଆଶ୍ରମରେ ସ୍ଥାନ ଦେବେ ବୋଲି ଆଗ୍ରହ ପ୍ରକାଶ କରିଛନ୍ତି, ସେତେବେଳେ ତାଙ୍କ ମନ ଖୁବ୍ ଚିନ୍ତାକୁଳ ହେଲା । ଭଦ୍ରଗ ଯିବା କଥାରେ ସେ ଏକପ୍ରକାର ଭୟ ଅନୁଭବ କରୁଥାଆନ୍ତି । ଯାହା, ଅନ୍ଧାର ରାତିରେ ବରଗଛରୁ ଭୂତ ବାହାରିଲାପରି ତାଙ୍କୁ ଜଣା ପଡୁଥାଏ । ସେ ନିଜ ଜୀବନରେ ଯେ ସୁଖମୟ ଚିତ୍ର କଳ୍ପନା କରିଥିଲେ, ତାହା ଯେପରି ଧୂଳିରେ ମଳିଆ ହୋଇ ଯାଉଛି, ଏହିପରି ସେ ଅନୁଭବ କଲେ । ବିବାହ କରିବେ; ତାପରେ ଶିଶୁର ମାତା ହେବେ । ସେତେବେଳେ ଜୀବନର ଯାହା କିଛି ସବୁ ଅଜାଡି ଦେଇ ସେହି ଶିଶୁକୁ ଲାଳନ ପାଳନ କରିବେ, ଏ ସ୍ୱପ୍ନ ଶେଷ ହୋଇ ଆସୁଛି ମନେ କରି ଅଲକ୍ଷିତ ଭାବରେ କୁମୁଦିନୀଙ୍କ ଆଖି ଛଳ ଛଳ ହୋଇଗଲା । ବାରମ୍ବାର ଦୀର୍ଘ ନିଶ୍ୱାସ ପକାଇ ସେ ଭାବୁଥାନ୍ତି ଯେ, ଗୃଦନୀ ରାତି ମେଘ ଅନ୍ଧାରରେ ଢାଙ୍କି ହୋଇ ଯାଇଥିଲା, ସେ ପୁଣି ଧୋବ ଫର୍ ଫର୍ ହୋଇ ଆସିବା ବେଳକୁ ପୁଣି ଆଉ ଖଣ୍ଡେ ମେଘ ଘୋଟିଗଲା । ଗଡ଼ଜାତ କାମରେ ଲଳମୋହନ ବାବୁ ବ୍ୟସ୍ତ ରହିଛନ୍ତି । ଏଥିପାଇଁ କୁମୁଦିନୀ ଦୁଃଖିତ ହେଲେ ନାହିଁ । ବରଂ ସେ କାମ ନ କରିଥିଲେ ଲଳମୋହନ ବାବୁଙ୍କ ପ୍ରତି କୁମୁଦିନୀଙ୍କର ଖରାପ ଧାରଣା ହୋଇ ଥାଆନ୍ତା । ସାଧାରଣ କାର୍ଯ୍ୟରେ ସନ୍ତୁ ନ ରହି ଅଥଚ ଏଣେ ଜୀବନର ଅନ୍ୟ ସାଧମେଣ୍ଟୁ, ଏହାହିଁ ତାଙ୍କର ଅଭିଳାଷ ଥିଲା । ମାତ୍ର

ସେ ଅଭିଳାଷ ଯେ ପୂର୍ଣ୍ଣ ହେବ, ଏଥିରେ ତାଙ୍କର ବର୍ତ୍ତମାନ ଘୋର ସନ୍ଦେହ।

ଲଳମୋହନ ବାବୁଙ୍କୁ ଚିତ୍ତ କରି ସେ ଯେଉଁ ଆଶାର ସୌଧ ତୋଳି ଥିଲେ, ତାହା ଯେପରି ଭୂମିକମ୍ପରେ ଟଳମଳ ହୋଇ ଖସି ପଡ଼ିବାକୁ ଯାଉଛି। ସେ ଭାବିଲେ ଯେ, ଦିବ୍ୟସିଂହ ବାବୁଙ୍କ ଅନୁମତି ନ ଦେବାର କାରଣ ହୋଇଥିବ—ଲଳମୋହନଙ୍କ ନିଜର ବିବାହିତ ପତ୍ନୀ ପ୍ରତି ଦୁର୍ବ୍ୟବହାର। ଲଳମୋହନବାବୁ ଏତେ ପ୍ରେମିକ, ଏତେ ତ୍ୟାଗୀ ଓ ଦେଶ ପ୍ରେମିକ; ମାତ୍ର କାହିଁକି ତାଙ୍କର ବିବାହିତ ଜୀବନ ଏପରି ସମସ୍ୟା ପୂର୍ଣ୍ଣ। ଏ କୌତୂହଳ ବଢ଼ିବା ସଙ୍ଗେ ସଙ୍ଗେ କୁମୁଦିନୀଙ୍କ ମନରେ ନିଶାମଣିଙ୍କ ପ୍ରତି ଦୟା ମଧ୍ୟ ବଢ଼ୁଥାଏ। ଏଣେ ଦେଶ କାମରେ ଏତେ ବ୍ୟସ୍ତ। ସେ ତେଣେ କି ଅବସ୍ଥାରେ କଅଣ କରୁଛି ଜାଣିବାପାଇଁ ତାଙ୍କର ପ୍ରବଳ ଇଚ୍ଛା ହେଲା। ସୁବିଧା ପାଇଲେ ନିଶାମଣିକୁ ନେଇ ଆସି ସଙ୍ଗରେ ରଖିଲେ ତାର ମଧ୍ୟ କିଛି ଆଧୁନିକ ଶିକ୍ଷା ପାଇବାର ସୁବିଧା ଘଟିବ। ଆଉ ମଧ୍ୟ ପରୋକ୍ଷରେ ଲଳମୋହନ ବାବୁଙ୍କୁ ସାହାଯ୍ୟ କରାହେବ ବୋଲି ମନେ କଲେ। ଏହି ବିଷୟକୁ ଭାବୁ ଭାବୁ ତାଙ୍କ ମନକୁ ଆସିଲା ଯେ, ଯଦି ନିଶାମଣି ଓ ସେ ଦୁହେଁ ପରସ୍ପର ସ୍ନେହାବଦ୍ଧ ହୋଇ ଯାଆନ୍ତି, ହୁଏତ ତାଙ୍କ ମନରେ ଲଳମୋହନ ବାବୁଙ୍କୁ ବିବାହ କରିବା ଯେ ଅଭିଳାଷ ବଢ଼ିଛି, ତା ପୂର୍ଣ୍ଣ ହେବାରେ ବାଧା ବହୁତ କମିଯିବ।

ତାଙ୍କ ମନକୁ ଲାଗିଲା ଯେ, ଲଳମୋହନବାବୁ ତାଙ୍କ ପ୍ରଥମ ସ୍ତ୍ରୀଙ୍କୁ ଛାଡ଼ପତ୍ର ବା କାହିଁକି ଦେବେ ? ସେ ବିଚାରୀ ଅନାଥା ହୋଇ କାହିଁକି ଜୀବନକୁ ବିଷପରି ମନେ କରି ନିଶ୍ୱାସ ପକାଇବ। ଆର୍ଯ୍ୟ ସମାଜର ନିୟମାନୁସାରେ ବହୁବାର ବିବାହ କିଛି ଅଧର୍ମ ନୁହେଁ। ଯଦି ସେ କୌଣସି ପ୍ରକାରେ ନିଶାମଣିକୁ ଆପଣାର କରି ନେଇ ପାରନ୍ତି, ତେବେ ତ ଆଉ କିଛି ଅଶାନ୍ତିର କାରଣ ରହିବ ନାହିଁ—ଲୋକ ନିନ୍ଦା ମଧ୍ୟ ହେବ

ନାହିଁ । ସଉତୁଣୀ କେବେ ସ୍ନେହୀ ହେବ ନାହିଁ, ଏ କଥା କଣ ସବୁଦିନେ ସତ ହୋଇ ରହିଥିବ ? ଚେଷ୍ଟା କଲେ ତା ମଧ୍ୟ ମିଛ ହୋଇଯାଇ ପାରେ । ସ୍ତ୍ରୀ ସ୍ୱଭାବରେ ସ୍ୱାମୀଠାରେ ସ୍ୱାର୍ଥର ଦାବୀ ଯୋଗ ସିନା ସଉତୁଣୀଙ୍କ ବିବାଦ ହୁଏ । ମାତ୍ର ମୁଁ ଯଦି ସେପରି ପତ୍ନୀର ଆଚରଣ ନ କରେ, ତେବେ ତ ନିଶାମଣି ମୋର ଜଣେ ବନ୍ଧୁ ହୋଇଯିବ । ଆଉ ମଧ୍ୟ ତା ଜୀବନରେ କୌଣସି ପ୍ରକାର ଆଘାତ ଲାଗିବ ନାହିଁ ।

ଏହିପରି ଚିନ୍ତା କରି କରି ସେ ଏହା ନିଶ୍ଚୟ କଲେ ଯେ, ଲାଲମୋହନ ବାବୁଙ୍କ ଆସିବା ପୂର୍ବରୁ ସେ ଯାଇ ନିଶାମଣିଙ୍କ ସହିତ ଥରେ ଦେଖା ସାକ୍ଷାତ୍ କରିବେ ଓ ତା' ମନ ନେବାକୁ ଚେଷ୍ଟା କରିବେ । ଇତିମଧ୍ୟରେ କୁମୁଦିନୀ ଲାଲମୋହନ ବାବୁଙ୍କ ଘର ଓ ସେଠାରେ ରହିବାର କି ସୁବିଧା ଅଛି ଇତ୍ୟାଦି ସବୁ ଅନୁସନ୍ଧାନ କରି ବୁଝିଲେ । ଏଥିରେ ତାଙ୍କୁ ବେଶୀ ଅସୁବିଧା ଭୋଗିବାକୁ ପଡିଲା ନାହିଁ । କାରଣ ଲାଲମୋହନ ବାବୁଙ୍କ ଘର କେନ୍ଦ୍ରାପଡ଼ାଠାରୁ ପ୍ରାୟ ୪ ମାଇଲ ଦୂର ହେବ ଓ କେନ୍ଦ୍ରାପଡ଼ାରେ ବିଦେଶୀଙ୍କ ରହିବାର ସୁବିଧା ଅଛି । ଅନେକ ବର୍ଷ ସାଧାରଣ କାର୍ଯ୍ୟ କରି ଅପରିଚିତଙ୍କ ସହିତ ବନ୍ଧୁତା ସ୍ଥାପନ କରିବାର ଦକ୍ଷତା କୁମୁଦିନୀ ହାସଲ କରିଛନ୍ତି । ଏଣୁ ସୁଦର୍ଶନଙ୍କୁ ସଙ୍ଗରେ ନେଇ ସେ କେନ୍ଦ୍ରାପଡ଼ା ଗଲେ । ସେଠାରେ ସେ ଡାକବଙ୍ଗଳାରେ ଗୋଟିଏ ବଖରା ଭଡ଼ା ନେଇ ରହିଲେ । ନାରୀ କଲ୍ୟାଣ ସମ୍ପର୍କରେ ସହରର ଅନେକ ଭଦ୍ରଲୋକଙ୍କ ସହିତ କଥାବାର୍ତ୍ତା କଲେ । ମାତ୍ର ସେ ନିଜକୁ ହିନ୍ଦୁସ୍ଥାନୀ ବୋଲି ପରିଚୟ ଦେଇ ସମ୍ମାନଜନକ ଅବସ୍ଥାରେ ରଖି ପାରିଲେ । ଦିନେ ଦୁଇଦିନ ପରେ ସେ ଡାକବଙ୍ଗଳା ଚୌକିଦାର ସହିତ ବନ୍ଦୋବସ୍ତ କରି ଲାଲମୋହନ ବାବୁଙ୍କ ଗାଁକୁ ଗଲେ । ସେ ଗାଁଟି ବଡ଼ ଛୋଟ, ମୋଟେ ୧୦ ଘର ଲୋକ ଅଛନ୍ତି ଓ ସମସ୍ତେ ଗରିବ । ଲାଲମୋହନ ବାବୁଙ୍କ ଘର ଦେଖି କୁମୁଦିନୀ ଜାଣିଲେ ଯେ, ସେମାନେ ଅବସ୍ଥାପନ୍ନ ନୁହନ୍ତି । ତାଙ୍କ ଡାକବଙ୍ଗଳା ଚୌକିଦାର, ଲାଲମୋହନଙ୍କ ଭାଇ ହରମୋହନଙ୍କୁ ଖବର ଦେଲେ ଯେ, ତାଙ୍କ ସହିତ

ଦେଖା କରିବାପାଇଁ କୁମୁଦନୀ ଆସିଛନ୍ତି । ହରମୋହନ ଅତି ବ୍ୟସ୍ତ ହୋଇ ଏକ ପୁରୁଣା ଗାଲିଚା, ପାଖେ ଗଡ଼ି ଯାଇଛି, ସବୁ ଆଣି ବାହାର ପିଣ୍ଡାରେ ସପ୍ ଉପରେ ପକାଇ ଦେଲେ । ଜଣେ ପଶ୍ଚିମା ସ୍ତ୍ରୀଲୋକ କାହିଁକି କୁଆଡ଼େ ଆସିଛି, ଏଥିପାଇଁ ହରମୋହନ ବିସ୍ମିତ ହୋଇ କଅଣ ତାକୁ କହିବାକୁ ହେବ କିଛି ଜାଣିପାରୁ ନ ଥାନ୍ତି । ଶେଷରେ କୁମୁଦନୀ ଓଡ଼ିଆରେ ପଚାରିଲେ, "ଆପଣ ଲଳମୋହନ ବାବୁଙ୍କ ଭାଇ ।"

ହରମୋହନ, "ହଁ" ।

କୁମୁଦନୀ—"ଆପଣମାନେ କେତେ ଭାଇ ।"

ହରମୋହନ—"ଆମେ ତିନି ଭାଇ, ଆମେ ଦୁଇଜଣ ଘରେ ଥାଉଁ, ସେ ତ ସେଆଡ଼େ ବୁଲୁଛନ୍ତି ।"

କୁମୁଦନୀ—"ସେତ ଦେଶର ଉପକାରପାଇଁ ନିଜକୁ ବଳି ଦେଇଛନ୍ତି । ତାଙ୍କ ଜୀବନ ମହତ୍ ।"

ହରମୋହନ ମୁହଁ ମୋଡ଼ି ଅନିଚ୍ଛା ଭାବରେ କହିଲେ, "ହଁ ଦେଶର ଉପକାର ସେ କରୁଥାଉ, ଆମେ ଏଣେ ପଡ଼ି ମରୁଁ ।" ତାପରେ ନିଜକୁ ସଂଯତ କରି ବ୍ୟସ୍ତ ହୋଇ କହିଲେ, "ହଁ ଭଲ କାମରେ ଲାଗିଛି ।"

କୁମୁଦନୀ ଜାଣିଲେ ଯେ ହରମୋହନ ବାବୁଙ୍କ ମନ ଭଲ ନୁହେଁ । ତେଣୁ ସେ ଧୀରେ ଧୀରେ କହିଲେ, "ସେ ଯେତେବେଳେ ଦେଶ କାମରେ ଲାଗିଛନ୍ତି, ମୁଁ ଭାବିଲି ମୋର କର୍ତ୍ତବ୍ୟ ତାଙ୍କ ଘରକୁ ଥରେ ଦେଖିଯିବା ଓ ତାଙ୍କ ଖବର ବୁଝିଯିବା । ମୁଁ ଆସିଥିଲି କେନ୍ଦ୍ରାପଡ଼ା ମୋ କାମରେ । ମାତ୍ର କେନ୍ଦ୍ରାପଡ଼ା ଆସି ଲଳମୋହନ ବାବୁଙ୍କ ଘରକୁ ନ ଆସିବା, ପୁରୀଯାଇ ଜଗନ୍ନାଥ ଦର୍ଶନ ନ କରିବା ଭଲ ନୁହେଁ—ତେଣୁ ମୁଁ ଆସିଛି ।

ହରମୋହନଙ୍କ ମୁହଁରେ ସୁଖ ନାହିଁ କି ଶାନ୍ତି ନାହିଁ । ସେ ପୂର୍ବପରି ଗମ୍ଭୀର ଭାବରେ କହିଲେ, "ଭଲକଥା ଆପଣ ଆସିଛନ୍ତି । କଣ ଆଉ ବୁଝିବେ ? ଦୁଃଖରେ ପଡ଼ିଛୁଁ ଆମେ ।"

ତା'ପରେ କୁମୁଦିନୀ ଅବସ୍ଥା ଜାଣିବାପାଇଁ ସମସ୍ତଙ୍କ ସମ୍ପର୍କରେ ପଚାରିଲେ, ନିଜର ଦରିଦ୍ରତାକୁ ପ୍ରତିପନ୍ନ କରିବାପାଇଁ ହରମୋହନବାବୁ ଉତ୍ସାହ ସହକାରେ କହିଲେ, "ମୋତେ ଛଅଶ ମାଣ ଜମିକୁ ଚଳନ୍ତି ପରିବାର—କିଛି କୁଆଡ଼କୁ ଅଣ୍ଟୁନାହିଁ । ଘରେ ବଢ଼ିଲା ଝିଅ ଛଅୋଟି । ସେମାନେ କାହା କପରି ହେବେ ଜଣାଯାଉ ନାହିଁ । ପୁଅ ଗୁଡ଼ିକ ମୂର୍ଖ ହୋଇ ବୁଲୁଛନ୍ତି । ସେମାନଙ୍କୁ ପଢ଼ାଇବାର ବା ଉପାୟ କାହିଁ । ଏତେ ପଇସା ଟଙ୍କା କରି ତୁଇ ଯାଠ ପଢ଼ିଲ ଯେ, ସେ ଘରକଥା ମନେ ଯୁଝା ପକାଏ ନାହିଁ । ହଁ, ସେତ ବଡ଼ କାମ କରୁଛି । ଦେଶ ସେବା କରୁଛି ।"

ଏକଥା ଭିତରେ କାରୁଣ୍ୟ ଭରି ରହିଥିଲା, ଯାହା କୁମୁଦିନୀଙ୍କ ମନକୁ ଆଘାତ କଲା । ଓଡ଼ିଶାର ଯେଉଁମାନେ ସାଧାରଣ କାମକୁ ବାହାରିଛନ୍ତି, ସେମାନେ କେତେ ଗରିବ, ଏ କଥା ତ ଆଖିରେ ନ ଦେଖିଲେ ଜଣେ କଳ୍ପନା କରିପାରିବ ନାହିଁ । ତେଣୁ କୁମୁଦିନୀ ବିସ୍ମିତ ହୋଇଗଲେ ଯେ, ଲାଲମୋହନବାବୁ କପରି ନିଜ ଘରକୁ ଆଦୌ ଦୃଷ୍ଟି ନ ଦେଇ, ମନପ୍ରାଣ ଦେଇ ଦେଶ କାମରେ ଲାଗିଛନ୍ତି । ତାପରେ ସେ ହରମୋହନଙ୍କୁ ସାନ୍ତ୍ୱନା ଦେଇ ଘରେ ସ୍ତ୍ରୀ ଲୋକମାନଙ୍କୁ ସାକ୍ଷାତ କରିବ ପାଇଁ ଇଚ୍ଛା ପ୍ରକାଶ କଲେ । ଏଥିରେ ହରମୋହନ ପ୍ରଥମେ କିଛିଏ ଇତସ୍ତତଃ ହେଲେ । ମାତ୍ର ଶେଷରେ ରାଜି ହେଲେ । ଆଗରୁ ଯାଇ ଘରେ ଖବର ଦେଇ ଦେଲେ । ସମସ୍ତେ ନିଜ ନିଜ ପେଡ଼ିରୁ ଧୋବ ଶାଢ଼ି ଖଣ୍ଡେ ଖଣ୍ଡେ କାଢ଼ି ପିନ୍ଧି ପକାଇଲେ । ଆଉ ତ ଅନ୍ୟ କିଛି ପୋଷାକ ନାହିଁ । ଗହଣାଗାଣ୍ଠି ମଧ୍ୟ ସେପରି କିଛି ନାହିଁ । କିଛି ସମୟ ପରେ ହରମୋହନବାବୁ ଖବର ଦେବାରୁ କୁମୁଦିନୀ ଘର ଭିତରକୁ ଗଲେ ।

କଣାମଣିଙ୍କ ସହିତ କଥାବାର୍ତ୍ତା ହେବା ତାଙ୍କର ଉଦ୍ଦେଶ୍ୟ । ମାତ୍ର ଅନେକ ସ୍ତ୍ରୀ ଲୋକ ଏକାଠି ବସିଛନ୍ତି । ଏଣୁ ସାଧାରଣ ଭାବରେ କଥା କହିବା ଛଡ଼ା ଅନ୍ୟବାଟ ନଥାଏ । ମାତ୍ର ଦୈବାତ ଏକ ସୁଯୋଗ ଆସି ପହଞ୍ଚିଗଲା । ହରମୋହନଙ୍କ ସ୍ତ୍ରୀ, ଯେ ସମସ୍ତଙ୍କଠାରୁ ବଡ଼, ସେ କଥା

ପ୍ରସଙ୍ଗରେ କହିଲେ, "ଲଳିତ ମୋହନଙ୍କୁ କହି ନାହିଁ । ସେ ଘରକଥା ବୁଝନ୍ତି । ଦିନକୁ ଦିନ ତ ଆମେ ଗରିବ ହୋଇଗଲୁ । ଶେଷରେ କଣ ଆମେ ଭିକ ମାଗିବୁ ।"

କୁମୁଦିନୀ ଟିକିଏ ଚୁପ ରହି ତା'ପରେ କହିଲେ, "ସେତ ବୁଦ୍ଧିଆର ମଙ୍ଗଳପାଇ ଲାଗିଛନ୍ତି । ବରଂ ସେତ ଖୁସି ହୁଅନ୍ତେ, ଯଦି ଜ୍ଞାନମଣି-ଙ୍କ ସହିତ ଯୋଗ ଦିଅନ୍ତେ ।"

ହରମୋହନଙ୍କ ସ୍ତ୍ରୀ ଆନନ୍ଦ ପ୍ରକାଶ କରି କହିଲେ, "ତାହା ଭଲ ହୁଅନ୍ତା, ତାହା ହେଉଛି କାହିଁ । ଯାହାକୁ ବାହା ହୋଇଥିଲୁ, ତାକୁ ତ ପୋଷିଲେ କଷ୍ଟ ହୁଅନ୍ତା । ସେ ଆମକୁ ପୋଷିବ କଣ, ତା 'ନିଜ ଲୋକକୁ ସୁଦ୍ଧା ସେ ଅନାଉଁ ନାହିଁ ।

ଏଥିରେ କୁମୁଦିନୀ ଉତ୍ସାହିତ ହୋଇ କହିଲେ, "ଆଚ୍ଛା, ମୋ ସହିତ ତାଙ୍କୁ ପଠାଇ ଦିଅନ୍ତୁ । ମୁଁ ଲଳିତମୋହନ ବାବୁଙ୍କଠି ତାଙ୍କୁ ଛାଡିଦେବି ଓ ସେମାନେ ଏକଠି ରହିବେ ।"

ଜ୍ଞାନମଣି ଏ କଥାବାର୍ତ୍ତା ଶୁଣି ମୁଣ୍ଡ ତଳକୁ କରି ବସିଥାଏ । ଏଣୁ ତା ମନରେ ଯେ କି ଭାବ କାମ କରୁଛି ତାହା ଜାଣିବା କଠିନ ।

ହରମୋହନ ବାବୁଙ୍କ ସ୍ତ୍ରୀ ଧୀରେ ଧୀରେ କହିଲେ, "ଘରର ମୁରବି ଯେ ତାଙ୍କୁ ପଚାର । ଆମେ ସେଥିରେ କଅଣ କହିବୁ ?"

କୁମୁଦିନୀ ହସି ହସି କହିଲେ, "ଏଇ ତ ସ୍ତ୍ରୀ ଲୋକଙ୍କ ରୋଗ । ସବୁ-ବେଳେ ମରଦଙ୍କ ଉପରେ ନିର୍ଭର । ସ୍ତ୍ରୀ କାହିଁକି ତାର ନିଜର ଦାବୀ କିଛି ହାସଲ ନ କରିବ । ଜ୍ଞାନମଣି ଟିକିଏ ମଜ୍‌ବୁତ ହୋଇ ଦାବୀ କଲେ, ଲଳିତ-ମୋହନବାବୁ ବାଧ୍ୟ ହୁଅନ୍ତେ ତାର ସମସ୍ତ ତତ୍ତ୍ୱ ବୁଝିବା ପାଇଁ । ଆସୁ ଜ୍ଞାନମଣି ମୋ ସହିତ, ସେ ଦାବୀ କରୁ ସାଙ୍ଗରେ ରହିବାପାଇଁ । ଦେଖିବ, କିପରି ଲଳିତମୋହନବାବୁ ଅବାକ୍ ହେବେ ।" ଆଚ୍ଛା, ଜ୍ଞାନମଣିଙ୍କର ଏଥିରେ ମତ କଣ ? ଜ୍ଞାନମଣି ମୁହଁ ତଳକୁ, କୌଣସି ଉତ୍ତର ନାହିଁ । ତାପରେ କୁମୁଦିନୀ ବିର୍ଜିତ ଭାବରେ କହିଲେ ଯେ, "ସେ ଏକୁଟିଆ ତା ସହିତ କଥା

ହେବାକୁ ଗୃହାଁନ୍ତି ।" ସମସ୍ତେ ଚାଲିଗଲା ପରେ ନଣାମଣିକୁ ବହୁତ ପ୍ରବର୍ତ୍ତାଇ ତାଙ୍କୁ କଥାବାର୍ତ୍ତାକୁ ଟାଣିଲେ । କଅଁଳେଇ କଅଁଳେଇ ତା ପେଟରୁ କୁମୁଦିନୀ ଯେତିକି କଥା ବାହାର କଲେ, ସେ ଏହି ଘରେ ସବୁଠାରୁ ସାନ, ତାର ସ୍ୱାମୀ କିଛି ରୋଜଗାର କରୁ ନାହାନ୍ତି । ଏଣୁ ଘରେ ତାଙ୍କୁ କେହି ପଚାରନ୍ତି ନାହିଁ । ଏପରିକି ଦିନେ ଅଧେ ଉପାସ ରହିଗଲେ ମଧ୍ୟ, କେହି ବୁଝନ୍ତି ନାହିଁ । ବେରାମ ଆରାମରେ କେହି ପାଖକୁ ଆସନ୍ତି ନାହିଁ । ଏ ସବୁ ସେ ସ୍ୱାମୀଙ୍କୁ କହିଲେ, ସେ ରଡ଼ି ରଡ଼ି ହୁଅନ୍ତି । କଚ୍ଛିନ କରି ମଝିରେ ମଝିରେ ଥରେ ଥରେ ସେ ଘରକୁ ଆସୁଥିଲେ, ତାର ଘରେ ଖାତିର ଥାଆନ୍ତା । ଅନ୍ୟାନ୍ୟ ଯା' ମାନଙ୍କ ସଙ୍ଗରେ ତାର ପଟେ ନାହିଁ । ଘରର ମୁରବି ହରମୋହନ ଜଣେ କୁଟିଳ ପ୍ରକୃତିର ଲୋକ । ସେ ଯାହା କିଛି ଅଛି, ସବୁ ଅଙ୍ଗିତା କରି ନିଜେ ରଖି ନେଉଛନ୍ତି । ଗତବର୍ଷ ବଳକା ଧାନ ବିକି ଦେଇ ଟଙ୍କା ସେ ରଖିନେଲେ । ଘରେ ଖାଇବାକୁ ଥାଉ ବା ନ ଥାଉ, ଆଗ ଧାନ ବିକି କିଛି ଟଙ୍କା ସେ ରଖିନିଅନ୍ତି । ମଝିଆଁ ଭାଇ ଯେ ହୁଣ୍ଡା, କିଛି ବୁଝେନାହିଁ । ମାତ୍ର ବଡ଼ଭାଇ କଥାରେ ଚାଲିଥାଏ । ଏଣୁ ତାର ସ୍ତ୍ରୀ କିଛି ଅସୁବିଧା ଭୋଗେ ନାହିଁ, ଅତି ହୀନମାନ ହୋଇ ଦୁଃଖରେ ସେ ପଡ଼ିଛି ।

ଏତିକି ବିବରଣୀ ପାଇ କୁମୁଦିନୀଙ୍କୁ ଦୁଃଖ ହେଲା । ସେ ଦେଖିଲା ଯେ, ନଣାମଣି ଅସୁନ୍ଦର ନୁହେଁ । ପାଠ ନପଢ଼ିଲେ ମଧ୍ୟ, ସେ ସେପରି ନିର୍ବୋଧ ନୁହେଁ । ସ୍ୱାମୀପ୍ରତି ତାର ସେପରି ଖରାପ ଧାରଣା ନାହିଁ । ଏପରି ସ୍ଥଳେ କୁମୁଦିନୀ ଯେ ଉଦ୍ଦେଶ୍ୟରେ କେନ୍ଦ୍ରାପଡ଼ା ଆସିଥିଲେ, ତାହା ସଫଳ ହେବାର ଯଥେଷ୍ଟ ସୂଚନା ପାଇଲେ । ତା ପରେ ସେ ପଚାରିଲେ, ଆଚ୍ଛା, "ତୁମେ ମୋ ସହିତ ଯିବ ? ଲାଲମୋହନ ବାବୁଙ୍କ ସହିତ ରହିବ ।" ଏଥିରେ ନଣାମଣି ଆଗ୍ରହ ସହକାରେ ହଁ ଭରିଦେଲେ ।

ତାପରେ କୁମୁଦିନୀ ବାହାରକୁ ଆସି ହରମୋହନବାବୁଙ୍କୁ ନାନା କଥା ଭିତରେ କହିଲେ "ଲାଲମୋହନ ବାବୁଙ୍କ ସ୍ତ୍ରୀ, ସ୍ୱାମୀ ସହିତ ରହିଲେ ତ ଭଲ ହୁଅନ୍ତା ।" ହରମୋହନଙ୍କର ମଧ୍ୟ ଆପତ୍ତି ନାହିଁ । ମାତ୍ର ସେ ଇଙ୍ଗିତ

ଦେଲେ ଯେ, ସେ ଗର୍ଭବତୀ । ୭ । ୮ମାସ ଗର୍ଭ । ଏପରିସ୍ଥଳେ ସେ ଯିବ କପରି ? କୁମୁଦିନୀ ପ୍ରଥମେ ଚିନ୍ତିତ ହୋଇଗଲେ । ତାପରେ ଧୀରେ ଧୀରେ କହିଲେ, "ମୋ ସଙ୍ଗରେ ଚାଲୁ । ମୁଁ ତାର ରହିବା ପାଇଁ ସବୁ ବନ୍ଦୋବସ୍ତ କରିଦେବି । କିଛି ଅସୁବିଧା ହେବ ନାହିଁ ।

ମାତ୍ର ଅପରିଚିତ ଲୋକ ସହିତ ଗର୍ଭବତୀ ସ୍ତ୍ରୀ ଲୋକଟିକୁ କପରି ପଠାଇବେ କହି ହରମୋହନ ଦ୍ୱିଧାବୋଧ କଲେ । କୁମୁଦିନୀ ଯେତେ ବୁଝାଇଲେ ମଧ୍ୟ, କିଛି ମାନୁ ନ ଥାନ୍ତି । ମାତ୍ର ଯେତେବେଳେ ଡାକ-ବଙ୍ଗଳା ଚୌକିଦାର କହିଲା ଯେ, କୁମୁଦିନୀ ଜଣେ ଭାରି ବଡ ଲୋକର ଝିଅ । ସେ କେନ୍ଦ୍ରାପଡ଼ାରେ ସବୁ ବଡ଼ ବଡ଼ ଲୋକଙ୍କ ଦ୍ୱାରା ସମ୍ମାନିତ, ସେତେବେଳେ ହରମୋହନଙ୍କ ମନରେ ବିଶ୍ୱାସ ଆସିଲା ।

କୁମୁଦିନୀ ହରମୋହନଙ୍କୁ ଅନୁରୋଧ କଲେ, ତାଙ୍କ ସହିତ କେନ୍ଦ୍ରା-ପଡ଼ା ଯିବା ପାଇଁ ଓ ତାଙ୍କ ସମ୍ବନ୍ଧରେ ସମସ୍ତ କଥା ଅନ୍ୟମାନଙ୍କ ଠାରୁ ଜାଣିବା ପାଇଁ । ମାତ୍ର ଏଥିରେ ହରମୋହନ ରାଜି ହେଲେ ନାହିଁ । ସେ ଶୁଣିଥିଲେ ଯେ, ଦେଶ କାମରେ ସ୍ତ୍ରୀ ଲୋକ ମଧ୍ୟ ଗୃହଆଡେ ବାହାରିଛନ୍ତି । ଏପରି କି ସେଥିପାଇଁ ଜେଲମଧ୍ୟ ଯାଇଛନ୍ତି । ଏଣୁ ଲାଲମୋହନବାବୁଙ୍କ ପରି ନାମୀ ଲୋକଙ୍କ ସ୍ତ୍ରୀ ପଦ୍ମାକୁ ବାହାରିବାରେ ସେପରି କିଛି ଆପତ୍ତି କରିବାର କଥା ନାହିଁ । ତା'ଛଡ଼ା ନିଜ ଗାଁ ବାଲା ଡ଼ାକ ବଙ୍ଗଳା ଚୌକିଦାର ଯାହା କହୁଛି ତା କଥାରେ ହରମୋହନଙ୍କ କୁମୁଦିନୀଙ୍କ ପ୍ରତି ଅବିଶ୍ୱାସ ଛୁଟି ଯାଉଛି । ଏଣୁ ସେ ଆଉ କିଛି ଆପତ୍ତି ନକରି କେବଳ କହିଲେ, "ଆପଣତ ଅଛନ୍ତି ବର୍ତ୍ତମାନ, ଦିନେ ଦୁଇଦିନ ପରେ ସେ କଣାମଣିଙ୍କୁ ତାଙ୍କ ସହିତ ଛାଡ଼ିଦେବେ ।"

ଏଥିରେ କୁମୁଦିନୀ ସନ୍ତୁଷ୍ଟ ହେଲେ ଓ ନାନାପ୍ରକାର ସାନ୍ତ୍ୱନା ଦେଇ କେନ୍ଦ୍ରାପଡ଼ା ଫେରିଲେ । ଠିକ୍ ସାତ ଦିନ ପରେ ଆସି କଣାମଣିଙ୍କୁ ନେଇ-ଯିବାପାଇଁ କହିଗଲେ ।

ଲଲମୋହନ ବାବୁଙ୍କର ଘରର ଅବସ୍ଥା ଦେଖି ଓ ନିଶାମଣିଙ୍କର ମନର ଗତି ବୁଝି କୁମୁଦିନୀଙ୍କ ମନରେ ଆଶା ବଢ଼ିଲା ଯେ, ସେ ନିଜର ଭାବୀ ସପତ୍ନୀଙ୍କୁ ମନେଇ ପାରିବେ । ସେ ନିଜେ ତାର ମୁରବୀ ହୋଇ ପାରିବେ । ଅବଶ୍ୟ ନିଶାମଣି ଗର୍ଭବତୀ ଥିବା ସମ୍ବନ୍ଧରେ ତାଙ୍କ ମନରେ ପ୍ରଥମେ ଟିକିଏ ବିକାର ଆସିଥିଲା । ମାତ୍ର ଯେତେବେଳେ ସେ ଭାବିଲେ ଯେ, ଲଲମୋହନବାବୁ ଶରୀର ସମ୍ପର୍କର ତୃପ୍ତି ଯୋଗୁଁ ନିଶାମଣୀ ପ୍ରତି ସ୍ନେହାନ୍ୱିତ ହୋଇଛନ୍ତି । କିନ୍ତୁ ତାଙ୍କ ମାନସିକ ତୃପ୍ତି ସେ ସେଠି ପାଇ ନାହାନ୍ତି ଓ ସେଥିପାଇଁ ସେ ପୁଣି ବିବାହର ଇଚ୍ଛା କରୁଛନ୍ତି । ଅତଏବ ତାଙ୍କର ଦ୍ୱିତୀୟ ବିବାହ କାମୁକର ଅଭିଳାଷ ନୁହେଁ । ବରଂ ଠିକ୍ ତାର ବିପରୀତ । ସେତେବେଳେ କୁମୁଦିନୀ ମନରେ ଏକ ବିରୁଦ୍ଧ ଭାବ ଖେଳିଗଲା । ସେ ଭାବିଲେ ଯେ, ଲଲମୋହନବାବୁଙ୍କୁ ପୂର୍ଣ୍ଣ ସନ୍ତୋଷଦାନ କରିପାରିବେ ଓ ତାଙ୍କ ସଙ୍ଗେ ସଙ୍ଗେ ନିଶାମଣିଙ୍କ ଜୀବନ ମଧ୍ୟ ଦୁଃଖମୟ ହେବନାହିଁ । କିନ୍ତୁ ଲଲମୋହନବାବୁ ଜାଣନ୍ତିକି ନିଶାମଣି ଗର୍ଭବତୀ ବୋଲି । ବୋଧ-ହୁଏ ସେ ଜାଣି ନ ଥିବେ । ସେକଥା ଜାଣିଲେ ହୁଏତ ମନର ପରିବର୍ତ୍ତନ ଘଟିପାରେ ଓ ସେ ପୁଣି ବିବାହ କରିବାପାଇଁ ସଙ୍କୋଚ ଅନୁଭବ କରି-ପାରନ୍ତି । କାରଣ ବହୁଦିନ ହେଲା ବିବାହ କରି ଜଣଙ୍କର ବୟସ ବେଶୀ ହୋଇ ଯାଇଥିଲେ ମଧ୍ୟ, ଯଦି ପିଲାପିଲି କିଛି ନାହାନ୍ତି, ତେବେ ପୁଅ ଝିଅର ବାପ ଅଥଚ ବୟସରେ କମ୍, ଏପରି ଲୋକଠାରୁ ସେ ନିଜକୁ ଯୁବକ ବୋଲି ମନେକରେ । ପୁଅ ଝିଅଙ୍କ ବାବା ବାବା ଡାକ ଡାକି

ଲୋକଙ୍କୁ ବାଞ୍ଛ କ୍ୟର ଧାରଣା ଆଣି ଦଅନ୍ତି । ଏଣୁ ଲାଲମୋହନବାବୁଙ୍କୁ କି ପ୍ରକାରରେ ତାଙ୍କର ନୂତନ ବିବାହ ସିଦ୍ଧାନ୍ତରେ ସ୍ଥିର ରଖିବେ, ଅଥଚ ନଶାମଣିଙ୍କୁ ସାଙ୍ଗରୁ ଆଣିବେ ଏହି ସମସ୍ୟା କୁମୁଦିନୀଙ୍କୁ ଅତି ବଡ଼ ଜଣାଗଲା ।

ନୀରେଳା ଦେଖା ସାକ୍ଷାତ ହେବାର ସୁବିଧା ହେଲେ, ସେ ଲାଲ-ମୋହନ ବାବୁଙ୍କୁ ବାଗେଇ ପାରନ୍ତେ । ମାତ୍ର ସେ ସୁବିଧା ବା କାହିଁ । ବର୍ତ୍ତମାନ ସେ କେଉଁଠି ବୋଲି କେଉଁଠି ବୁଲୁଛନ୍ତି । ତାଙ୍କ ସହିତ ଦେଖା ହେବା ତ କଠିନ । ତେଣୁ କେବଳ ଚିନ୍ତା ଭିତରେ କାମ ଚଳିବାକୁ ଦେଇ କୁମୁଦିନୀ କଟକ ଆସିଲେ । ଏତେଦିନ କେନ୍ଦ୍ରାପଡ଼ାରେ ରହିବା ପାଇଁ କୌଣସି କାମ ତାଙ୍କୁ ଦେଖାଗଲା ନାହିଁ । କଟକ ସହର ଦେଖି ଗୃହକୁ ଯିବାପାଇଁ ମନହେଲା ।

ଦିନେ କଟକରେ ସେ ଦେଖିଲେ ଯେ, ବିରାଟ ଶୋଭାଯାତ୍ରା ଚାଲିଛି, ଜନତାର ମୁଖରେ ଦୁଃଖ କ୍ରୋଧ ସମାନ ସମାନ ହୋଇ ଏକ ଅଦ୍ଭୁତ ଉଚ୍ଛ୍ୱାସ ଦେଖାଯାଉଛି । ସେହି ଶୋଭାଯାତ୍ରା ମଝିରେ ୧୦।୧୨ଟା ଛ' ଖଣ୍ଡିଆ ଶବ ବୁହାହୋଇ ଚାଲିଛି । ଅନୁସନ୍ଧାନ କରି କୁମୁଦିନୀ ବୁଝିଲେ ଯେ, ଏ ଶବ ଢେଙ୍କାନାଳରୁ ଅଣା ହୋଇଅଛି । ଦେଶବାସୀଙ୍କ ଆଖିରେ ଆଙ୍ଗୁଳି ଦେଇ ଦେଖାଇ ଦେବାପାଇଁ ଯେ ପଡ଼ୋଶୀ ଗଡ଼ଜାତରେ କିପରି ଲୋକଙ୍କୁ ଗୁଳିକରି ମାରିଦିଆ ହେଉଅଛି । ଏ ଦୃଶ୍ୟ କୁମୁଦିନୀଙ୍କୁ ବଡ଼ ବୀଭତ୍ସ ବୋଧହେଲା ବରଂ କେତେଜଣ ଉତ୍‌କ୍ଷିପ୍ତ ହୋଇଯାଇ ଅତ୍ୟାଚାରୀଙ୍କୁ ଦେଖାଇ ଦଅନ୍ତେ ଯେ, ସେମାନେ ଅନ୍ୟମାନଙ୍କ ପ୍ରାଣ ଯେପରି ତୁଚ୍ଛ ମନେ କରୁଛନ୍ତି, ସେମାନଙ୍କ ନିଜ ପ୍ରାଣ ମଧ୍ୟ ସେହିପରି ତୁଚ୍ଛ । କିନ୍ତୁ ମୁରଦାରଙ୍କୁ ଆଣି ଶୋଭାଯାତ୍ରା କରିବା କ୍ଲୀବର ଅଭିମାନ ପ୍ରକାଶ କରିବା ଭଳି ତାଙ୍କୁ ବୋଧ ହେଲା । ସେ ପୁଣି ଜାଣିଲେ ଯେ, ଏ ପ୍ରକାର ଶୋଭାଯାତ୍ରାର ବନ୍ଦୋବସ୍ତ ଲାଲ-ମୋହନବାବୁ କରୁଛନ୍ତି । ସେ ସମୟରେ ଗଡଜାତରେ ଯେ ଅତ୍ୟାଚାର

ଚାଲିଥାଏ, ତାର ସମସ୍ତ ବିବରଣୀ ସେହି କଣ୍ଠରେ କୁମୁଦିନୀ ବିସ୍ମିତ ଭାବରେ ଶୁଣିଲେ ।

ନାରୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାରର ବୃତ୍ତାନ୍ତ ଶୁଣି ସେ ଏତେ ବିଚଳିତ ହେଲେ ଯେ, ତାଙ୍କର ମନେ ହେଲା, ସେ ତତ୍‌କ୍ଷଣାତ୍ ଯାଇ ଅନ୍ତତଃ ଜଣେ ଅତ୍ୟାଚାରୀକୁ ତାର ପ୍ରାଣ ବିନିମୟରେ ତାକୁ ନାରୀପ୍ରତି ସମ୍ମାନ ଦେଖାଇବାକୁ ଶିକ୍ଷା ଦିଅନ୍ତେ । ସେ ଏତେ ବିଚଳିତ ହେଲେ ଯେ, ସେ ଭାବିଲେ ନିଜେ ଘଟଣାସ୍ଥଳକୁ ଯାଇ ଅବସ୍ଥାର ସମ୍ମୁଖୀନ ହେବେ । ସେ ଶୁଣିବାକୁ ପାଇଲେ ଯେ, ଅନୁଗୁଳରେ ପ୍ରାୟ ପଚାଶ ହଜାର ଲୋକ ସ୍ତ୍ରୀ, ବାଳକଙ୍କ ସହିତ ଗଡ଼ଜାତରୁ ପଳାଇ ଆସି ପଡ଼ିଛନ୍ତି ଓ ସେଇଠି ଦିବ୍ୟଙ୍ଗି ହବାକୁ ପ୍ରସ୍ତୁତ ମଧ୍ୟ ଅଛନ୍ତି ।

ସେ ଦିନକପାଇଁ ଅନୁଗୁଳ ଗଲେ । ଅନୁଗୁଳଠାରୁ ଷୋଳମାଇଲ ଦୂରରେ କୋଶଳା ଗାଁରେ ପଳାତକମାନେ ଡାଳପତ୍ରରେ ପଡ଼ିଲ ମାତ୍ର ପଡ଼ିଛନ୍ତି । ଦୂରରୁ ଏକ ଶବର ବସ୍ତିପରି ଦେଖାଯାଉଛି । ସେଇଠି ଯାଇ କୁମୁଦିନୀ ପହଞ୍ଚିଲେ । ସେ ସମୟରେ ବଡ ଶୀତ ପଡ଼ୁଥାଏ । କିଛିଟା ପଦାରେ କେବଳ ପବନ ଭୁଲାଇବା ପାଇଁ ଖଣ୍ଡେ ଦୁଇଖଣ୍ଡ ଡାଳ ପୋତି- ଦେଇ ତା ଉପରେ ପତ୍ର ଝାଟି ପକାଇ ଦେଇ ହଜାର ହଜାର ଲୋକ ପଡ଼ିଛନ୍ତି । ଗୋଟିଏ ପଲ୍ଲୀ ଭିତରକୁ ଅନାଇ ଦେଖିଲେ ଯେ, ଯୁବତୀ ସ୍ତ୍ରୀଟିଏ, ତା କୋଳରେ ମାସେ ଦୁଇ ମାସର ଏକ ଶିଶୁକୁ ଶୁଆଇବା ପାଇଁ ଚେଷ୍ଟା କରୁଛି । ପାଖରେ ଗୋଟିଏ ଭଙ୍ଗା ହାଣ୍ଡିରେ ଅଳ୍ପ ପଖାଳଭାତ ଢଙ୍କା ହୋଇଅଛି । ଆଉ ଗୋଟିଏ ବୁଢ଼ୀ ଗୋଟିଏ ପାଖରେ ଶୋଇ ଜ୍ୱରରେ କମ୍ପୁଛି ।

କୁମୁଦିନୀ ବସିପଡି ପଲ୍ଲୀ ଭିତରକୁ ଘୁସୁରି ଘୁସୁରି ଗଲେ । ସେ ସ୍ତ୍ରୀ ଲୋକଟିକୁ ପଚାରିଲେ, "ତୁମର ସ୍ୱାମୀ କାହାଁନ୍ତି । ପ୍ରଶ୍ନ ଶୁଣିବା ମାତ୍ରକେ ସେହି ସ୍ତ୍ରୀ ଲୋକଟି କାନ୍ଦିବାରେ ଲାଗିଲେ । ମାତ୍ର ଜ୍ୱରରେ ପଡ଼ିଥିବା ବୁଢ଼ୀଟି

ଉଚ୍ଚସ୍ୱରରେ ଏହାର ଉତ୍ତର ଦେଲା, "ଆଉ ସେ ଅଛୁ ନା, ତାକୁ ମାରି ପକାଇଛନ୍ତି ଲୋ ମା-ତାକୁ ମାରିପକାଇଛନ୍ତି ।" ଏହାପରେ ବୁଢ଼ୀ ସୈନ୍ୟ ତଥା ରାଜ କର୍ମଚାରୀମାନଙ୍କୁ ମନଇଚ୍ଛାରେ ଗାଳି ଦେବାରେ ଲାଗିଲା । ସେ ସ୍ତ୍ରୀ ଲୋକଟିର ବିକଳ କାନ୍ଦଣା ସହି ନ ପାରି କୁମୁଦିନୀ ସେଠୁଁ ବାହାରି ଆସିଲେ ।

ତା ପରେ ଆଉ ଏକ ପଲ୍ଲରେ ଦେଖନ୍ତି ଜଣେ ପ୍ରୌଢ଼ା ସ୍ତ୍ରୀ ନାକରେ ସୁନାର ଗହଣା ପିନ୍ଧି ବସିଛି । ଚାରିପାଖ ଯାକ ଚାଉଳ ବସ୍ତା, ବାକସ, ଛୋଟ ସିନ୍ଦୁକ ସବୁ ଥୁଆ ହୋଇଛି । ପାଖରେ ଜଣେ ଚାକର ବସିଛି । ସ୍ତ୍ରୀ ଲୋକର ଚେହେରା କହି ଦେଉଅଛି ଯେ, ତାର କର୍ତ୍ତୃତ୍ୱ କରିବାର କ୍ଷମତା ଅଛି । କୁମୁଦିନୀ ଏ ପଲ୍ଲ ଭିତରକୁ ଯାଇଁ, ଏ ସ୍ତ୍ରୀ ଲୋକକୁ ସବୁ କଥା ପଚାରିଲେ । ସେ ସ୍ତ୍ରୀ ଲୋକ ଗମ୍ଭୀର ଭାବରେ କହିଲେ ଯେ, ସେ ଓ ତାର ସ୍ୱାମୀ କେବେ ଆଉ ରାଜାଙ୍କୁ ଫେରିବେ ନାହିଁ । ଯା ସମସ୍ତ ରଜାଘର ବାହି ନେଇଗଲା, ଯାଉ ସବୁ, ମାନ ତ ରହିଲା । ଘରେ ଘରେ ପଶି ଲୁଟତରାଜ, ସ୍ତ୍ରୀ ଲୋକଙ୍କ ଉପରେ ଅତ୍ୟାଚାର, ସେଥିରେ ଲୋକେ ଉତ୍ତେଜିତ ହେଲେ ଗୁଳି, ଏହିପରି କେତେ ଆଉ ମର୍ଷିଣ ସହିବ ।

କୁମୁଦିନୀ ଜାଣିପାରିଲେ ଯେ, ଏ ପରିବାର ସେ ଅଞ୍ଚଳରେ ଅତି ପ୍ରତି-ଷ୍ଠିତ ଓ ଧନୀ; ମାତ୍ର ବର୍ତ୍ତମାନ ପଲ୍ଲଛଡ଼ା ଅନ୍ୟ ଆଶ୍ରା ନାହିଁ । ଏହି ସ୍ତ୍ରୀ ଲୋକଟି ପଲାତକ ସମସ୍ତଙ୍କ ଖବର ବୁଝିଛି । ଓ ସମସ୍ତଙ୍କୁ ନିଜର କର୍ତ୍ତୃତ୍ୱରେ ଚପାଇ ରଖି ପରସ୍ପର ଭିତରେ ଶାନ୍ତି ରଖିଛି ।

ଦିବ୍ୟସିଂହ ବାବୁ ଆଉ ଟିକିଏ ଆଗରେ ଗୋଟିଏ ପଲ୍ଲରେ ଅଛନ୍ତି ବୋଲି ଏହିଠାରୁ କୁମୁଦିନୀ ଜାଣିଲେ । ଟିକିଏ ଆଗକୁ ଯାଇ ଦେଖନ୍ତି ଯେ, ଦିବ୍ୟସିଂହ ବାବୁ ସେ ଆଡ଼ୁ ଆସୁଛନ୍ତି । କୁମୁଦିନୀଙ୍କୁ ଦେଖି ସେ ଅତ୍ୟନ୍ତ ପ୍ରୀତି ପ୍ରକାଶ କରି କହିଲେ, "କି ହୋ, ତୁମେ କେବେ ଆସିଲ ? ଆଚ୍ଛା, କଥା ପଛେ ହେବ, ଏହିକ୍ଷଣି ଆସ ଯିବା ଡାକ୍ତର ବାବୁ ଆସିଛନ୍ତି । ଜଣେ ବୁଢ଼ୀ ଅତ୍ୟନ୍ତ ବେମାର ପଡ଼ିଛି । ତାକୁ ଦେଖି ଆସିବା ।"

ସମସ୍ତେ ଏକା ସାଙ୍ଗରେ ସେ ବୁଢ଼ୀର ପଲ୍ଲୀ ପାଖକୁ ଗଲେ । ବୁଢ଼ୀର ସାତ ପୁଅ । ଚାରିଜଣ କଲିକତାରେ, ଆଉ ତିନିଜଣ ଘରେ ଅଛନ୍ତି । ସେଥିରୁ ଦୁଇଜଣ ଗୁଳିଖାଇ ମରିଛନ୍ତି । ବୁଢ଼ୀର ବୟସ ପ୍ରାୟ ୬୫ ହେବ । ତାର ଦୋଷ ହେଉଛି ଯେ, ଯେତେବେଳେ ସୈନ୍ୟମାନେ ସେ ଗାଁ ଘେରାଉ କରି ଘର ଘର ଅତ୍ୟାଚାର ଆରମ୍ଭ କଲେ, ସେତେବେଳେ ଏ ବୁଢ଼ୀ କେତେଜଣ ପଶୁଙ୍କ ହାତରେ ପଡ଼ିଗଲା । ଜଣଙ୍କ ପରେ ଜଣେ ପାଶବିକ ଅତ୍ୟାଚାର କରିବା ଫଳରେ ବୁଢ଼ୀ ବେହୋସ୍ ହୋଇ ପଡ଼ି ଯାଇଥିଲା । ତା ପରେ ତାକୁ ଟେକି ଆଣି ପଲ୍ଲୀରେ ପକାଇଛନ୍ତି । ବର୍ତ୍ତମାନ ହୋସ୍ ଆସିଲାଣି । ଜନନେନ୍ଦ୍ରିୟ ଏମିତି ଭାବରେ ଜଖମ ହୋଇ ଯାଇଛି ଯେ, ସେ ଯନ୍ତ୍ରଣାରେ ବୁଢ଼ୀ ଅସ୍ଥିର ହେଉଛି ।

କୁମୁଦିନୀ ଏ ବୀଭତ୍ସ ଦୃଶ୍ୟ ଦେଖି ପାଗଳ ପ୍ରାୟ ହୋଇଗଲେ । ସେ ଜୋରରେ କହିଲେ, "ସେ ଗାଁ ବାଲାମାନେ ଏକଜୁଟ ହୋଇ ସେ ପଶୁ-ମାନଙ୍କ ଭିତରୁ ଜଣଙ୍କୁ ସୁଦ୍ଧା ମାରି ଦେଇ ପାରିଲେ ନାହିଁ ?"

ଜଣେ ପାଖରେ ଛିଡ଼ା ହୋଇଥିବା ଲୋକ କହିଲା, "ସେଠି କଣ କରିବୁଁ ? ଗୁଳି ଆଗରେ ଆମର ସାଧ କଣ ?"

କୁମୁଦିନୀ ତୀବ୍ର ସ୍ୱରରେ କହିଲେ, "ସେ ଏତେ ଅତ୍ୟାଚାର କରିଗଲେ, ଜଣକୁ ସୁଦ୍ଧା ମାରି ପାରିଲ ନାହିଁ ? ତୁମେ ଗୁଡ଼ାକ ନପୁଂସକ, ହୀନବୀର୍ଯ୍ୟ ।" ଦିବ୍ୟସିଂହ ବାବୁ ଅଳ୍ପ ହସି କୁମୁଦିନୀକୁ ଶାନ୍ତ କରି କହିଲେ, "ପରେ କଥାବାର୍ତ୍ତା ।" ସେଠି ବୁଢ଼ୀର ଚିକିତ୍ସାର ବ୍ୟବସ୍ଥା କରି ସାରିବା ପରେ ଡାକ୍ତର ଅନ୍ୟ ସବୁ ପଲ୍ଲୀ ଦେଖି ଆସିବା ପାଇଁ ବିଦାୟ କରି, ଦିବ୍ୟସିଂହ ବାବୁ କୁମୁଦିନୀକୁ ନେଇ ନିଜ ପଲ୍ଲୀକୁ ଫେରିଲେ ।

ଏକ ଅତ୍ୟାଚାର ପ୍ରଦର୍ଶନୀ ଭିତରେ ଛିଡ଼ାହେଲା ପରି ଅନୁଭବ କରି କୁମୁଦିନୀ ଅତି ଅସ୍ଥିର ମନେ କରୁ ଥାଆନ୍ତି । ଚାରି ଆଡ଼କୁ ଚାହିଁ "କହିଲେ "ଏ ସବୁର ଜବାବ ଦେବାକୁ ହେବ । ନ ହେଲେ ସୃଷ୍ଟିର ନିୟମ ବୋଲି ଆଉ କିଛି ରହିବ ନାହିଁ ।"

ଦର୍ଶସିଂହ ବାବୁ ଶାନ୍ତ ଭାବରେ କୁମୁଦନୀକୁ ବସିବାକୁ କହିଲେ ।

କୁମୁଦନୀ ସେହିପରି ଉଗ୍ର ଭାବରେ କହିଲେ, "ବସିବି କଣ ? ମୋତେ କହନ୍ତୁ, କଅଣ ଆପଣମାନେ କରୁଛନ୍ତି—ଏ ଅତ୍ୟାଚାରର ପ୍ରତ୍ୟୁତ୍ତର ଦେବା ପାଇ ।"

ଦର୍ଶସିଂହ ବାବୁ—"ପ୍ରତ୍ୟୁତ୍ତର ବୋଲି ଚିତ୍କାର କଲେ ତ କିଛି ହେବନାହିଁ ।"

କୁମୁଦନୀ—"ଆପଣ ବୋଧହୁଏ କହିବେ ଏ ସବୁ ଅତ୍ୟାଚାର ସହ୍ୟ କରିଯିବା ପାଇଁ ।"

ଦର୍ଶସିଂହ ବାବୁ ହସି ଉଠିଲେ ।

କୁମୁଦନୀ ପୁଣି କହିଲେ, "ମୁଁ ଜାଣେ ଆପଣ ଯାହା କହିବେ।"

ଦର୍ଶସିଂହ ବାବୁ କୁମୁଦନୀର ହାତଧରି ଟାଣି ବସାଇ ଦେଲେ । ତାପରେ ଧୀରେ ଧୀରେ କହିଲେ, "ବର୍ତ୍ତମାନ ପ୍ରଶ୍ନ ହେଉଛି, ଏ ହଜାର ହଜାର ଲୋକଙ୍କୁ ସାନ୍ତ୍ୱନା ଦେବା ଓ ସେମାନଙ୍କୁ ସବୁ ଦୁଃଖ ମୁଣ୍ଡେଇ ନେବା ପାଇଁ ଦୃଢ଼ କରିବା । ମରି ଯାଆନ୍ତୁ ପଛକେ ମୁଣ୍ଡ ନ ନୁଆଁନ୍ତୁ ।"

କୁମୁଦନୀ—"ଏମାନଙ୍କ ଭିତରୁ ମଜବୁତ୍ ଯେତେଜଣ ଅଛନ୍ତି ସମସ୍ତଙ୍କୁ ସାହାସ ଦେଇ ପଠାଇ ସେ ସୈନ୍ୟ ଛାଉଣୀକୁ ଘେରାଇ କରି ଅନ୍ତତଃ କେତେଜଣ ସେମାନଙ୍କ ଭିତରୁ ମାରି ଦିଆ ଯାଉ । ତେବେ ଜଗତ ଜାଣିବ ଯେ, କୌଣସି ଅତ୍ୟାଚାର ଅପ୍ରତିହତ ହୋଇ ଫେରି ନାହିଁ ।"

ଦର୍ଶସିଂହ ବାବୁ—"ଥଣ୍ଡାହୁଅ, ସବୁ କଥା ବିଚାର କର । ଧରି ନିଅ ଦୁଇଚାରି ଜଣ ସୈନ୍ୟଙ୍କୁ ଏମାନେ ମାରିଦେଲେ । ତାପରେ ଯଦି ଏମାନେ ଅତ୍ୟାଚାର ସହି ନ ପାରି ପୁଣି ଯାଇ ଶରଣ ପଶନ୍ତି, ତେବେ ତ ଯୁଗ ଯୁଗ ପାଇଁ ଏମାନଙ୍କ ଆତ୍ମ ସମ୍ମାନ ଚାଲିଯିବ । ବଳ ନାହିଁ, ଅଥଚ ବଳ ପ୍ରୟୋଗର ଚିନ୍ତା ଲାଭ କଅଣ ? ଯଦି ଆମ୍ଭେ ଏତିକି କହିପାରୁ ଯେ, ଯେତେ ଅତ୍ୟାଚାର ହେଉ ପଛକେ କେହି ଯେପରି ମୁଣ୍ଡ ନ ନୁଆଁନ୍ତି,

ତାହାହେଲେ ଅତ୍ୟାଚାର ବ୍ୟର୍ଥ ହୋଇଯିବ । ଏହି ହେଉଛି ନୈତିକ ପନ୍ଥା, ଯାହା ମାରିଲେ ବଡ଼ ବଡ଼ ପହଲ୍‌ମାନ୍ ସୁଦ୍ଧା ଚିତ୍ ମାତ୍ ହୋଇ ପଡ଼ିଯିବେ। ସେମାନେ ଭାବୁଛନ୍ତି ଏପରି ଅତ୍ୟାଚାର କଲେ ଲୋକ ଦବିଯିବେ । ଯଦି ଲୋକ ନ ଦବନ୍ତି ତେବେ ସେମାନେ କଣ କରିବେ ।

କୁମୁଦିନୀ ମୁହଁ ତଳକୁ କରି ବହୁ କ୍ଷଣ ଗମ୍ଭୀର ହୋଇ ବସି ରହିଲେ । ଦିବ୍ୟସିଂହ ବାବୁ କଅଣ କହିଲେ ତାର ଉତ୍ତର ଦେବା ଦୂରେ ଥାଉ, ତା ତାଙ୍କ କାନ ଭିତରକୁ ସୁଦ୍ଧା ଯାଇନାହିଁ । କିଛିକ୍ଷଣ ପରେ ତାଙ୍କର ଆଖି ଛଳ ଛଳ ହୋଇ ଆସିଲା । ଲୁଗା କାନିରେ ମୁହଁ ଢାଙ୍କି ଦେଲେ । ବହୁକ୍ଷଣ ପରେ, ଯେତେବେଳେ ଦିବ୍ୟସିଂହ ବାବୁ ପଚାରିଲେ, "ଆଜି ଏଠି ରହିବ ତ ?" ସେତେବେଳେ କୁମୁଦିନୀ ରୁଦ୍ଧ କଣ୍ଠରେ କହିଲେ, "ଏଇଠି ମରିଯିବା ପାଇଁ ମନ ହେଉଛି ।"

ସାଙ୍ଗେ ସାଙ୍ଗେ ପାଖରେ ଗୁରିଖଣ୍ଡ ଡାଳ ପୋତି, ଉପରେ ଆଠ ଦଶ ଖଣ୍ଡ ପଟ ଝାଟି ଲମ୍ବା ବାଗରେ ପକାଇ ଦେଇ, କୁମୁଦିନୀଙ୍କ ପାଇଁ ପଲାର ବନ୍ଦୋବସ୍ତ ହେଲା । ସାଙ୍ଗରେ ସୁଦର୍ଶନ ଥିଲା । ତାକୁ ଦିବ୍ୟସିଂହ-ବାବୁ କହିଲେ, "ସେହି ପଲା ଭିତରେ କିଛି ପଟ ଥୋଇ ଦେବାପାଇଁ ।"

—୨୩—

ଘଟ ପ୍ରାନ୍ତ ପଦ୍ମରେ ଖଣ୍ଡେ ହୋଇଛି । କୁମୁଦିନୀ ନିଜ ପଲଙ୍କ ଭିତରେ ବିଛଣା ଉପରେ ପଡ଼ିରହି ନାରୀଜାତିର ଦୁର୍ଦ୍ଦଶା ସମ୍ବନ୍ଧରେ ଚିନ୍ତା କରୁ-ଛନ୍ତି । କେତେ ଅତ୍ୟାଚାରର ଝଡ଼ତୋଫାନ ନାରୀଜାତି ଉପରେ ବହି ଯାଉଛି । ଅଥଚ ସେ ତାର ପ୍ରତିକାର କିଛି କରିପାରୁନାହିଁ । କାହିଁକି କରିପାରୁ ନାହିଁ । ତାହାର ନିଜଭିତରେ ଥିବା କୋମଳ ଶୋଭିବ ଗତ ଦୁର୍ବଳତା ହେତୁ ନା ସମ ଜର ଯୁଗଯୁଗ ବ୍ୟାପୀ କୃପାହେତୁ; ଏହି ଚିନ୍ତାରେ ମଗ୍ନଥିବା ସମୟରେ ବାହାରେ ଲଲମୋହନବାବୁଙ୍କର ପାଟି ଶୁଭିଲା-ତର୍କ ନ କରି କଣ କହୁଛନ୍ତି ?

କୁମୁଦିନୀ ହଠାତ୍ ଉଠିପଡ଼ି ବାହାରକୁ ଯାଇ ଦେଖିଲେ ଯେ, ଦିବ୍ୟସିଂହ ବାବୁ ତାଙ୍କ ପଲଙ୍କ ଆଗରେ ମୁହଁ ତଳକୁ କରି ବିଷର୍ଣ୍ଣ ହୋଇ ବସିଛନ୍ତି । ଲଲମୋହନ ବାବୁ ତାଙ୍କ ଆଗରେ ଛିଡ଼ାହୋଇ ଉତ୍ତେଜିତ ହୋଇ କହିବାରେ ଲାଗିଛନ୍ତି । ଆଉ କେତେ ଲୋକ ଚାରିପାଖ ଘେରି ଛିଡ଼ା ହୋଇଛନ୍ତି । "ଏ ହେଉଛି ଆପଣଙ୍କର ଅହିଂସା ନୀତି ? ଯେ ଅତ୍ୟାଚାରିତ ତାକୁହିଁ ଅତ୍ୟାଚାରୀ ଆଗରେ ନିନ୍ଦା କରି ପରୋକ୍ଷରେ ଅତ୍ୟାଚାରକୁ ସମର୍ଥନ କରିବା ।" ଏ ବିଷୟ କଅଣ କୁମୁଦିନୀ ବୁଝିବା ପାଇଁ ଭିଡ଼ ଭିତରକୁ ଯାଇ ଲଲମୋହନ ବାବୁଙ୍କ ଆଗରେ ଛିଡ଼ାହୋଇ ଗଲେ । ଲଲମୋହନ ବାବୁ ଏତେ ଉନ୍ମତ୍ତ ଯେ, କୁମୁଦିନୀକୁ ସେଠା-ହଠାତ୍ ଦେଖି ସେ ଟିକେମାତ୍ର ବିଚଳିତ ହେଲେ ନାହିଁ । କେବଳ ଟିକିଏ ନିରେଇ କରି ଚାହିଁଦେଲେ ମାତ୍ର । କୁମୁଦିନୀ କଥା କଣ ବୋଝି ପାରିଲେ ।

କୁମୁଦିନୀ ହଠାତ୍ ଉଠିପଡ଼ି ବାହାରକୁ ଯାଇ ଦେଖିଲେ ଯେ, ଢବାଂଶିହ୍ମ ବାବୁ ତାଙ୍କ ପଲ୍ଲୀ ଆଗରେ ମୁହଁ ତଳକୁ କରି ବସର୍ଣ୍ଣ ହୋଇ ବସିଛନ୍ତି । ଲଲମୋହନ ବାବୁ ତାଙ୍କ ଆଗରେ ଛିଡାହୋଇ ଉତ୍ତେଜିତ ଭାବରେ କହିବାରେ ଲଗିଛନ୍ତି । ଆଉ କେତେ ଲୋକ ଗୃହପାଖ ଘେରି ଛିଡା ହୋଇଛନ୍ତି—"ଏ ହେଉଛି । ଆପଣଙ୍କର ଅହିଂସା ନୀତି ? ଯେ ଅତ୍ୟାଗୃହିତ ତାହାର୍ ଅତ୍ୟାଗୃହୀ ଆଗରେ ନିନ୍ଦା କରି ପରୋକ୍ଷରେ ଅତ୍ୟାଗୃହକୁ ସମର୍ଥନ କରିବା ।" ଏ ବିଷୟ କଅଣ କୁମୁଦିନୀ ବୁଝିବା ପାଇଁ ଭିଡ଼ ଭିତରକୁ ଯାଇ ଲଲମୋହନ ବାବୁଙ୍କଆଗରେ ଛିଡାହୋଇ ଗଲେ । ଲଲମୋହନ ବାବୁ ଏତେ ଉନ୍ମତ୍ତ ଯେ, କୁମୁଦିନୀକୁ ସେଠି ହଠାତ୍ ଦେଖି ସେ ତିଳେମାତ୍ର ବିଚଳିତ ହେଲେ ନାହିଁ । କେବଳ ଯାହା ଟିକିଏ ନଠେଇ କରି ଚାହିଁଦେଲେ ମାତ୍ର । କୁମୁଦିନୀ କଥା କଣ ପଚାରିଲେ ।

ଲଲମୋହନ ବାବୁ—"ଢବାଂଶିହ୍ମ ବାବୁଙ୍କ ଆଶ୍ରମର ବ୍ରଜକିଶୋର ବାବୁ ବର୍ତ୍ତମାନ ଢେଙ୍କାନାଳ, ତାଲଚେରରେ ବୁଲି ଗୃହଅଢ଼େ କହୁଛନ୍ତି ଯେ, ଗାଁ ଲୋକ ଯେ ଲାଠି ବାଡ଼ି ନେଇ ରାଜାଘର ପାଇକ ବା ଗୋରା-ସୈନ୍ୟଙ୍କୁ ମାରିବାକୁ ବାହାରୁଛନ୍ତି, ଏହା ଅନ୍ୟାୟ, କାରଣ ତା ଅହିଂସା ନୀତି ବିରୁଦ୍ଧ । ସେ ଲୋକଙ୍କୁ ଏପରି ଭାବରେ ନିନ୍ଦା କରୁଛନ୍ତି ଯେ, ଗୋଟିଏ ଦୋ'ଟି ଗାଁରେ ତାଙ୍କ କଥା ଶୁଣି ଲୋକେ ଏତେ ଦବି ଗଲେଣି ଯେ, ରଜାଘର ଲୋକ ସେମାନଙ୍କଠୁ କ୍ଷମାପତ୍ର ଲେଖାଇ ନେଇ ସାରିଲେଣି । ଆଉ ଏ ସବୁ କାମ ବ୍ରଜକିଶୋର ବାବୁଙ୍କ ସାମନାରେ ହେଉଛି । ସେହି କଥା ମୁଁ ଢବାଂଶିହ୍ମ ବାବୁଙ୍କୁ କହୁଛି; ଏହି କଅଣ ଅହିଂସା ନୀତିର ଯଥାର୍ଥ ପ୍ରୟୋଗ, ଲୋକଙ୍କୁ କାପୁରୁଷ କରି ଛାଡିଦେବା ? ଲୋକ ତତେଇ, ଗୁଳି ପ୍ରଭୃତି ଯାବତ୍ ଅତ୍ୟାଗୃହ ସହ୍ୟ କରି ଶେଷରେ କ୍ଷମାପତ୍ର ଲେଖି ଦେଇ ଶାନ୍ତି-ଭଙ୍ଗ କରିବା ?"

କୁମୁଦିନୀ ତେଜି ଯାଇ କହିଲେ, "ତାହାହିଁ ଯଦି ଅହିଂସା ହୋଇ ଥାଏ, ତେବେ ଯେତେ ଶୀଘ୍ର ତାର ଧ୍ୱଂସ ସାଧିତ ହୁଏ ତେତେ ଭଲ ।" ସେ ଆଉ କଅଣ କହିବାକୁ ଯାଉଥିଲେ, ଏହି ସମୟରେ ଢବାଂଶିହ୍ମ ବାବୁ

ଘରମେ ଧନ ବାବୁଙ୍କୁ ଟାଣି ବସାଇ ଦେଲେ ଓ ବୃନ୍ଦଙ୍କୁ ବସିବା ପାଇଁ କହିଲେ ।

ସମସ୍ତେ ବସିବାପରେ ସେ ଧୀରେ ଧୀରେ କହିଲେ, "ଏ ଦେଶର ଦୁର୍ଭାଗ୍ୟ ଏହି ଯେ, କୌଣସି ଜିନଷକୁ ଲୋକେ ସିନ୍ଦୁକ ଭିତରେ ବନ୍ଦ କରି ତାଲା ମାରି ପକାଇ ତାକୁ ପୂଜା କରନ୍ତି । ମୋତେ ବଡ଼ ଦୁଃଖ ହେଉଛି ଯେ, ଏ ଅହିଂସାନୀତିକୁ ମଧ୍ୟ ସେହିପରି ସିନ୍ଦୁକ ଭିତରେ ପୂରାଇ କେତେକ ମାରି ପକାଇଲେଣି । ବିରାଡ଼ି ମୂଷାକୁ ଧରିବାପାଇଁ ବସିଛି । ମୂଷା ଯଦି ନିଜକୁ ବଞ୍ଚାଇବା ପାଇଁ ଏପାଖ ସେପାଖ ହେବାଫଳରେ ତାର ଗୋଡ଼ ନଖ ବିରାଡ଼ି ଦେହରେ ବାଜି କିଏ ଛିଡ଼ିଯାଏ, ତେବେ କେଉଁ ମୂର୍ଖ କହିବ ଯେ, ମୂଷା ବିରାଡ଼ି ପ୍ରତି ହିଂସା ଆଚରଣ କରୁଛି । ଯେ ଏ କଥା କହିବ, ସେ ଅହିଂସାର ତତ୍ତ୍ୱ କିଛି ବୁଝିନାହିଁ । ଯେଉଁଠି ତୋପ କମାଣ ଧରି ଗୋରା ସୈନ୍ୟ ଘେରିଛନ୍ତି ଓ ସେ ଘେରିଭିତରେ ବନ୍ଧୁକଧାରୀ ପାଇକ ଅତ୍ୟାଚାର କରୁଛନ୍ତି, ସେଠି ସଂପୂର୍ଣ୍ଣ ନିରସ୍ତ୍ର ଲୋକ ଲାଠି ବାଡ଼ିଧରି ନିଜ ମା ଭଉଣୀଙ୍କ ସମ୍ମାନ ରକ୍ଷାପାଇଁ ବାହାରିଲେ ତାକୁ ହିଂସା କହି ନିନ୍ଦା କରିବା ଅମନୁଷ୍ୟତା । ବ୍ରଜକିଶୋର ଯାହା କହୁଛି ଭୁଲ କରୁଛି । ଅହିଂସା ଏକ ସ୍ଥାଣୁ ନୀତି ନୁହେଁ । ଏହା ସବୁ ଟିକେଠାରୁ ଗତିଶୀଳ । ଅର୍ଥାତ୍ ଯେ କୌଣସି ଅବସ୍ଥାରେ ଏହାକୁ କାମରେ ଆଣି ପାରିହେବ । ଏଣୁ ଏହାର ମଧ୍ୟ ସୀମା ଅଛି । ଅବସ୍ଥା ଭେଦରେ ମାତ୍ରା ଭେଦ ମଧ୍ୟ ଅଛି । ତା ନ ହେଲେ ଷୋଳଅଣା ଅହିଂସା, ଯାହା ବହିରେ ଲେଖା ହୋଇଛି ବା ଯାହା ଜଣେ ପରିପୂର୍ଣ୍ଣ କାଂଗ୍ରେସ ପକ୍ଷରେ ସମ୍ଭବ, ସେଥିପାଇଁ ଟିକେ ଚଢ଼େଇ ଘୋଷି ହୋଇ ସେଥିରୁ ଟିକେ ଏପାଖ ସେପାଖ ହେଲେ, ତାକୁ ନିନ୍ଦା କରିବା ଅର୍ଥ ଅହିଂସାକୁ ସିନ୍ଦୁକରେ ମାରି ପକାଇ ଦେବା । ଦୁଃଖର ବିଷୟ ଅହିଂସାର ପ୍ରଚାରକ ନିଜେ ବଞ୍ଚି ଥାଇ ଥାଉଁ ... ର ଏପରି କଦର୍ଥ ହେଉଛି । ପରେ କଣ ହେବ ଭଗବାନ୍ ଜାଣନ୍ତି ।" ଏତିକି କହି ଦରିଂହି ବାବୁ ଏକ ଦୀର୍ଘ ନିଶ୍ୱାସ ପକାଇଲେ । ସଙ୍ଗେ ସଙ୍ଗେ ଏକ ପତ୍ର ଲେଖିଲେ, ବ୍ରଜକିଶୋର ବାବୁଙ୍କ ପାଖକୁ, ଶୀଘ୍ର ଆସି ତାଙ୍କୁ ଦେଖା କରିବାପାଇଁ ।

କୁମୁଦନୀ—"ଏତେ ଅତ୍ୟାଚାର ହୋଇଯାଉଛି, କେହି ସେ ଅତ୍ୟାଚାରୀକୁ ଅତ୍ୟାଚାରର ନିଭେଇବାର ସୁବିଧା ଦେଉ ନାହାନ୍ତି କାହିଁକି ?"

ଲାଲମୋହନବାବୁ—"ଅତ୍ୟାଚାରର ପରିମାଣ କଳନା କରିବା କେବେ? ମୋର କେତେଥର ମନ ହୋଇଛି ଯାଇ ସେ ଗୋରା ହାକିମଙ୍କୁ ଅତ୍ୟାଚାରର ଚୋଲନ୍ତେ କଅଣ ବୁଝାଏ ଜଣାଇ ଦେବାପାଇଁ ।"

କୁମୁଦନୀ—"ଖାଲି ମନ ହୋଇଛି ନା କାମରେ କେବେ ଚେଷ୍ଟା କରିଛ ?"

ଲାଲମୋହନବାବୁ ସଙ୍କୁଚିତ ହୋଇଗଲେ । ତାଙ୍କର ହଠାତ୍ ମନେ ପଡ଼ିଗଲା, କାଲିଠାରେ ଆନ୍ଦୋଳନ ବର୍ଣ୍ଣନା କଲାବେଳେ ଏହିପରି ମନ୍ତବ୍ୟ କୁମୁଦନୀ ପ୍ରକାଶ କରିଥିଲେ । ସେଥିରେ 'ସେ ଜଣେ କଥାର ଲୋକ, କାମର ନୁହନ୍ତି'—ଏହା ଯେପରି କୁମୁଦନୀଙ୍କ ଧାରଣା ହୋଇଯାଇଛି । କିଛିକ୍ଷଣ ସମସ୍ତେ ନୀରବ ରହିବାପରେ ଦିବ୍ୟସିଂହବାବୁ ବ୍ରଜକିଶୋରଙ୍କ ଠାକୁ ଚିଠି ପଠାଇବାର ବନ୍ଦୋବସ୍ତ କରି, ଅଳ୍ପ ହସି ଲାଲମୋହନବାବୁଙ୍କୁ କହିଲେ, "କୁମୁଦନୀ ଆଜି ଆସି ଏଠି ପହଞ୍ଚିଛନ୍ତି । ମୁଁ ତାଙ୍କୁ ପରାମର୍ଶ ଦେବି ବୋଲି ଭାବୁଛି । ସେ ଏଠୁଁ ଚାଲି ଯାନ୍ତୁ । ଏ ଯେ ଦାନବ ଲୀଳା ଚାଲିଛି, ତାକୁ ସେ ବରଦାସ୍ତ କରି ପାରିବେ ନାହିଁ । ତାଙ୍କର ହୃଦୟ ଅତି କୋମଳ ।"

ଲାଲମୋହନ ବାବୁ—"ବାସ୍ତବିକ ଏ ସବୁଥିରେ କୋମଳତାର ସ୍ଥାନ ନାହିଁ । ଛାତି ପଥର ନ ହେଲେ ଏ ସମସ୍ୟା ଭିତରେ ଦେଇ ଅତିକ୍ରମ କରିବା କଠିନ ।"

କୁମୁଦନୀ—"ସ୍ତ୍ରୀ ଲୋକ ବୋଲି ଯଦି ମୋତେ କୋମଳ ଭାବୁଥାନ୍ତି, ତେବେ ତାହା ଭୁଲ । ତେବେ ମୁଁ କେତେକ ପୁରୁଷଙ୍କ ପରି ଅନ୍ୟମାନଙ୍କୁ ଅତ୍ୟାଚାରର ମୁହଁକୁ ଠେଲିଦେଇ ପଛରେ ଉତ୍ସାହରେ ଛାତି ପିଟି ହେବା ଲୋକ ନୁହେଁ । ମୁଁ ମନେ କରୁଛି, ଏହି ପଳାତକମାନଙ୍କୁ ସଙ୍ଗବଦ୍ଧ କରି, ଅନ୍ତତଃ କେତେକ ଅତ୍ୟାଚାରୀଙ୍କୁ ଉଚିତ ଶିକ୍ଷା ଦେବି ।"

ଦିବ୍ୟସିଂହ ବାବୁ—"ସେହି ତ କୋମଳତାର ଲକ୍ଷଣ । ତୁମେ କଅଣ ମନେ କରୁଛ, ବ୍ରଜକିଶୋର ଯାହା କହୁଛି ତା କୋମଳତା, ସେ ତ ବଣୁଙ୍କ ହିଂସ୍ରତା ବା ମୂର୍ଖତା । ଦୂର ଦୃଷ୍ଟିରେ କୌଣସି କଥା ବିଗ୍ଭର ନ କରି ଉପସ୍ଥିତ ଘଟଣାରେ ବାହାରି ଯିବା ହେଉଛି ବଣୁଙ୍କ କୋମଳତା, ଯାହା ଏଠି କିଛି କାମରେ ଲାଗିବ ନାହିଁ ।"

ଲାଲମୋହନବାବୁ କୁମୁଦିନୀଙ୍କ କଥାରେ ତାଙ୍କ ନିଜ ପ୍ରତି କିଛି ଆକ୍ଷେପ ଥିବାର ଅନୁମାନ କଲେ । ସେ ଅନେକକ୍ଷଣ ଚୁପ୍ ରହି ଶେଷରେ କହିଲେ, "ସମୟ ଜଣାଇ ଦେବ, କେତେକ ପୁରୁଷ କଣ କରୁଛନ୍ତି । ମାତ୍ର ତୁମେ ଏଠୁ ଫେରି ଯାଅ । କାରଣ ଏଠା ଅବସ୍ଥା କେତେବେଳେ ଯେ, କଅଣ ହେବ ତାର ଠିକଣା ନାହିଁ ।"

କୁମୁଦିନୀ—"ମୁଁ ଏଇଠି ରହିବି ଓ ଅବସ୍ଥା ବୁଝି ମୁଁ କିଛି କରିବି ।

ଦିବ୍ୟସିଂହବାବୁ— "ଆଚ୍ଛା, ତୁମେ ଏହି ପଳାତକମାନଙ୍କ ଭିତରେ ରୋଗୀଙ୍କ ଖବର ବୁଝ । କେବଳ ସେବକର ଭାର ନିଅ । ତେବେ ମୁଁ କିଛି ମୁକ୍ତ ହେବି ।"

କୁମୁଦିନୀ—"ସେ ପ୍ରକାର ସେବା କାମରେ ମୋ ମନ ଲାଗିବନାହିଁ । ମୁଁ ଏଇଠି ରହି ଏ ପଳାତକମାନଙ୍କ ଭିତରେ ବିଚରଣ କରି, ଏମାନଙ୍କ ଭିତରେ ଉତ୍ସାହର ପ୍ରବାହ ଖେଳାଇ ଦେବି ।"

ଲାଲମୋହନବାବୁ—"ତୁମେ ଯାଅ । ଏଠି ତୁମର କିଛି କରିବାର ନାହିଁ । ମୁଁ ଆଜି ଏଠୁ ଯାଉଛି ଏକ କାର୍ଯ୍ୟକ୍ରମରେ ।"

କୁମୁଦିନୀ—"ମୁଁ ଏଇଠି ରହିବି ଓ ଏ ଅତ୍ୟାଚାରର କିଛି ପ୍ରତିକାର କରିବି ।"

ପରେ ଏବିଷୟ ଆଲୋଚିତ ହେବ ବୋଲି କହି ଦିବ୍ୟସିଂହ ବାବୁ ଅନ୍ୟକଥା ପକାଇଲେ ।

ରାତ୍ର ଛଅଘଡ଼ି ବେଳକୁ ଖିଆପିଆ ସରିଲା । ଲଲମୋହନ ବାବୁ ସୁବିଧା ଖୋଜି ବୁଲୁଥିଲେ, କିପରି କୁମୁଦିନୀଙ୍କ ସହିତ ଏକୁଟିଆ ଟିକିଏ କଥାବାର୍ତ୍ତା କରିବେ । ସେ ସୁବିଧା ଜୁଟିଗଲା, ଯେତେବେଳେ ଖାଇସାରି ଧୋବ ଫର ଫର ଜହ୍ନ ରାତିରେ କୁମୁଦିନୀ ପଲ୍ଲୀ ବାହାରେ ପଡ଼ିଆକୁ ଟିକେ ବୁଲିବାକୁ ଗଲେ । ଚାରିପାଖ ପଲ୍ଲୀ ଓ ମଝିରେ ନିତାନ୍ତ ବୀଭତ୍ସ ଅତ୍ୟାଚାରର କରୁଣ କାହାଣୀ ଶୁଣି ଶୁଣି କୁମୁଦିନୀଙ୍କ ମନ ଉଚାଟିଗଲା । ତେଣୁ ସେ ପଲ୍ଲୀଠାରୁ କିଛି ଦୂରକୁ ଚାଲିଯାଇ ଏକାକୀ ପଡ଼ିଆରେ ପାଇଚାରି କରୁଛନ୍ତି । ଉପରୁ ଜହ୍ନ ଯେପରି ଶୀତଳ ହାର୍ଦ୍ଦ୍ୟ- ଦେଇ ଦେଇ ତଳେ ସମସ୍ତଙ୍କୁ ସାନ୍ତ୍ୱନା ଦେଉଛି । ଦୂରରେ ଗଛ ସନ୍ଧିରେ ପେଚାଟିଏ ବସି କାନ୍ଦିଲା ପରି ଉଁ ଉଁ ଶବ୍ଦ କରୁଛି, ଯେପରି କି ସେ ଘୋଷଣା କରୁଛି ଯେ, ସୁଖର ଚାନ୍ଦନୀ ଭିତରେ ଦୁଃଖ ମଧ୍ୟ ରହିଛି । ଧୀରେ ଧୀରେ ଥଣ୍ଡା ଉତ୍ତର ପବନ ବହୁଛି, ଦୁନିଆକୁ କାନେ କାନେ କହୁଛି 'ମୁଁ ସେହି ପବନ, ଯାହାକୁ ଗରମଦିନେ ତୁମେ ସବୁ ଖୋଜି ବୁଲୁଥାଅ— ସେହି ପୁଣି ମୁଁ ମୋତେ ବର୍ତ୍ତମାନ ଦୁଆର କିଳୁଛ ।' ଅଳ୍ପ ଦୂରରେ ଶିଆଳ ଡ଼ାକୁଛି 'ହୁକେ ହୁ' କରି । ସେମାନେ ସତେ ଯେପରି ମନୁଷ୍ୟପ୍ରତି ମନୁଷ୍ୟର ଅତ୍ୟାଚାରକୁ ପରିହାସ କରୁଛନ୍ତି ।

କୁମୁଦିନୀ ଧୀରେ ଧୀରେ ପାଦ ଗଣି ଗଣି ଚାଲୁଛନ୍ତି । ପଛରୁ ଲଲ-ମୋହନ ବାବୁ କୁମୁଦିନୀଙ୍କ ପାଖକୁ ଧୀରେ ଧୀରେ ଯାଇ ତାଙ୍କ କାନ୍ଧରେ

ହାତ ପକାଇ ଦେଲେ । ଠିକ୍ ଏ ସମୟ ପରେ କୁମୁଦିନୀ ଚୂପ ରହିଲେ ଓ ସେ ମଧ୍ୟ ତାଙ୍କର ଅଳସ ହାତଟିକୁ ଲାଲମୋହନଙ୍କ କାନ୍ଧରେ ଥୋଇ-ଦେଲେ । ଲାଲମୋହନବାବୁ କୋମଳ ଭାବରେ କହିଲେ, "ତୁମଙ୍କୁ ମୁଁ ଏପରି ଦେଖି ବିସ୍ମିତ ହୋଇଗଲି ।"

କୁମୁଦିନୀ—"କାହିଁକି ? ତୁମେ କଣ ମନେ କର ମୁଁ ହୃଦୟ ଶୂନ୍ୟ ଜୀବ ଓ କେବଳ ପ୍ରେମହିଁ ମୋର ଗଣ୍ଠି ଧନ । ଆଉ ଦୁନିଆରେ କିଛି ନାହିଁ ।

ଲାଲମୋହନବାବୁ—"ନା, ତା ମୁଁ ମନେ କରେ ନାହିଁ । ମାତ୍ର ତୁମେ ଏସବୁ ବିଷୟରେ କେବେ ଶ୍ରଦ୍ଧା ପ୍ରକାଶ କରନାହିଁ, ସେଥିପାଇଁ ବିସ୍ମିତ ହେଲି ।"

କୁମୁଦିନୀ ହସିଉଠି କହିଲେ,"ତାହାହେଲେ ତ ତୁମେ ମୋତେ ଖୁବ୍ ଚିହ୍ନିଛ ? ବରଂ ମୁଁ ଯେତେବେଳେ ସ୍ପୃହା ଦେଖାଇଛି, ସେତେବେଳେ ତୁମେ ମୋତେ ସେ କଥାରୁ ନେଇ ଅନ୍ୟ କଥାରେ ପହଞ୍ଚାଇ ଦେଉଛ । ତାର କାରଣ ମୁଁ କହିବି ?"

ଲାଲମୋହନବାବୁ—"ମୁଁ ତ ସେପରି କେବେ କରିନାହିଁ । ତେବେ କଣ ତୁମେ କହ ।"

କୁମୁଦିନୀ—"ତାର କାରଣ ତୁମେ ଏସବୁ କାମରେ ଏକୁଟିଆ ଯିବାକୁ ଚାହଁ । କାଳେ ଆଉ କେହି ସାଥିରେ ରହିଲେ, ତୁମକୁ ଅସୁବିଧା ହେବ ?"

ଲାଲମୋହନବାବୁ କୁମୁଦିନୀଙ୍କୁ ପାଖକୁ ଟାଣି ନେଇ ହସି ହସି କହିଲେ, "ସେ କଥା ସତ, ମୋର କର୍ମମୟ ଜୀବନରେ ମୁଁ କାହାରିକୁ ସାଥିରେ ରଖିଲେ ମୋତେ ବଡ଼ ଅଡୁଆ ଲାଗେ । ଯେପରି ଗୋଡ଼ ହାତ କିଏ ବାନ୍ଧି ପକାଏ !

କୁମୁଦିନୀ—"ତାର ପ୍ରତିକ୍ରିୟା ସ୍ୱରୂପ, ତୁମେ କାହାର ହୃଦୟକୁ ଦଖଲ କରି ପାରୁନାହଁ । ତମେ ମନେ କରୁଛ ଯେ, ଆଉ ଜଣେ ତୁମ ମନ ଅନୁଯାୟୀ ନିଜକୁ ତିଆରି ରଖିଥିବ ଓ ବଡ଼ଲୋକଙ୍କ ଖିଆଲ ବୋହିଲେ

ଯେପରି ଗୃହର ପଙ୍ଖା କରନ୍ତି, ସେହିପରି ତୁମେ ଯେତେବେଳେ କର୍ମ-କ୍ଳାନ୍ତ, ସେତେବେଳେ ତୁମକୁ ଜଣେ ପ୍ରେମର ପଙ୍ଖାରେ ସେବା କରିବ।

ସେପରି କାହାକୁ ତୁମେ ଏ ଦୁନିଆରେ ପାଇବ ନାହିଁ। ଯେ ଧର୍ମର ସାଥୀ, ସେ ମଧ୍ୟ କର୍ମର ସାଥୀ ହେବାକୁ ଗୃହିବ।"

ଲଲମୋହନବାବୁ କହିଲେ,"ଛାଡ଼ ସେ ସବୁ ସିଦ୍ଧାନ୍ତର କଥା—ମୁଁ ଯାହା ତୁମେଭଲ କରି ଜାଣିଛ; ଆଉ ଏ ବୟସରେ ମୋର ପରିବର୍ତ୍ତନ ଘଟିବାର ସମ୍ଭାବନା ନାହିଁ। ହଁ ତୁମେ କେବେ ଯିବ ?"

• କୁମୁଦନୀ— "ମୁଁ ତ ଏଠି ରହିବ।"

ଲଲମୋହନ ବାବୁ—"ମୋର ଅନୁରୋଧ ତୁମେ ଏଠୁଁ ଗୃଲିଯାଅ।"

କୁମୁଦନୀ—"ତାର କାରଣ ?"

ଲଲମୋହନବାବୁ—"ସଂକ୍ଷେପରେ କହିବାକୁ ଗଲେ ତାର କାରଣ ମୁଁ। ତୁମେ ଏଠି ରହିଲେ ମୋ ମନ ବରାବର ଏଇଠି ରହିବ। ମୁଁ ପୁରା ମନ ଦେଇ ଯେ କାମ କରୁଛି, ତା' ଆଉ କରି ପାରିବ ନାହିଁ। ତୁମେ ଜାଣ ମୋ ମନ ବଡ଼ ଅଶୃଙ୍ଖଳିତ। ଯେତେବେଳେ କାମରେ ମାତିଥାଏ, ସେତେବେଳେ ସବୁ ମୁଁ ଭୁଲିଯାଏ। ପୁଣି ଯେତେ-ବେଳେ କାମ ନ ଥାଏ, ସେତେବେଳେ ମୋ ପ୍ରାଣ ଅସ୍ଥିର ହୋଇପଡ଼େ, ଯାହା ତୁମର ଆଶ୍ରା ନିଏ। ଯେତେବେଳେ ତୁମର ଆଶ୍ରାରେ ଥାଏ, ସେତେ-ବେଳେ ହଜାରେ କାମଥିଲେ ମଧ୍ୟ ତାକୁ ଭୁଲିଯାଏ।"

କୁମୁଦନୀ—"ମୁଁ ଯଦି ଏଇଠି ରହେ, ତୁମେ କଅଣ ଆଉ କୁଆଡ଼େ ନ ଯାଇ ଏଇଠି ଆସି ରହିବ !"

ଲଲମୋହନବାବୁ— "ଆଉ ଯୁଆଡ଼କୁ ଗଲେ ମଧ୍ୟ ମନ ସବୁ-ବେଳେ ଏଇଠି ରହିବ। ମୁଁ ଯେଉଁ କାମରେ ମାତିଛି, ମୋର ସ୍ନେହ ଯଦି ସେ କାମ ଭିତରକୁ ଆସେ, ତେବେ ମୋର ଗତିରୁଦ୍ଧ ହୋଇଯିବ।"

କୁମୁଦନୀ— "ତେବେ ତୁମେ ସ୍ତ୍ରୀ କୁ ସହଧର୍ମିଣୀ ବୋଲି ମନେକର ନାହିଁ ।"

ଲଲମୋହନବାବୁ—"ବୋଧହୁଏ ନୁହେଁ, କର୍ମ କ୍ଲାନ୍ତ ଜୀବନ ଯଦି ଅସ୍ଥିରବୋଧ ନ କରୁଥାନ୍ତା, ତେବେ ତ ପ୍ରେମର କୌଣସି ଆବଶ୍ୟକତା ଦେଖନ୍ତି ନାହିଁ ।"

କୁମୁଦନୀ—"ବୁଝିଲି ତୁମ କଥା । ଆଚ୍ଛା, ତୁମକୁ ସାହାଯ୍ୟ କରିବା-ପାଇଁ ମୁଁ ଏଠୁ ଯିବି । ବାସ୍ତବିକ ଏ ମୋର ସ୍ନେହ ନୁହେଁ । ନର୍ଯ୍ୟାତିତ ନାରୀକୁ ସେବା କରିବା ମୋର କର୍ତ୍ତବ୍ୟ । ଅଲଦିନ ହେଲି ଜଣେ , ଅତ ନର୍ଯ୍ୟାତିତା ନାରୀର ସେବାର ଭାର ମୁଁ ହାତକୁ ନେଇଛି ।"

ଲଲମୋହନବାବୁ—"କିଏ ସେ ?"

କୁମୁଦନୀ—"ସେ ଜଣେ ପ୍ରସିଦ୍ଧ ବ୍ୟକ୍ତିଙ୍କ ଦ୍ୱାରା ଅତ୍ୟାଚରିତ । ଏଣୁ ତାର ସେବାରେ ମୁଁ ଗୌରବ ଅନୁଭବ କରୁଛି । ସେ କଥା ତୁମେ ପରେ ଜାଣିବ ।"

ଲଲମୋହନବାବୁ—"ତେବେ ତୁମେ ଏଠୁ କାଲି ଯିବ ? ମୁଁ ବର୍ତ୍ତମାନ ଏଠୁ ବାହାରି ଯିବି, ମୋ ମନରେ ଏକ କାର୍ଯ୍ୟକ୍ରମ ଖେଳୁଛି । ତାକୁ ସାରିଲେ ହେବ ଯାହା ଦେଖା ହେବ ।"

କୁମୁଦନୀ—"ସବୁ କଥାରେ ତୁମେ ଏତେ ଚଞ୍ଚଳ କାହିଁକି ? କାଲି ସକାଳେ ଗଲେ କଣ ହେବ ନାହିଁ ?"

ଲଲମୋହନବାବୁ— "ମୋତେ ବର୍ତ୍ତମାନ ଯିବାକୁ ହେବ । ସେ ଗାଁ ଏଠିକି ସାତ କୋଶ । ସକାଳୁ ସେ ଗାଁକୁ ସୈନ୍ୟ ଘେରିବେ । ରାତ୍ରରେ ଯାଇ ସେଠାରେ ପହଞ୍ଚିବାକୁ ହେବ । ମୁଁ ବାହାରୁଛି । ତୁମେ କାଲି ଏଠୁ ଯିବ ?"

କୁମୁଦନୀ—"ହଁ ମୁଁ କାଲି ସକାଳେ ଚାଲିଯିବି ।"

ଦୁହେଁ ଯାକ ପରସ୍ପରକୁ ଥରେ ଗୃହାଁଗୃହିଁ ହେଲେ । ତାପରେ ଲଲମୋହନବାବୁ ବିଦାୟ ନେଲେ ।

ଲାଲମୋହନବାବୁ ଗଲା ପରେ କୁମୁଦିନୀ ବିଛଣାରେ ପଡ଼ି ଅନେକ ସମୟ ଚିନ୍ତା କରିବାରେ ଲାଗିଲେ । ବାସ୍ତବିକ୍ ଲାଲମୋହନବାବୁ କୌଣସି ପ୍ରକାରେ ନିଜକୁ ସଂଯତ କରି ଆଜୀବନ ଅବିବାହିତ ରହି ପାରି-ଥିଲେ ଭଲ ହୋଇଥାନ୍ତା । କାମରେ ତାଙ୍କର ଏତେ ଉନ୍ମାଦନା, ସେଇ-ଥିରେ ସେ ଆତ୍ମହରା । ମାତ୍ର ମନୁଷ୍ୟ ପ୍ରବୃତ୍ତି କାମର ଗୃହରେ ଦବି ଯାଇ ପୁଣି ଯେତେବେଳେ ମୁଣ୍ଡ ଟେକେ, ସେତେବେଳେ ସେ ଜଣେ ସାଥୀ ଖୋଜେ । ସେ ସାଥୀ ହେବ ତାକୁ ଏକ କଳ, ନାଁ କଣ ମନେ କରନ୍ତି ସେ । ସେପରି ମନେ କରୁଥିଲେ ବା ତାଙ୍କର ଦୋଷ ହେବ କାହିଁକି ? ମୁଁ ତ ସ୍ୱାମୀ ପାଇଁ ବିବାହର କଳ୍ପନା କରୁନାହିଁ । ମୁଁ ଏକ ଶିଶୁପାଇଁ ସ୍ୱାମୀ ବରଣ କରିବାକୁ ଯାଉଛି । ସନ୍ତାନ ବାତ୍ସଲ୍ୟ ମୋର ଯେପରି ସ୍ୱାର୍ଥ, ସେହିପରି ଚିତ୍ତ ବିନୋ-ଦନ ମଧ୍ୟ ତାଙ୍କର ସ୍ୱାର୍ଥ । ଏ ଦୁଇ ସ୍ୱାର୍ଥକୁ ବଜାୟ ରଖି ସମତା ସ୍ଥାପନ କରିବା ତ ବିବାହିତ ଜୀବନର ଅର୍ଥ । ଯେଉଁମାନେ କେବଳ ପ୍ରେମର ସ୍ୱାର୍ଥରେ ବିବାହ କରନ୍ତି, ସେମାନଙ୍କ କଥା ସ୍ୱତନ୍ତ୍ର । କିଏ ଜାଣେ ସେହି ପ୍ରେମହିଁ ସାଧାରଣ ସ୍ୱାର୍ଥ ହୋଇ ବହୁଦିନ ଯାବତ ରହେ କି ନା ? ହୁଏତ ପ୍ରଥମେ ପ୍ରେମର ପୂଜାରୀ ଉଭୟ ହେଉଥିବେ । ପୁଣି ଜୀବନର ଗତି ସଙ୍ଗେ ସଙ୍ଗେ ଉଭୟଙ୍କ ସ୍ୱାର୍ଥ ଭିନ୍ନ ଭିନ୍ନ ପଥ ଧରୁଥିବ । ଯଦି ସମତା ନ ରହିଲା, ତେବେ ସେ ବିବାହିତ ଜୀବନ ବିରକ୍ତି ଜନକ ହୋଇ ଯାଉ-ଥିବ । ସେଇଥିପାଇଁ ତ ସ୍ତ୍ରୀ ସ୍ୱାମୀର ପରସ୍ପର ସଂସର୍ଗ-ତ୍ୟାଗ ବହୁ-କ୍ଷେତ୍ରରେ ଘଟୁଛି । ଏପରି ଚିନ୍ତା କରୁ କରୁ ସେ ଶୋଇ ପଡିଲେ ।

ଲାଲମୋହନ ବାବୁ ଯେତେ ଶୀଘ୍ର ପାରନ୍ତି ଆଉଜଣଙ୍କୁ ସାଙ୍ଗରେ ନେଇ ସେ ଗାଁକୁ ଚାଲିଛନ୍ତି । ତାଙ୍କର ପାଦ ଯେତେ ଶୀଘ୍ର ଗତି କରୁଥାଏ, ତେତେ ତାଙ୍କର ଚିନ୍ତା ମଧ୍ୟ ପ୍ରଖର ହେଉଥାଏ । କର୍ମମୟ ଜୀବନରେ ବାସ୍ତବିକ୍ ପ୍ରେମର ସ୍ଥାନ ନାହିଁ । ଏକ ଭୁଲ ମୁଁ କରିଥିଲି ପ୍ରଥମ ବିବାହ କରି । ପୁଣି ବୋଧହୁଏ ଆଉ ଏକ ଭୁଲ କରିବାକୁ ଯାଉଛି । କୁମୁଦିନୀ କି ମୂର୍ତ୍ତିରେ ମୋ ସହିତ କଲିକତାରେ ଦେଖାହେଲା, ମନ୍ଦ-ଭାଗ୍ୟ ପରି, ମୋତେ ଭୁଲାଇ ଭୁଲାଇ କେତେଦୂର ନେଲାଣି । ଶେଷରେ ମୁଁ

ଯାଇ ଅତଳ ଗହ୍ୱରରେ ଝିନା ପଡ଼ିବ । ତା’ ସହିତ ମୋର ଯଦି ସାଧାରଣ ସମ୍ପର୍କ ଥାଆନ୍ତା, ତେବେ ସେ ଆସିଥିଲା କାମ କରିବାପାଇଁ, ମୁଁ ତ ତାକୁ ଆଦର ଅଭ୍ୟର୍ଥନା କରିଥାଆନ୍ତି । କିନ୍ତୁ ତାଙ୍କୁ ଦେଖିଲେ ମୋର ସ୍ନେହ ପ୍ରେମର ଉଚ୍ଛ୍ୱାସ କେଉଁଠି ଥାଏ ଉଚ୍ଛୁଳି ଉଠେ । ମୁଁ ଅସ୍ଥିର ହୋଇଯାଏ । କାହିଁକି ଏ ପ୍ରୀତି ମୁଁ ସୃଷ୍ଟି କଲି । କାହିଁ ସେ ନିଶାମଣି, କାହିଁ ବା କୁମୁଦିନୀ ? କର୍ମମୟ ଜୀବନରେ ଏମାନଙ୍କର ସ୍ଥାନ କାହିଁ ? ହୁଏତ ମୁଁ ମରିଯାଇ ପାରେ । ଜୀବନ ମୁଁ ବୁଝିଛି ଯେ କାମକୁ ବାହାରିଛି, ସେ ପ୍ରେମକୁ ତ ପ୍ରଥମେ ପଦାଘାତ କରି ବିଦାୟ ଦେବାର କଥା । ନିଶାମଣି ବିଚାରି କେତେ ଦୁଃଖରେ ଦିନ କାଟୁଥିବ । ମୋ ହାତ ଧରିଥିଲା, ଜୀବନର ସୁଖ ଭୋଗ ପାଇଁ । ତାକୁ ତ ସୁଖ ଦେଇ ପାରିଲି ନାହିଁ । ପୁଣି କୁମୁଦିନୀ ! ତାକୁ ବା ମୁଁ କି ସୁଖ ଦେବି ! ଦୁହିଁଙ୍କୁ ଏକ ସଙ୍ଗରେ ବା କେଉଁ ମୁହଁରେ ଦେଖିବି ? ଏ ବ୍ୟାପାର କୁଆଡ଼କୁ ଗତି କରୁଛି । ଭାଗ୍ୟେ କୁମୁଦିନୀ ସହିତ ବିବାହ ହୋଇନାହିଁ । ଅନ୍ୟଥା ମୁଁ ତ ଏକ ମହାଜଞ୍ଜାଳରେ ପଡ଼ିଥାଆନ୍ତି । ହୁଏତ ମୁଁ ଏତେ କାମ କରି ପାରୁ ନ ଥାନ୍ତି । ଭଲ ହୋଇଛି, ବିବାହ ହୋଇନାହିଁ । କର୍ମର ପ୍ରବାହରେ ପ୍ରେମର ସ୍ଥାନ ନାହିଁ । ଯାଆନ୍ତୁ ଯେ ଯାହା ଭାଗ୍ୟ ଘେନି । କାମରୁ ମୁଁ ଟିକିଏ ହେଲେ ବିଚଳିତ ହେବିନାହିଁ ।”

ଏ ଚିନ୍ତା ମଝିରେ ବାଦଲ ଭିତରୁ ଚନ୍ଦ୍ର ଧୀରେ ଧୀରେ ମୁହଁ କାଢ଼ିଲା ପରି ନିଶାମଣି ମଧ୍ୟ ଶୁଖିଲା ମୁହଁରେ ତାଙ୍କ କଳ୍ପନାର ଆଖିରେ ଆସି ପଡ଼ିଲା । ସେ ଜାଣନ୍ତି, ଭାଇ ଭାଗ ଘରେ ଉପାର୍ଜ୍ଜନ ହୀନ ଭାଇର ସ୍ତ୍ରୀଙ୍କ ଅପମାନ ସହେ । ତାଙ୍କ ବଡ଼ ଭାଇ ହରମୋହନ ଜଣେ କୁଟିଳ ପ୍ରକୃତିର ଲୋକ ଓ ତାଙ୍କର ସାନ ଭାଇ ପ୍ରତି ମୋଟେ ସହାନୁଭୂତି ନାହିଁ—ରହିବ ବା କାହିଁକି ? ଯେଉଁଠି ଭାଇ ପଣିଆ ସୁନା ରୁପାରେ ଓଜନ ହେଉଛି, ସେଠି ଯେ ଭାଇ ଆଦୌ କିଛି ଉପାର୍ଜ୍ଜନ କରୁନାହିଁ, ସେ ଭାଇ ତଳେ ରହିବ ବା କାହିଁକି ? ନିଶାମଣି ଯଦି ଶିକ୍ଷିତା ହୋଇଥାଆନ୍ତା, ତାର ଯଦି ମନ ଘର କରଣା ଆଡ଼କୁ ଦୌଡ଼ୁ ନ ଥାନ୍ତା, ତେବେ ତ ସେ ସବୁ କେଉଁ

ବାହାରୁ ଚାଲି ଆସିଥାଆନ୍ତା । ତାକୁ ସେ ନିଜେ ନେଇ ଆସି-
ଥାଆନ୍ତେ । ମାତ୍ର ସେ ଯେ ଅବସ୍ଥାରେ ଅଛି, ସେ ତ କର୍ମରେ ବନ୍ଧନ
ହେବ । ତେଣୁ ତା ଭାଗ୍ୟକୁ ତାକୁ ଛାଡ଼ିଦେବା ଛଡ଼ା ଉପାୟ କଅଣ ଅଛି ?
କୁମୁଦିନୀଙ୍କ ସହିତ ବିବାହ ପରେ ତା କଥା କଅଣ ହେବ ? ଜଶାମଣି
ବଦଳିବାର ନୁହେଁ । ତେଣୁ କୁମୁଦିନୀ ଲୋଡ଼ା । କିନ୍ତୁ କର୍ମମୟ ଜୀବ-
ନରେ କୁମୁଦିନୀର ବା କି ଲୋଡ଼ା ? ବାସ୍ତବିକ ଏ ସବୁ ଚିନ୍ତାର କର୍ମମୟ
ଜୀବନରେ ସ୍ଥାନ କାହିଁ ? କାହିଁକି ବା ଏ ସବୁ ଅବାନ୍ତର ଚିନ୍ତା ତାଙ୍କ
ମନକୁ ଆସୁଛି । ତାପରେ ଆସନ୍ତା କାଲିର ସମସ୍ୟା ଯୁଆର ଆସି ଧକ୍କା
ମାରିଲାରୁଁ କୁମୁଦିନୀ ଜଟାମଣି ଏ ସବୁ କୁଆଡ଼େ ମନରୁ ପଳାଇଲେ ।

କୁମୁଦିନୀ ପରଦିନ ସେ ପଲାତକମାନଙ୍କଠୁ ବିଦାୟ ନେଇ ପୁଣି କେନ୍ଦ୍ରାପଡ଼ା ଗଲେ । ଗତଥର ଗଲାବେଳେ ଡାକବଙ୍ଗଳା ଚୌକିଦାରକୁ ପାଞ୍ଚଟଙ୍କା ବକସିସ୍ ଦେଇଥିବାରୁ, ଏଥର ସେ କୁମୁଦିନୀଙ୍କ ସମସ୍ତ ସୁବିଧା ସହାଶେ ବେଶୀ ତତ୍ପର ହୋଇ ଲାଗିପଡ଼ିଲା । ଚୌକିଦାରର ଧାରଣା ହୋଇପାରିଛି ଯେ, କୁମୁଦିନୀ ଜଣେ ଅତି ଧନୀ ପଶ୍ଚିମା ସ୍ତ୍ରୀଲୋକ । ତାକୁ ସଙ୍ଗରେ ନେଇ କୁମୁଦିନୀ ଲଲମୋହନ ବାବୁଙ୍କ ଗାଁକୁ ଗଲେ ।

କୁମୁଦିନୀ ହରମୋହନ ବାବୁଙ୍କୁ ଦେଖି କଣାମଣିକୁ ବିଦାୟ ଦେବାପାଇଁ ଅନୁରୋଧ କଲେ । ହରମୋହନଙ୍କ ମନ ଭିତରେ ପଶି ଯଦି ଜଣେ ଦେଖନ୍ତା, ତେବେ ସେ ଦେଖିବାକୁ ପାଆନ୍ତା, ଦୁଇଟି ପ୍ରକାର ଚିନ୍ତା ସେଠି ଚାଲିଛି । ଗୋଟିଏ କହୁଛି 'ଯାଉ, ତା ଭାରିଯା ତା ପାଖରେ ରହିବ । ତା ବୋହୂଟି କାହିଁକି ମୁଁ ମୁଣ୍ଡାଇ ବୁଲୁଥିବ । ସେ ଗଲେ ତାର ଖର୍ଚ୍ଚ ବଞ୍ଚିବ । ଯେତିକି ଲାଭ ହେଲା ସେତିକି ।' ଆଉ ଗୋଟିଏ ଚିନ୍ତା ହେଉଛି, ଭାଇ ତ ପାଠ ପଢ଼ୁଛି, ରୋଜଗାର ସିନା କରୁ ନାହିଁ, ମାତ୍ର ରୋଜଗାର କରିବାର ଶକ୍ତି ଅଛି ।'

'ଭାରିଯାକୁ ସାଙ୍ଗରେ ରଖି ଯଦି ରୋଜଗାର କରେ ତେବେ ତ ସେଥିରୁ କିଛି ମୋତେ ମିଳିବ ନାହିଁ । ଭାରିଯା ଘରେ ଥିଲେ, ଯେତେବେଳେ ସେ ରୋଜଗାର କରିବ ତା ଘରକୁ ଆସିବ ତ । ସେଥିରେ ମୋର ହାତ ମଧ୍ୟ ପଡ଼ିବ ?' ଏ ଦୁଇପ୍ରକାର ଚିନ୍ତାର ଠେଣାଠେଣିରେ ସେ ହଠାତ୍ କିଛି ମତ ଦେଇ ପାରିଲେ ନାହିଁ । ମାତ୍ର ପ୍ରଥମେ ଯେଉଁ

ଭଦ୍ରତା ଦେଖାଇବାର କଥା, ସେହି ଅନୁସାରେ କହିଲେ, "ଘର ବୋହୂକୁ ଏତେ ଜଲଦି କପର ପଠାଇ ଦେବ । କୁଆଡ଼ୁ କିଛି ନାହିଁ । ଘରେ ତ ଫେର୍ ସୁବିଧା ଅସୁବିଧା ଅଛି ।"

କୁମୁଦିନୀ—"କୌଣସି ସୁବିଧା ଆପଣଙ୍କୁ କରିବାକୁ ପଡ଼ିବ ନାହିଁ । ମୁଁ ସବୁ ସୁବିଧା କରି ଦେଇଯିବି ।" ଇତିମଧ୍ୟରେ ଡାକବଙ୍ଗଳା ଚୌକିଦାର ହରମୋହନ ବାବୁଙ୍କଠାକୁ ଯାଇ ଚୁପ୍ ଚୁପ୍ କହିଲା, "ଏ ଜଣେ ସେଠାଣୀ, କୁଆଡ଼ୁ ପଶ୍ଚିମରୁ ଆସିଛନ୍ତି । ସବୁ ସେ ଖର୍ଚ୍ଚ କରିବେ । ତୁମକୁ କିଛି କରିବାକୁ ପଡ଼ିବ ନାହିଁ । ହରମୋହନବାବୁ କିଛି ନ କହି ଘର ଭିତରକୁ ଉଠିଗଲେ । ଘରେ ନିଜ ସ୍ତ୍ରୀ ସହିତ ପରାମର୍ଶ କଲେ । ହରମୋହନ ବାବୁଙ୍କ ସ୍ତ୍ରୀ ନାକ ନଥ ହଲାଇ ଦେଇ କହିଲେ, "ତୁମଙ୍କୁ ପରା କହୁଥିଲି, ଘରେ ତ ନଜେ ଯିବାପାଇଁ ଗୋଡ଼ ଟେକି ବସିଛି । ସେଦିନ କି ମନ୍ତ୍ର ସେ ଶିଖିଲା କେଜାଣି, ସେ ତ ଯିବାକୁ ଦିନ ଗଣୁଛି । ଆମର ଅଟକାଇ ଲାଭ କଅଣ ? ଯାଉ ସେ ତାର ଘରକରଣା କରୁ ।" ବହୁ ଆଲୋଚନା ପରେ ସ୍ଥିର ହେଲା ଯେ, ନଶାମଣିକୁ ପଠାଇ ଦେବାକୁ ହେବ ।

ଇତିମଧ୍ୟରେ ନଶାମଣିର ଯିବାର ବନ୍ଦୋବସ୍ତ ହେଲା । ଖଣ୍ଡେ ସଫା ଶାଢ଼ି ପିନ୍ଧିବାକୁ ଦେଇ ହରମୋହନ ବାବୁଙ୍କ ସ୍ତ୍ରୀ କହିଲେ, "ତୁ ତ ବୋହୂ ଯାଉଛୁ ସହର ବଜାର ଜାଗାକୁ । କେତେ ରଙ୍ଗର ଜିନଷ ତୋତେ ମିଳିବ । ଆମେ ସିନା ଗରିବ ହୋଇ ପଡ଼ିଥିବୁଁ । ତୋତେ କଅଣ କିଛି ଅପ୍ରାପତ ହେବ ନା ?" ଏହାର ଅର୍ଥ ନଶାମଣି ଏହାହିଁ ବୁଝିଲା ଯେ, ଆଉ ଲୁଗାପଟା ତାର ଯାହା ଅଛି ତାକୁ ଦେବାକୁ ଚାହାନ୍ତି । ବାହାଘର ବେଳେ ଯେଉଁ ଶାଢ଼ି ଖଣ୍ଡିକ ବାପଘରୁ ଆଣିଥିଲା, ତାହାପ୍ରତି ନଶାମଣିର ଭାରି ମମତା । ସେ ଖଣ୍ଡିକ ମାଗିବା ବେଳକୁ ହରମୋହନ ବାବୁଙ୍କ ସ୍ତ୍ରୀ କହିଲେ, "ସେ ଥାଉ ଘରେ, ତୁ ତ ନୂଆ ନୂଆ କେତେ ଶାଢ଼ି କିଣିବୁ, ଘରେ ଯା ଅଛି ସେ ଥାଉ ।" ଗହଣା ଯା କିଛି ଥିଲା ପ୍ରାୟ ଟ ୧୫୦ ୍ ର ହେବ, ତାକୁ ମାଗିବା ବେଳକୁ ମଧ୍ୟ ସେହି ଉତ୍ତର ମିଳିଲା । ନଶାମଣି ଟିକିଏ ବିରକ୍ତ ହୋଇ କହିଲେ, "ମୋତେ

କଅଣ ଏହିପରି ଲଗାଇ କରି ପଠାଇ ଦେବ ନା ?" ହରମୋହନବାବୁ ବାହାରୁ ଥାଇ ଗଳା ଖଙ୍କାର ମାରି କହିଲେ, "ଘର ଜଳକ ଘରେ ଅଛି । ଆଗେ ଯାଅ, ସେଠିକା ହାଲ ହକିକତ ବୁଝି ପୁଣି ଖବର ଦେଲେ ପରେ ପଠାଇ ଦିଆଯିବ ।" କଣାମଣି ଆଉ କିଛି ନ କହି ଚୁପ୍ ହୋଇଗଲା । ଦେଢ଼ଶୁର ଉପରକୁ ରାଗୁଥାଏ; ମାତ୍ର ମନରେ ସୁଖର ଆଶା ଜାଗୁଥାଏ ଯେ, ବାସ୍ତବିକ ଏଣିକି ସେ ମନ ଅନୁସାରେ କେତେ ଗହଣା, କେତେ ଲୁଗାପଟା କରିବ । ଏଣୁ କଳି କଜିଆ କରିବାପାଇଁ ତା ମନ ହେଉଥିଲେ ମଧ୍ୟ, ତାକୁ ବନ୍ଦ କରୁଥାଏ ।

ଖୁଆଇ ପିଆଇ କଣାମଣିକୁ ବିଦାୟ କଲାବେଳେ ଘରେ ଅନ୍ୟ ସ୍ତ୍ରୀଲୋକ ଏପରି କି ହରମୋହନବାବୁ ନିଜେ ମଧ୍ୟ ବିକଳ ହୋଇ କାନ୍ଦିଲେ । ଏମାନଙ୍କ କାନ୍ଦଣା ଦେଖି କଣାମଣି ମଧ୍ୟ କାନ୍ଦିଲା । ସମସ୍ତଙ୍କୁ ଶାନ୍ତ କରାଇ କୁମୁଦିନୀ କଣାମଣିକୁ ନେଇ କେନ୍ଦ୍ରାପଡ଼ା ଆସିଲେ । ତାପରେ ପୁରୀ ଗଲେ ।

କଣାମଣି ଏହି ପ୍ରଥମ ଥର ଘର ଛାଡ଼ି ପଦାକୁ ଆସିଛି । ତାକୁ ସବୁ କମିତ କମାକାର ଜଣା ଯାଉଥାଏ । ପ୍ରଥମେ ମଟରରେ ଗଲାବେଳେ ସେ ତ ନ ଢୁଳେଇ ବସି ପାରିଲା ନାହିଁ । ତାପରେ ରେଳରେ ଚଢ଼ି ଥରେ ଦୁଇଥର ବାନ୍ତି ମଧ୍ୟ କଲା । ମାତ୍ର କୁମୁଦିନୀ ଯଥାଶକ୍ତି ତାର ସେବା ଶୁଶ୍ରୂଷା କରି ପୁରୀରେ ନିଜ ବସାରେ ନେଇ ପହଞ୍ଚାଇଲେ । ଅଳ୍ପ ପିଲାଦିନେ ଥରେ ନିଜ ବାପ ମାଆଙ୍କ ସହିତ କଣାମଣି ପୁରୀ ଆସିଥିଲା, ରଥଯାତ୍ରାକୁ । ତାର ଧାରଣା ପୁରୀରେ ଭାରି ଲୋକ ଭିଡ଼ । ପୁରୀ ଯିବାକୁ ହେଲେ ବହୁତ ପଇସା ଖର୍ଚ୍ଚ ହୁଏ । କାରଣ ଏହି ପୁରୀ ଆସିବାପାଇଁ ତା ବାପା ସେ ସମୟରେ ମାଣେ ଜମି ବିକ୍ରି କରିଥିଲେ । ବର୍ତ୍ତମାନ ସେ ଯେତେବେଳେ ଏତେ ସହଜରେ ପୁରୀ ଆସିଲା, ସେତେବେଳେ ତା ମନ ଭାରି ଖୁସି ହେଲା । ସେ ଶୁଣିଛି ଯେ ତା ସ୍ୱାମୀ ଯେତେ ପାଠ ପଢ଼ିଛନ୍ତି, ସେଥିରେ କେଜାଣେ କେତେ ଯେ ରୋଜଗାର କରିବେ, ତାର ଠିକଣା ନାହିଁ । ତା' ମନେ ମନେ କେତେବେଳେ ଏକଥା ଉଠିଛି ଯେ,

ସେ ବହୁତ ବେଶୀ ରୋଜଗାର କରି ପାରିବା ଲୋକ । ସେ କିଛି ନା କିଛି, ଅବଶ୍ୟ କମ୍ ସମୟରେ ରୋଜଗାର କରୁଥିବେ । ପୁରୀରେ ଯେଉଁ ବସାରେ ସେ ଯାଇଁ ରହିଲେ ସେ ଘର ଖୁବ୍ ଭଲ ଘର, ଆଉ କେହି ନାହାନ୍ତି । ଶୋଇବାପାଇଁ ଖଟ ଉପରେ ଗଦି ଓ ମୀଣ୍ଟା ବଡ ବଡ଼ ଲୁଗା ରଖା ପେଡ଼ି, ଆଉ ମୀଣ୍ଟା ଛୋଟ ଛୋଟ ବାକସ ଅଛି । ଏସବୁ ଦେଖି ନଶାମଣି ମନେ ଭାବିଲା, ଏସବୁ ତା ସ୍ୱାମୀ କମାଇଛନ୍ତି ଓ ତାକୁ ଆଣିବାପାଇଁ ଉଦ୍ଦେଶ୍ୟ ହେଉଛି ଯେ, ଭାଇମାନଙ୍କଠୁଁ ସେ ଅଲଗା ହୋଇ ନିଜ କଥା ନିଜେ ବୁଝିବେ ବୋଲି ସେ ବାହାରିଛନ୍ତି । ଏ ଚିନ୍ତା ତା ମନକୁ ଏତେ ଆନନ୍ଦ ଦେଲା ଯେ, ସେ ଅତର୍ଣ୍ଣିତ୍ର ଘର କଥା ପୂରାପୂରି ଭୁଲିଗଲା ।

କୁମୁଦିନୀ ତାକୁ ବୁଝାଇ କହିଲେ, "ଏ ତୁମର ଘର, ସବୁ ଜିନିଷ ତୁମର । ମୁଁ ଜାଣେ ତୁମକୁ ଖଣ୍ଡିଏ ଲୁଗା ମାତ୍ର ଦେଇ ଘରୁ ବିଦା କରି ଦେଲେ । ମାତ୍ର ଏସବୁ ଜିନିଷପତ୍ର ତୁମର । ତୁମର ସ୍ୱାମୀ ଅଳ୍ପ ଦିନେ ଆସିବେ । ସେ ଦେଶ କାମରେ ମାତିଛନ୍ତି । ତୁମେ ବ୍ୟସ୍ତ ହେବ ନାହିଁ । ଯାହା ଦରକାର ମୋତେ କହିବ ।"

ନଶାମଣିର ବାସ୍ତବିକ ବିଶ୍ୱାସ ଜନ୍ମିଲା ଯେ, ସେ ତା' ନିଜ ଘରେ ଆସି ପହଞ୍ଚିଛି । ଯେଉଁଠି ଭାଗ ଭାଗ ନେବାପାଇଁ କେହି ନାହିଁ । ଭଲ ଭଲ ଶାଢ଼ି ଗୁଡିଏ ଖଣ୍ଡ କାଢ଼ି କୁମୁଦିନୀ ତାକୁ ପିନ୍ଧିବାକୁ ଦେଲେ । ନଶାମଣି କେବେ କୁରୁତା ପିନ୍ଧେ ନାହିଁ । ତାକୁ କୁରୁତା ପିନ୍ଧିବା ଓ ଆଧୁନିକ ଢଙ୍ଗରେ ଲୁଗାପଟା ପିନ୍ଧିବା କୁମୁଦିନୀ ଶିଖାଇଲେ । ତା ପାଇଁ ନୂଆ କୁରୁତା ଓ ଅନ୍ୟାନ୍ୟ ଲୁଗାପଟା ଆସିଲା । ହାତରେ ଦୁଇ ଦୁଇ ପଟ ସୁନ୍ଦର ଚୁଡ଼ି ମଧ୍ୟ ତାକୁ ପିନ୍ଧିବାକୁ ଦେଲେ । ମାତ୍ର ତା ନାକରୁ ନୋଥକୁ କାଢ଼ି ପକାଇଲେ । ନୋଥ ସହିତ ସଧବାଙ୍କର ଯେ ସମ୍ପର୍କ ସେଥିରେ ଅତି କଷ୍ଟରେ ନଶାମଣି ତାକୁ କାଢ଼ିବାକୁ ରାଜି ହେଲା । ମୁଣ୍ଡରେ ଲଗାଇବାପାଇ ଭଲ ବାସନା ତେଲ ମଧ୍ୟ ମିଳିଲା । ନିଜକୁ କୌଣସି କାମ କରିବାକୁ ହେଉନାହିଁ । ସବୁ ଚାକର ଜଣେ କରୁଛି ।

କଣାମଣି ମନେ ମନେ ଭାବନ୍ତି ଯେ, ସେ ଜଣେ ସାଆନ୍ତାଣି । ତାର ମନେ ହେଉଥାଏ ଖାଲି ତାଙ୍କ ଯା' ମାନେ ଆସି ତାର ଏ ଅବସ୍ଥା ଦେଖି ଯାଆନ୍ତେ କି ? ଅରୋଜଗାରିଆ ସ୍ତ୍ରୀ ବୋଲି କେତେ ଖୁଣ୍ଟା ସେମାନେ ନ ଦେଇଛନ୍ତି ! ବର୍ତ୍ତମାନ ଥରେ ସେମାନେ ଆସି ଦେଖିଗଲେ ତା ମନ ବୋଧ ହୋଇଯାନ୍ତା । କେବଳ ତା ମନରେ ପ୍ରଥମରୁ ଯେ ପ୍ରଶ୍ନଟିକ ଉଠିଥିଲା ଓ ଯାହା ମନେ ମନେ ଦବି ରହିଥିଲା ସେ ହେଉଛି ଯେ, ସ୍ତ୍ରୀ ଲୋକଟି କିଏ ? ମାତ୍ର ସେ କଥା ପଚାରିବାକୁ ତାର ବହପ କୁଳାଇଲା ନାହିଁ । ସେ ମନେ କରୁଛି ଯେ, ସ୍ୱାମୀ ସହିତ ଦେଖା ହେଲେ ତାଙ୍କୁ ପଚାରି ସେ ବୁଝି ନେବ । ବେଳେବେଳେ ତା ମନରେ ଏ କଥା ମଧ୍ୟ ଉଠୁଛି ଯେ, ଏହା ସହିତ ସ୍ୱାମୀର କିଛି ସମ୍ପର୍କ ଅଛି କି ? ମାତ୍ର ଯେତେବେଳେ ସେ ଭାବୁଛି ଯେ, ତା' ହୋଇଥିଲେ ତାକୁ ବା ଅଣାଇ ଥାନ୍ତେ କାହିଁକି ? ସେତେବେଳେ ସେ ପ୍ରଶ୍ନ ଆପେ ଆପେ ମରି ଯାଉଛି । ତେଣୁ କୁମୁଦିନୀ ଏକ ପ୍ରହେଳିକା ହୋଇ ତା ଆଗରେ ରହି ଥାଆନ୍ତି ।

କଣାମଣି ଗର୍ଭବତୀ ଥିବାରୁ ତାର ଖାଇବା ପିଇବା ପ୍ରତି କୁମୁଦିନୀ ଭାରି ନଜର ଦେଇ ଥାଆନ୍ତି । ଗାଁରେ ପୁନେଇ ଓଷା ବ୍ରତରେ ଯାହା ଖାଇବାକୁ ମିଳୁ ନ ଥିଲା, ଏଠି ତା' ପ୍ରତିଦିନ ତାକୁ ଖାଇବାକୁ ମିଳୁଛି । ଭାତରେ ଘିଅ, ଦୁଧ, ନାନା ପ୍ରକାର ଫଳ, ଏସବୁ ଗାଁରେ ଧନୀଲୋକେ ତ ପାଆନ୍ତି ନାହିଁ । ଗରିବ ଘରେ ତାର କଳ୍ପନା ବା କୁଆଡୁ ଆସିବ । କୁମୁଦିନୀ କଣାମଣିକୁ ବୁଝାଇ କହନ୍ତି, 'ତୁମେ ବର୍ତ୍ତମାନ ଜଣକର ମାଆ ହେବାକୁ ଯାଉଛ । ବର୍ତ୍ତମାନ ସେହି ଶିଶୁର କଲ୍ୟାଣ ଦୃଷ୍ଟିରୁ ତୁମକୁ ସବୁ କରିବାକୁ ହେବ । ତୁମେ ଯାହା ଖାଇବ, ତୁମେ ଯେପରି ଚଳିବ, ତୁମେ ଯାହା ମନେ ମନେ ଭାବିବ, ଏସବୁ ସେହି ଶିଶୁର ଶରୀର ଓ ମନ ଉପରେ କାମ କରିବ । ଏଣୁ ସାବଧାନ ରହିବ । କେବେ କିଛି ଖରାପ ଖାଇବ ନାହିଁ ବା ଖରାପ ଚିନ୍ତା କରିବ ନାହିଁ ।" ଏ ସମ୍ପର୍କରେ ତାଙ୍କ ପାଖରେ ଥିବା ଖଣ୍ଡେ ବହି କାଢ଼ି ନିତି କିଛି କିଛି ପଢ଼ି କଣାମଣିକୁ ଶୁଣାନ୍ତି ।

କିଛିଦିନ ପରେ ନିଶାମଣିର ଜଗନ୍ନାଥ ଦର୍ଶନ କରିବାକୁ ମନ ହେଲା । ପୁରୀ ଆସିବା ଦିନୁ ସେଇ ଇଚ୍ଛା ଜାତ ହୋଇଥିଲା । ହେବା ସ୍ୱାଭାବିକ; ମାତ୍ର ମନ ଖୋଲି ସେ କଥା କହିବାକୁ କିଛିଦିନ ଲାଗିଲା । କୁମୁଦିନୀ ବୁଝାଇ କହିଲେ, "କଣ ଦେଖିବ ସେଠି ? ଈଶ୍ୱର ଏକ—କାଠ ପାଷାଣରେ ଈଶ୍ୱର ଅଛନ୍ତି ନା ? ତେବେ ଯଦି ଦେଖିବାକୁ ଚାହୁଁଛ ଦିନେ ଯିବା । ମୁଁ ଯିବି ନାହିଁ ।" ଏକଥା ଶୁଣି ନିଶାମଣି ବିସ୍ମିତ ହୋଇଗଲା । ସେ 'ଆର୍ଯ୍ୟ ସମାଜ' ନା ସୁଦ୍ଧା ଶୁଣି ନାହିଁ, ତାର ଧର୍ମତତ୍ତ୍ୱ ବା ବୁଝିବ କିଆଡ଼ୁ । ମାତ୍ର ସେ ଯେତେବେଳେ ଜାଣି ପାରିଲା ଯେ, କୁମୁଦିନୀ ସେଥିରେ ମୃହାଂ ନୁହନ୍ତି, ସେ କଥାକୁ ମନରେ ମାରି ରଖିଲା । କେତେ କଥା ଏହିପରି ସେ ମନେ ମନେ ମାରି ରଖୁଥାଏ । ଅନାଇ ଥାଏ ସ୍ୱାମୀ କେବେ ଆସିବେ ।

ଦିନପରେ ଦିନ ବିତି ଯାଉଥାଏ । ପ୍ରଥମେ ପ୍ରଥମେ ଦିନ ଯେପରି ସୁନ୍ଦର ସଙ୍ଗୀତପରି ବହି ଯାଉଥିଲା ପରେ ଆଉ ସେପରି ହେଲା ନାହିଁ । ଲଲମୋହନ ବାବୁଙ୍କର କୌଣସି ସମ୍ବାଦ ନାହିଁ । କେବଳ ଖବର-କାଗଜରେ ଗଡଜାତର ଘଟନା ଯାହା ସବୁ ପ୍ରକାଶ ପାଉଥାଏ; ସେଥିରୁ କୁମୁଦିନୀ ଜାଣୁ ଥାଆନ୍ତି ଯେ, ଲଲମୋହନବାବୁ ସେହିପରି ଘଟଣାସ୍ଥଳରେ ନିଶ୍ଚୟ ଥିବେ । ଖବର କାଗଜ ପ୍ରତିଦିନ କୁମୁଦିନୀ ନଶାମଣିକୁ ଶୁଣାନ୍ତି ଓ ଲଲମୋହନ ବାବୁ କିପରି ଏକ ଅତି ଉତ୍କଟ ସମସ୍ୟା ଭିତରେ ଜୀବନ ଯାପନ କରୁଛନ୍ତି, ସେ କଥା ମଧ୍ୟ ବୁଝାଇ କହନ୍ତି । ଏ ସବୁ ନଶାମଣିକୁ କିଛି ସୁଖ ଲାଗୁ ନ ଥାଏ । ସେ ଭାବୁଥାଏ, ଏ ସବୁ କାମ କେତେ କେତେ ହଜାର-ହଜାର ଲୋକ ଅଛନ୍ତି କାହିଁ କେହିତ କରୁ ନାହାନ୍ତି । ଏକା ତାର ସ୍ୱାମୀ ମୁଣ୍ଡରେ ଶାଢ଼ ବନ୍ଧା ହୋଇଛି ଯେ ସେହି ସବୁ କରିବେ । ଘରେ ଥିବା-ବେଳେ ସାମାନ୍ୟ ଲୁଗାପଟା ଖଣ୍ଡେ ପାଇଁ, କିମ୍ବା ରନ୍ଧାବଢ଼ା ସମ୍ପର୍କରେ ଅନ୍ୟ କୌଣସି ଘର କାମରେ, ବା ନିଜ ଯା ମାନଙ୍କ ସାଙ୍ଗରେ ଯେ ବରାବର କଳି କଜିଆ—ସେ ବରଂ ଭଲଥିଲା । ମାତ୍ର ଏଠି ତା ମନକୁ ଯାହା ଆସୁଛି, ତାକୁ ଖୋଲି କହିବା ପାଇଁ କେହି ଲୋକ ନାହାନ୍ତି ।

କୁମୁଦିନୀ ଏକ ଭିନ୍ନ ଶ୍ରେଣୀ ଲୋକ, ଯାହା ସହିତ କୌଣସି ଗୋଟିଏ ବିଷୟରେ ସୁଦ୍ଧା ନଶାମଣି ନିଜକୁ ସମକକ୍ଷ ମନେ କରୁନାହିଁ । ଅବଶ୍ୟ କୁମୁଦିନୀ ପ୍ରଥମେ ତାକୁ କିଛି ପାଠ ପଢ଼ାଇବାର ଚେଷ୍ଟା କରିଥିଲେ । ମାତ୍ର ସେଥିରେ ନଶାମଣିର ଆଦୌ ମନ ଲାଗିଲା ନାହିଁ । ତେଣୁ ତା ବନ୍ଦ

ରହିଲା । ପୁଣି ଗଳ୍ପ ଛଳରେ ନାନା କଥା କହି ତାର ସାଧାରଣ ଜ୍ଞାନ ବଢ଼ାଇବାର ଉଦ୍ୟମ ହେଲା; ମାତ୍ର ସେ ମଧ୍ୟ ବ୍ୟର୍ଥ ହେଲା । କାରଣ ନିଶାମଣି କଥା ଶୁଣୁ ଶୁଣୁ ଢୁଳାଏ । ତାର ସେ ସବୁଥିରେ ମନ ଲାଗେ ନାହିଁ । ଧୀରେ ଧୀରେ ନିଶାମଣିକୁ ଏକଥା ଜାଣିବା ପାଇଁ ବାକି ରହିଲା ନାହିଁ ଯେ, ସେ ଘର ଓ ଜିନିଷ ପାତ୍ର ସବୁ ଯାହାକୁ ସେ ପ୍ରଥମେ ନିଜ ସ୍ୱାମୀର ଅର୍ଥାତ୍ ନିଜର ବୋଲି ମନେ କରୁଥିଲା, ସେ ସବୁ ବାସ୍ତବିକ୍ କୁମୁଦିନୀଙ୍କର ଓ ତାର ସ୍ୱାମୀର ସେଠାରେ କୁଟାକେରେ ସୁଦ୍ଧା ନାହିଁ । ଏକଥା ଜାଣିଲା ଦିନୁ ସେ ମନେ କରୁଛି ଯେପରି ସେ ପର ଘରେ ଆସି ଅଛି । ନିଜ ଘରେ, ଯେଉଁଠି କିଛି ହେଲେ ଆଧିପତ୍ୟ ଥିଲା ତାକୁ ଛାଡ଼ି ସେ ପର ଘରକୁ ଆସିଲା ବା କାହିଁକି ? ଯାହା ଭାବି ସେ ଆସିଥିଲା ତାହା ତ ସ୍ୱପ୍ନରେ ସୁଦ୍ଧା ଦିଶୁ ନାହିଁ । ବେଳେ ବେଳେ ନିଜମନ କଥା ମନ ଭିତରେ ଘୂର୍ଣ୍ଣି ହୋଇ ଆଖିବାଟେ ଲୁହ ହୋଇ ବାହାରେ ।

କୁମୁଦିନୀ ଯେତେ ସାକୁଲେଇ ପଚାରିଲେ ସୁଦ୍ଧା କାନ୍ଦିବାର କାରଣ ସେ କିଛି କହେ ନାହିଁ । କୁମୁଦିନୀଙ୍କର ଯେତିକି ଅଭିଜ୍ଞତା ଅଛି, ସବୁ ଖର୍ଚ୍ଚ କରି ସେ ସବୁ ପ୍ରକାର ଚେଷ୍ଟା କଲେ କିପରି ନିଶାମଣିକୁ ଖୁସି କରି ରଖିବେ । ମାତ୍ର ସେ ଲକ୍ଷ୍ୟ କରୁଥାଆନ୍ତି ଯେ, ତା ମନ କେଉଁଥିରେ ଲାଗୁ ନାହିଁ । ସେ ଅଧିକାଂଶ ସମୟରେ ଗୁମ୍‌ମାରି ବସି ରହୁଛି । ଖାଇବା ପିଇବାରେ ମଧ୍ୟ ସେପରି ରୁଚି ଦେଖା ଯାଉ ନାହିଁ । ପ୍ରଥମେ ପ୍ରଥମେ ତାକୁ ସମୁଦ୍ର କୂଳ ଆଡକୁ ବୁଲାଇ ନେଇ ଯାଉଥିଲେ; ମାତ୍ର ଏଣେ ଗର୍ଭାବସ୍ଥା ବଢି ଯାଉଥିବାରୁ ତା ମଧ୍ୟ ଆଉ ସମ୍ଭବ ହେଉ ନାହିଁ ।

ଦିନେ ସଞ୍ଜବେଳେ ନିଶାମଣି ମନକୁ କଅଣ ଆସିଲା, ସେ ଏତେ କାନ୍ଦିଲା ଯେ, କୁମୁଦିନୀ ଥନ୍ତୁ ଧରି ରହି ପାରିଲେ ନାହିଁ । ଯେତେ ବୁଝାସୁଝା କରାଇଲେ ମଧ୍ୟ କିଛି ଫଳ ହେଲା ନାହିଁ । ଅନେକ କ୍ଷଣ କାନ୍ଦି କାନ୍ଦି ଥକି ପଡି ସେ ନିଦେଇ ଗଲା । ତା ପରେ ଯେତେବେଳେ ନିଦ ଭାଙ୍ଗି, ସେତେ-ବେଳେ ଦେଖେ ଯେ, କୁମୁଦିନୀ ବସି ତା ଗୋଡ଼ ହାତ ଆଉଁସି ଦେଉଛନ୍ତି ।

ତା ମୁହଁରୁ ଅଗେ ବାହାରିଗଲା, "କେଉଁ ଜନ୍ମରେ ତୁମେ ମୋର ମାଆ ଥିଲ । ଏତେ ସେବା ମୋର ଆଉ କିଏ କରନ୍ତା ।" କୁମୁଦିନୀ ଦେଖିଲେ ଗୁଡ଼ାଏ କାନ୍ଦିବା ଫଳରେ ତାର ମନ ହାଲୁକା ହୋଇଯାଇଛି । ସେ ଅତି ସ୍ନେହରେ ତା ଦେହରେ ହାତ ବୁଲାଇ ପଚାରିଲେ, "ତୁମକୁ ତ ମୁଁ ମୋ ନିଜ ଭଉଣୀ ବୋଲି ଜାଣି ସବୁ କରୁଛି । ତୁମେ ତ' ମୋତେ ପର ମନେ କରୁଛ, କିଛି ମତେ କହୁ ନାହଁ । କଥାବାର୍ତ୍ତା କଲେ ସିନା ମନ ଖୁସି ରହନ୍ତା ।"

କଣାମଣି ଉଠି ବସି ଧୀରେ ଧୀରେ କହିଲା, "ମୋ କପାଳ ତ ପୋଡ଼ା—ମୁଁ କଣ କହିବି ।"

କୁମୁଦିନୀ—"ତୁମଠାରୁ ଭାଗ୍ୟବତୀ ଆଉ ଦୁନିଆରେ କିଏ ଅଛି । ଯାହାର ସ୍ୱାମୀ ଆଜି ହଜାର ହଜାର ଦୁଃଖିଙ୍କ ମାଆ ବାପ ପରି ତାଙ୍କରି ସେବାରେ ନିଜର ଜୀବନ ବିତାଉଛନ୍ତି, ସେ ଭାଗ୍ୟବତୀ ନୁହେଁ ତ ଆଉ କିଏ ?"

କଣାମଣି ମୁହଁ ତଳକୁ କରି ଦେଇ ଦୀର୍ଘଶ୍ୱାସଟିଏ ମାତ୍ର ପକାଇଲା । କୁମୁଦିନୀ—"କଅଣ ମନରେ ଭାବୁଛ ? କଣାମଣି କାନ୍ଦି କାନ୍ଦି ହୋଇ କହିଲା, "ଯେଉଁ ଦିନୁ ବାହା ହେଲି, ସେହି ଦିନୁଁ ବାପା ମାଆଙ୍କୁ ଛାଡିଲି । ବାପ ଘରୁ ଝିଅ ଆସି ଶାଶୁ ଘରେ ଯାହାକୁ ନିଜର ବୋଲି କହନ୍ତା ସେ ତ ପର ହେଲେ, ଆଉ ମୋର ଅଛି କିଏ ? ଦୁନିଆରେ ମୋପରି 'ଚିରି ଦାଉଡ଼ି' କିଏ ଅଛି କଣ ? ମୋ କଥାକୁ ତୁମେ କପାଳିଆ ବୋଲି କହୁଛ, ମୁଁ ଆଉ କଅଣ କହିବି ?"

କୁମୁଦିନୀ—"ତୁମର ସ୍ୱାମୀ ତୁମକୁ ପର କାହିଁକି କରିବେ ? ସେ ତ ତୁମକୁ ସବୁଠାରୁ ଶ୍ରେଷ୍ଠ ଦାନ କରିଛନ୍ତି; ସେ ହେଉଛି ତୁମଠି ଯେ ଶିଶୁଟି ଅଛି ।"

କଣାମଣି—"ଦୁନିଆରେ ମୋର ଅଛି କଅଣ ? ମୁଁ ଯେପରି ଉପାସେ ଭୋକେ ଦିନ କଟାଉଛି, ପିଲାଟିଏ ଜନ୍ମ ହେଲେ ମଧ୍ୟ ସେହିପରି କୁକୁର ବିରାଡ଼ି ପରି ଦିନ କାଟିବ । ମୋର କଅଣ ଅଛି ନା ସେ ପିଲାର କଅଣ ଅଛି ? ଘରେ ଯା ସମ୍ପତ୍ତି ତା ତ ଭାଇ ସବୁ ମାରିପିଟି ଖାଇଲେ । ଏଠି ତ ମୁଁ

ଆସି ପର ଘରେ, ପଡ଼ି ଖାଉଛୁ । ପିଲାଟିଏ ହେଲେ ସେହିପରି ଦୁଃଖମାଗି ଚଲବ । ଅଭାଗିନୀ କପାଳରେ ପିଲା ହେଲେ ଯାହା, ଗରୀବ ଉଣକୁ ହାତୀଟାଏ ଦେବା ତାହା ।”

କୁମୁଦିନୀ—“ଛି, ଛି ସେପରି ଭାବ ନାହିଁ । ବହୁ ଭାଗ୍ୟଫଳରେ ମାତା ହେବାର ଅଧିକାର ସ୍ତ୍ରୀ ଲୋକ ପାଏ ।” “ଶିଶୁ-ଶିଶୁ-ଶିଶୁ-” ଏତିକ କହି କୁମୁଦିନୀ ଅନ୍ୟମନସ୍କ ହୋଇ ଉପରକୁ ଚାହିଁଲେ । ତାଙ୍କ ଆଖିରେ ଲୁହ ବୋହିଗଲା । ମାତ୍ର ଅତିଶୀଘ୍ର ନିଜକୁ ସମ୍ଭାଳି ନେଇ ସେ ପୁଣି କଣାମଣିକୁ ସାନ୍ତ୍ୱନା ଦେବାର ଚେଷ୍ଟା କଲେ ।

କଣାମଣି କୁମୁଦିନୀଙ୍କ ଆଖିରେ ଲୁହ ଦେଖିବା ମାତ୍ରକେ, ଭାବିଲା ଯେ, ଦୁଃଖ ଏକାକୀ ତାର ନୁହେଁ, ଅନ୍ୟର ମଧ୍ୟ କିଛି ଦୁଃଖ ଅଛି । ଏ ଚିନ୍ତା ତାକୁ କୁମୁଦିନୀଙ୍କ ଆଡ଼କୁ ଆହୁରି ଟାଣି ନେଲା । ତେଣୁ ଧୀରେ ଧୀରେ ମନ ଖୋଲି କହିବାକୁ ଆରମ୍ଭ କଲା, “ସ୍ୱାମୀ ସିନା ସ୍ତ୍ରୀର ସବୁ, ସ୍ୱାମୀ ବଳରେ ସିନା ସ୍ତ୍ରୀର ବଳ । ନ ହେଲେ ସ୍ତ୍ରୀର କଅଣ ଅଛି ଏ ସଂସାରରେ । ସେ ତ ମୋ କଥା କିଛି ବୁଝିଲେ ନାହିଁ । କେତେ ହୀନମାନ ହୋଇ ମୁଁ ଶାଶୁ ଘରେ ଯନ୍ତ୍ରଣା ସହିଲି । କେତେଥର ମନେ କରିଛି ବିଷ ଖାଇ ଜୀବନ ହରାଇ ଦେବାକୁ । ଏ ପୋଡ଼ା ପ୍ରାଣ ସହଜେ ଯାଉଛି କାହିଁ ? ବରାବର ମୋ ପାଖରେ ବିଷ ପୁଡ଼ୁଲାଟିଏ ରଖିଥାଏ, ଆମ୍ଭାକୁ ଯେତେବେଳେ ବେଶୀ ବାଧିବ ଖାଇଦେବି ବୋଲି । ଖାଲି ତାଙ୍କର ଆଶାରେ ମୁଁ ଜୀବନ ଧରି କେତେ ଦୁଃଖ ଅପମାନ ସହି ଆସିଲିଣି । ସେ ପଚାରୁ ନାହାନ୍ତି, ମୁଁ କହିବି କାହାକୁ କଅଣ ? ଆଜି ଯଦି ସେ ରୋଜଗାର କରୁ ଥାଆନ୍ତେ, ସବୁ ଭାଇ ତାଙ୍କର ଆଡ଼କୁ ଚାହିଁ ବସିଥାନ୍ତେ । ଉଁ ବୋଲି ମୋତେ କିଏ ପଦ ଟିଏ କହିଥାନ୍ତା ନାହିଁ । ସଂସାର ସୁଖ ବୋଲି ମୁଁ ଧନେ ହେଲେ ଜାଣିଲି ନାହିଁ । ଜୀବନ ଯିବ ଛାଡ଼ିବ ନାହିଁ ମଧ୍ୟ । ତୁମେ ସିନା ଦୟା କରି ମୋ କଥା ବୁଝୁଛ । ତାଙ୍କ ସକାଶେ ମୁଁ ଏତିକି ଆସିଲି । ତୁମେ ମୋତେ ନେଇ ଆସିଲ, କାହିଁ ତାଙ୍କର ତ ଦେଖା ନାହିଁ । ଦେଖା ହେଲେ ବା କରନ୍ତେ କଅଣ ? ତୁମେ ନ ଥିଲେ ମୁଁ ସିନା ଭିଖାରୁଣୀ ପରି ବୁଲୁଥାନ୍ତି ।”

କୁମୁଦିନୀ ବୁଝିଲେ ଯେ ନିଶାମଣିର ପ୍ରାଣ ଯାହା ଚାହେଁ, ନିଜର ଘର—ନିଜର ଚଳଣୀ—ନିଜର କର୍ତ୍ତୃତ୍ୱ—ଗୃହିଣୀ ହେବାର ଅଭିଳାଷ, ତାହା ବାସ୍ତବିକ ଲଳମୋହନ ବାବୁ ପୂରଣ କରି ପାରି ନାହାନ୍ତି, ପାରିବେ ବୋଲି ମଧ୍ୟ ବିଶ୍ୱାସ ନାହିଁ । ଦେଶଚିନ୍ତା ଯେପରି ମନକୁ ନିୟୋଜିତ କରି ରଖିବାର ଏକ ବାଟ, ସେହିପରି ବଚ୍ଚନ୍ କରିବା, ଘରଦ୍ୱାର ସୁନ୍ଦର କରିବା, ନିଜର ଆଯୁଷ୍ମାନ ଭିତରେ ନାନା ସମସ୍ୟା ଭିତରେ ନିଜର କର୍ତ୍ତୃତ୍ୱ ଜାହିର କରି ସେଇଥିରେ ନିମଗ୍ନ ରହିବା, ଏହା ମଧ୍ୟ ମନର ଅନ୍ୟପ୍ରକାର ନିୟୋଗ ! ଲଳମୋହନ ବାବୁଙ୍କୁ ଦେଶର ଚିନ୍ତା ଛାଡ଼ି ଦେବାକୁ କହିଲେ, ସେ ଯେପରି ନିଜକୁ ମହାଶୂନ୍ୟ ଭିତରେ ଦେଖିବାକୁ ପାଇବେ, ନିଶାମଣୀ ମଧ୍ୟ ସେହିପରି ଗୃହିଣୀ ହେବାର ଅବକାଶ ନ ପାଇ ନିଜକୁ ମହାଶୂନ୍ୟ ଭିତରେ ଦେଖିବାକୁ ପାଇଛି । ଏ ଚିନ୍ତା ସାଙ୍ଗେ ସାଙ୍ଗେ ମଧ୍ୟ କୁମୁଦିନୀ ନିଜ ଜୀବନ ଚିନ୍ତା କଲେ, ସେ କାହିଁକି ଜୀବନକୁ ଶୂନ୍ୟମୟ ଦେଖୁଛନ୍ତି । ଚଳିବାପାଇଁ ତାଙ୍କର ଅସୁବିଧା ନାହିଁ । ସେବା ପାଇଁ ମଧ୍ୟ ତାଙ୍କର ଯଥେଷ୍ଟ ଅବସର ଅଛି । ତଥାପି ସେ କେଉଁଠି କଅଣ ଭଣା ଦେଖୁଛନ୍ତି ଯେ, କଲିକତା ଛାଡ଼ି ଆସି ପୁରୀରେ ପଡ଼ି ରହି ବିବାହିତ ସୁଖର ସ୍ୱପ୍ନ ଦେଖୁଛନ୍ତି । ଏହିପରି ପ୍ରତ୍ୟେକ କାମନାର ଏକ ସ୍ୱତନ୍ତ୍ର ନିୟୋଗ ଅଛି । ସେହି ନିୟୋଗ ଭିତରେ ସମତା ସ୍ଥାପିତ ନ ହେଲେ, ବାସ୍ତବିକ ବିବାହିତ ଜୀବନ ବଡ଼ ଦୁଃଖମୟ । ତାଲି ନିଶାମଣିକି କାହିଁକି ଦୋଷ ଦିଆ ହେବ ? ସେ ଯେପରି ସ୍ୱାମୀର ଚିନ୍ତା ନିୟୋଗ ସହିତ ନିଜକୁ ଚଳାଇ ପାରୁ ନାହିଁ; ସ୍ୱାମୀ ମଧ୍ୟ ସେହିପରି ତାର ଚିନ୍ତା ନିୟୋଗ ସହିତ ନିଜକୁ ଚଳାଇ ପାରୁ ନାହାଁନ୍ତି ।

ଏ ସବୁ ଚିନ୍ତା କରି କୁମୁଦିନୀଙ୍କ ହୃଦୟ ନିଶାମଣି ପ୍ରତି କରୁଣାରେ ପୂରିଗଲା । ସେ ସାନ୍ତ୍ୱନା ଦେଇ କହିଲେ, "ଲଳମୋହନ ବାବୁ ଆସନ୍ତୁ । ମୁଁ ତାଙ୍କୁ ବୁଝାଇ କହିବି, ତୁମେ ବ୍ୟସ୍ତ ହୁଅ ନାହିଁ । ମନକୁ ଖୁବ୍ ଖୁସି ରଖ । ମୁଁ ପରି କହିଥିଲି, ତୁମେ ମନକୁ ଯେପରି ରଖିବ, ତାର ଫଳ ଶିଶୁଠି ମିଳିବ । ତୁମେ ଯେ ମାତା ହେବାକୁ ଯାଉଛ, ଏକଥା ଭୁଲ ନାହିଁ ।

ତୁମର ଜୀବନ ଯେପରି ସୁଖମୟ ହେବ ମୁଁ ତାର ଚେଷ୍ଟା କରିବି । ଆଗେ ଏ ଶିଶୁଟି କଥା ଭାବ । ଆଉ କେତେଟା ଦିନେ ସେ ଶିଶୁ ଦୁନିଆର ଆଲୁଅ ଦେଖିବ । କେତେ ଆନନ୍ଦ ସେ ସାଙ୍ଗରେ ଆଣିବ—ସେହି ଆନନ୍ଦର ପ୍ରତୀକ୍ଷା କର ।" ନିଶାମଣିର ମନ ଟିକିଏ ଭଲ ହୋଇ ଆସିଲା ।

ପ୍ରାୟ ମାସକ ପରେ ନିଶାମଣି ପୁଅଟିଏ ଜନ୍ମ କଲା । ତାର ଓ ଶିଶୁର ସେବା ଶୁଶ୍ରୂଷା ସମ୍ବନ୍ଧରେ କୁମୁଦିନୀ ସମସ୍ତ ପ୍ରକାର ବ୍ୟବସ୍ଥା କଲେ । ତାରି ଫଳରେ ସାଧାରଣତଃ ଯେପରି ସନ୍ତାନ ଜନ୍ମ ପରେ ମାଆର ଅବସ୍ଥା ସଙ୍କଟାପନ୍ନ ହୋଇପଡ଼େ, ସେପରି ନିଶାମଣିଙ୍କ ପକ୍ଷରେ ହେଲା ନାହିଁ । ନିଶାମଣି ଇଙ୍ଗିତରେ କୁମୁଦିନୀକୁ କହିଲେ, "ଲଳମୋହନ ବାବୁଙ୍କୁ ଖବର ଦେବା ପାଇଁ ଆସିବାକୁ । କୁମୁଦିନୀ ମଧ୍ୟ ଏ ଅନୁରୋଧର ଯଥାର୍ଥତା ଉପଲବ୍ଧି କଲେ । ସେ ଦିବ୍ୟସିଂହ ବାବୁଙ୍କୁ ସେହି ପଳାତକ ଛଉଣୀ ଠିକଣାରେ ଏକପତ୍ର ଦେଲେ, ଶୀଘ୍ର ଲଳମୋହନ ବାବୁଙ୍କୁ ଖବର ଦେବା ପାଇଁ । ଏହି ଚିଠିରେ ସେ ନିଶାମଣି, ପୁରୀ ଆସିବା ଓ ତାର ସନ୍ତାନ ଜନ୍ମ କଥା ବିସ୍ତାରିତ ଭାବରେ ଲେଖି ଥିଲେ । ପିଲା ଜନ୍ମ ପରେ କୁମୁଦିନୀଙ୍କର ଆଉ ସେ ସରସତା ନାହିଁ ଯାହା ପୂର୍ବେ ଥିଲା । ସେ ପିଲାଟିକୁ ଅନେକ ସମୟରେ ଗୁହାଁ ଗମ୍ଭୀର ଭାବରେ ବସି ରହନ୍ତି । ବେଳେ ବେଳେ ତାଙ୍କ ଆଖିକୁ ଲୁହ ମଧ୍ୟ ଆସିଯାଏ । ନିଶାମଣି ପଚାରିଲେ ସେ ଆଉ କିଛି କହନ୍ତି ନାହିଁ । ମାତ୍ର ନିଶାମଣି ବର୍ତ୍ତମାନ ଖୁବ୍ ପ୍ରସନ୍ନ । ପିଲାଟିକୁ ଦେଖି ଯେପରି ତା ମନ ଭରି ଯାଉଛି । ତାର ନିଜର ବୋଲି ଜଣେ ତ କେହି ଏ ଦୁନିଆକୁ ଆସିଲା । ସେ ଦିନେ ବଡ଼ ହେବ, ଯାହାକୁ ସେ ମୋର ବୋଲି କହିବ ଓ ଭାଗ୍ୟରେ ଥିଲେ ସେ ପୁଅ ସବୁ ତାର ପୂରଣ କରିଦେବ । ଏହିପରି କେତେ ଆଶା ତା ମନରେ ଜାଣତରେ ଅଜାଣତରେ ଖେଳି ତାକୁ ପ୍ରଫୁଲ୍ଲ କରୁଥାଏ । ଜୀବନର ଦୁର୍ଗମ ପଥରେ ବିବାହ ଯେପରି ଗୋଟିଏ ଘାଟି । ସନ୍ତାନ ଲାଭ ସେହିପରି ମଧ୍ୟ ଆଉ ଏକ ଘାଟି । ଗୋଟିଏ ଘାଟିରେ ସିନା ସେ ଦୁଃଖ ପାଇଲା । ମାତ୍ର ଦ୍ୱିତୀୟ ଘାଟିରେ ଆଶା ଡାକୁଛି ଯେ, ସୁଖ ପାଇବ ।

ଧନସିଂହ ବାବୁ କୁମୁଦିନୀଙ୍କର ଚିଠି ପାଇଲେ । ଲଲମୋହନଙ୍କର ପୁଅଟିଏ ହୋଇଥିବା ଜାଣି ଖୁସି ହେଲେ । ସାଙ୍ଗେ ସାଙ୍ଗେ ବିସ୍ମିତ ହେଲେ ଯେ, ନିଶାମଣି କିପରି ଯାଇ କୁମୁଦିନୀଙ୍କଠି ପହଞ୍ଚିଲା, ଯେଉଁ କୁମୁଦିନୀ ସହିତ ବିବାହ ହେବା ପାଇଁ ଲଲମୋହନ ସ୍ଥିର କରି ଅଛନ୍ତି । ସମୁଦାୟ ଘଟଣାର ରହସ୍ୟ ସେ କିଛି ବୁଝି ପାରିଲେ ନାହିଁ । ପୁଅ ହେବା ଖବର ଲଲମୋହନଙ୍କପାଖକୁ ପଠାଇବା ପାଇଁ ସେ ବହୁ ଚେଷ୍ଟା କଲେ, ମାତ୍ର ସେ ପାରିଲେ ନାହିଁ । କାରଣ ଲଲମୋହନ ବାବୁ ସେତେବେଳେ ଯାଇ ରଣପୁର ଗଡ଼ଜାତରେ । ଘର ପୋଡ଼ି ବେଳେ ନିଆଁ ଯେପରି ଗୋଟିଏ ଚାଳରୁ ଅନ୍ୟ ଚାଳକୁ ଡେଇଁ ସେହିପରି ଆନ୍ଦୋଳନ ଗୋଟିଏ ଗଡ଼ଜାତରୁ ଅନ୍ୟ ଗଡ଼ଜାତକୁ ଡେଇଁ ବାରେ ଲାଗିଛି । ଏକ ଦିଗରେ ନିରସ୍ତ୍ର ଜନତା ବହୁ ଦିନର ଅତ୍ୟାଚାର ସହ୍ୟ ସହ କରି ଲେଉଟାଇଛି—ଅନ୍ୟ ଦିଗରେ ତାକୁ ଗୋରା ପଲଟଣ ଓ ଦେଶୀ ଫୌଜ ବନ୍ଧୁକ ମୂନରେ ଚପାଇ ଦେବା ପାଇଁ ବସିଛନ୍ତି । ଏ ଭୀଷଣ ଦମନ ନୀତିକୁ ପାର ହୋଇ ସତେ ଏ ନିରସ୍ତ୍ର ଜନତା ନିଜର ଦାବୀ ହାସଲ କରିବେ ? ଏପ୍ରକାର ନିରାଶ ନିଶ୍ୱାସ ମଧ୍ୟ ବିଚକ୍ଷଣ ବ୍ୟକ୍ତିର ହୃଦୟରୁ ନିର୍ଗତ ହେଉଛି । ଯେଉଁଠି ଅତ୍ୟାଚାର ସେଠି ଲୋକଙ୍କୁ ସେବା କରିବା ପାଇଁ ଧନସିଂହବାବୁ ଯେପରି ଚତୁର୍ଥ ମୂର୍ତ୍ତି ହୋଇ ଛିଡ଼ା ହୋଇଛନ୍ତି । ତାଙ୍କର ସେବା ଓ ଅକ୍ଲାନ୍ତ ପରିଶ୍ରମ ଅନେକ ପରିମାଣରେ ନିର୍ଯ୍ୟାତିତ ଲୋକଙ୍କୁ ସାନ୍ତ୍ୱନା ଓ ଉତ୍ସାହ ଦେଉଛି । ମାତ୍ର ଆଉ ତେଣିକି କିଛି କରିପାରୁ ନାହିଁ । ଯେତେବେଳେ ଲଲମୋହନ ବାବୁ ତାଙ୍କୁ କହିଲେ ଯେ, ଏଣିକି ଯାହାହେଉ ସେ ନିଜକୁ

ଏ ଗଡଜାତ ବ୍ୟାପାରରେ ବଳ ଦେଇ ଦେବେ, ସେତେବେଳେ ସେ ସେକଥା ବୁଝାଇ କହିବା ପାଇଁ ଅନୁରୋଧ କରିଥିଲେ ।

ଲାଲମୋହନ ବାବୁ କହିଥିଲେ, "ଲୋକଙ୍କୁ ଦାବୀ ଦବୀ ବୋଲି ଯାହା କୁହା ଯାଉଛି ସେ ଦାବୀ କଣ ? ହାତ ନା ଘୋଡା ? ଏହି ଦେଖନ୍ତୁ ଢେଙ୍କାନାଳରେ ହାଡ ଗନ୍ଧ · ଖାଇବା ପାଇଁ ଲୋକେ ଜାଲ କାଠ ମାଗୁଛନ୍ତି । ରଜାର କିଛି ହେଲେ କର୍ଦ୍ଦିଷ୍ଟ ଆଇନ୍ ମୂଲ୍ୟବୋଲି କହୁଛନ୍ତି । ବର୍ଷକ ସାରା ନିଜ ହାତରୁ ଖାଇ ବେଠି ଖଟି ଖଟି ଓ ସେଥିରେ ପୁଣି ମାଡ଼ ଖାଇ, ଜୀବନ ପର୍ଯ୍ୟନ୍ତ ଦେଇ, ପ୍ରଜାଁ ବର୍ତ୍ତମାନ ଚାହୁଁଛନ୍ତି ଯେ ବେଠି କରିବେ ନାହିଁ । ତାଳଚେରରେ ବେଠିକୁ ବେଠି ପୁଣି ବେଠି ଛାଡ଼ ହେଲା କହ, ବେଠି ବାବଦ କର । ଏ ଦୁଇ ପ୍ରକାର ଅତ୍ୟାଚାର ପ୍ରଜା ସହ୍ୟ କରି ପାରୁ ନାହାନ୍ତି । ପ୍ରଜା ଚାହାନ୍ତି ସୁବିଚାର । ରାଜ ଦରବାରଠାରୁ ମନୁଷ୍ୟୋଚିତ ବ୍ୟବହାର, ଏ କଣ ଭାରି ବଡ ଦାବୀ ? ପ୍ରଜା ଚାହୁଁ ନାହାନ୍ତି ରାଜାଙ୍କ ନିପାତ କରି କବିଙ୍କ ଭାଷାରେ ରାଇଜକୁ ମହିରେ ନ ରଖି କେବଳ ବହିରେ ରଖି ଦେବା ପାଇଁ । ଅବଶ୍ୟ ସେ ଦାବୀ କିଛି ଅନ୍ୟାୟ ନୁହେଁ । ସେ ପ୍ରକାର ଦାବୀ ପ୍ରଜାଙ୍କ କଡରୁ ଉଠୁଥିଲେ ମୁଁ ଖୁସି ହେଉଥାନ୍ତି । ମାତ୍ର ସେ ତ ଦାବୀ ନୁହେଁ ।

ଏହି ରଣପୁରରେ ଯାଉଁଳି କବାଟ କେହି ଲଗାଇ ପାରିବେ ନାହିଁ । ବିନା ଅନୁମତିରେ କେହି ଯାନ ବାହାନ ଚଢ଼ି ପାରିବେ ନାହିଁ । ସ୍ତ୍ରୀ ଲୋକେ ଗହଣା ମଧ୍ୟ ପିନ୍ଧି ପାରିବେ ନାହିଁ । ଏ ସବୁ ବର୍ବର ଯୁଗର ବାଭତ୍ସ ବ୍ୟାପାର ବିରୁଦ୍ଧରେ ପ୍ରଜା କିଛି କହିଲେ ତାକୁ ଗୁଳି କରାଯାଇ ଜବତ କରା ଯାଉଛି । ଏଥିପାଇଁ ଆମକୁ ଏଥିରେ ବଳ ଦେବାକୁ ହେବ । ଅନ୍ୟଥା ବନ୍ଧୁକ ମୁନରେ ଏ ଦେଶ ଚିରକାଳ ଏକ ପଚିତ ଦେଶ ହୋଇ ରହିଥିବ ।"

ଉତ୍ତ୍ରାହି ସହକାରେ ଏକ ନିଶ୍ୱାସରେ ଯେତେବେଳେ ଲାଲମୋହନବାବୁ ଏତେ କଥା କହିଗଲେ, ସେତେବେଳେ ଶ୍ରୀବ୍ୟଙ୍କଟେଶ ବାବୁ ହୃଦୟ କଡରେ ଅନୁଭବ କଲେ, ବାସ୍ତବିକ କିଛି ନା କିଛି କରିବାକୁ ହେବ । ମାତ୍ର କଣ ତା'

ସେ କଛି ଜାଣି ପାରିଲେ ନାହିଁ । କିନ୍ତୁ ଏତିକି ସେ ଭାବିଲେ, ସେ ଯାହା କିଛି କଥା ହେଉ ସେ ଅହିଂସା ନୀତି ବୃଦ୍ଧିରୁ ଅନ୍ୟାନ୍ୟ ହେବ ନାହିଁ । ତାପରେ ଲଲମୋହନ ବାବୁ ରଣପୁର ଚାଲିଗଲେ । କାରଣ ସେଠାକୁ ଫୌଜ ଯାଉଛନ୍ତି । ଯିବାବେଳେ ସେ ଦବ୍ୟସିଂହ ବାବୁଙ୍କୁ ଆଲିଙ୍ଗନ କରି କହି ଗଲେ, ଯାଉଛି, "ଦେଖା ହେବ କି ନା କହିପାରୁ ନାହିଁ । ଦେଖା ନ ହେଲେ ତୁମ୍ଭମାନେ କଥା ବୁଝୁଥିବେ ।" ଭାବର ଆବେଗରେ ଲଲମୋହନ ବାବୁ ଏପରି ଅଧୀର ହୋଇ ପଡନ୍ତି, ଏକଥା ଦବ୍ୟସିଂହବାବୁ ଜାଣନ୍ତି । ତେଣୁ ସେ ସେତେବେଳେ କିଛି ମନେ କରି ନ ଥିଲେ । ଯେଉଁ ସମୟରେ ସେ ପୁଅ ହେବାର ଖବର ପଠାଇବା ପାଇଁ ଚେଷ୍ଟା କରୁଛନ୍ତି, ସେହି ସମୟରେ ସେ ଖବର ପାଇଲେ ଯେ ରଣପୁରରେ ସେହି ଗୋରା ହାକିମ ଯେ ସୈନ୍ୟ-ମାନଙ୍କ ପରିଚାଳନାର ଅଧିକାରରେ ଥିଲେ ସେ ଏକ ଉତ୍ତେଜିତ ଜନତା ଦ୍ୱାରା ନିହତ ହୋଇଛନ୍ତି । ସେ ଖବର ପାଇ ତର ତର ହୋଇ ରଣପୁର ଚାଲିଲେ । ନିହତ ହାକିମଙ୍କ ପାଇଁ ତାଙ୍କର ସହାନୁଭୂତି ଥାଏ । ମାତ୍ର ଏହି ହତ୍ୟା ଫଳରେ ଯେଉଁ ପ୍ରତିହିଂସା ମୂଳକ ଅତ୍ୟାଚାର ସେଠାରେ ହେବ, ସେହି ଚିନ୍ତାରେ ଦବ୍ୟସିଂହ ବାବୁ ଅଧୀର ହୋଇ ପଡିଲେ । କଳାଲୋକ ମାନେ ମରିଗଲେ ସେଥିରେ କିଛି ଯାଏ ଆସେ ନାହିଁ । ମାତ୍ର ଜଣେ ରାଜ କର୍ମଚାରୀକୁ ଓ ଖାସ କରି ଜଣେ ଗୋରାକୁ ଯେତେବେଳେ ମାରି ପକା ହୋଇଅଛି, ସେତେବେଳେ ସେ ଲୋକଙ୍କୁ ଶିକ୍ଷା ଦେବା ପାଇଁ କି ଯେ ଅତ୍ୟାଚାରର ଲୀଳା ଚାଲିବ, ସେ କଥା ଦବ୍ୟସିଂହ ବାବୁ କଳ୍ପନା କରି ପାରୁ ନ ଥାନ୍ତି । ଅତିବ୍ୟସ୍ତ ହୋଇ ସେ ରଣପୁରରେ ଯାଇଁ ପହଞ୍ଚିଲେ । ସେଠାରେ ଖବର ନେଇ ଘଟଣା ବୁଝିଲେ ।—

"ପ୍ରାୟ ୫।୬ ହଜାର ଲୋକ ଏକାଠି ହୋଇ ରାଜାଙ୍କଠାକୁ ଯାଇଥିଲେ, ତାଙ୍କର ଦୁଃଖ ଜଣାଇବା ପାଇଁ । ଯେଉଁଠି ଅଖଣ୍ଡ ରାଜତ୍ୱ, ସେଠି ଲୋକ ମେଳକୁ ବଡ ଭୟ । ଏତେ ଲୋକ ଏକାଠି ହୋଇ ରାଜାଙ୍କଠାକୁ ଆସିବା ଖବର ସେ ଆଗରୁ ପାଇ ବନ୍ଧୁକ ଧାରୀ ସୈନ୍ୟ ଅଣାଇ ନେଇଥିଲେ । ସୈନ୍ୟଙ୍କ ସାଙ୍ଗରେ ସେ ଗୋରା ହାକିମ ମଧ୍ୟ ଆସିଥିଲେ । ରଜାଘର ଠାରୁ ସେହି

ଲୋକେ ଖଣ୍ଡେ ବାଟରେ ଅଛନ୍ତି, ଏହି ସମୟରେ ସେ ଗୋରା ହାକିମ ସୈନ୍ୟଙ୍କୁ ନେଇ ଆସି ଲୋକଙ୍କୁ ଅଟକାଇଲେ । ହାକିମଙ୍କ ସାଙ୍ଗରେ ବନ୍ଧୁକ ଧାରୀ ପ୍ରାୟ ୪୦ ଜଣ ଥିଲେ । ପ୍ରଥମେ ଲୋକଙ୍କୁ ଫେରିଯିବା ପାଇଁ ସାହେବ ବହୁତ ବୁଝା ସୁଝା କରିଥିଲେ ।

ଲାଲମୋହନ ବାବୁ ସେ ଜନତାର ଅଗ୍ରଣୀ ହୋଇ ସାହେବଙ୍କ ସାଙ୍ଗରେ ବହୁ ତର୍କ ବିତର୍କ କଲେ । ରାଜାଙ୍କ ଠାକୁ ପ୍ରଜାଙ୍କର ଯିବାର ଅଧିକାର ଅଛି ବୋଲି ସେ ଦାବୀ କଲେ । ମାତ୍ର ତର୍କ ହେଉ ହେଉ କ୍ରମଶଃ ଉଚ୍ଚ ବାଚ ଆରମ୍ଭ ହେଲା । ଜନତା ଖୁବ୍ ଜୋରରେ ଚିତ୍କାର କରି କହିଲା, "ଆମେ ରଜାଙ୍କ ପାଖକୁ ଯିବୁ ।" ପାଞ୍ଚ,ସାତ ହଜାର ଲୋକଙ୍କ ଏ ଚିତ୍କାର ଶୁଣି ସୈନ୍ୟ ଓ ହାକିମ୍ ଭୟ ପାଇ ଗଲେ । ବିନା ଭୟ ନ ପାଇଲେ କେହି କାହାକୁ ଆଘାତ କରେ ନାହିଁ । ଧ୍ୱଂସାର ଆରମ୍ଭ ହୁଏ ପ୍ରଥମେ ଭୟରୁ । ଭୟ ପାଇ ଯାଇ ହାକିମ ନିଜ ପକେଟରେ ଥିବା ପିସ୍ତଲ କାଢ଼ି ଜନତା ଆଡକୁ ଫାୟାର୍ କଲେ । ଦୁଇଜଣ ଲୋକ ଧଡ ଧାଡ୍ ପଡ଼ି ମରିଗଲେ । ଏକାକରେ ସମଗ୍ର ଜନତା ଉତ୍କ୍ଷିପ୍ତ ହୋଇ ଗଲା । "ସାହେବ ମଣିଷ ମାରି ପକାଉଛି, ମାର ତାକୁ" ଏହି ସୁର ଉଠିଲା । ସମସ୍ତେ ମାଡ ଉଠି ସୈନ୍ୟ-ମାନଙ୍କ ଉପରେ ଏପରି ମାଡି ପଡ଼ିଲେ ଯେ, ସୈନ୍ୟମାନେ ବନ୍ଧୁକ ଫୋପାଡ଼ି ଦେଇ କେ କୁଆଡେ ପଳାଇଲେ । ସାହେବ ଭୟରେ ରାସ୍ତା ପାଖ ଜଣକ ପିଣ୍ଡାର ଏକ କୋଣରେ ଲୁଚି ଗଲେ । ମାତ୍ର ଉତ୍କ୍ଷିପ୍ତ ଜନତା ତାଙ୍କୁ ସେଠୁ ଟାଣି ଆଣି ରାସ୍ତା ଉପରେ ଥିବା ଟେକାରେ ତାଙ୍କ ମୁଣ୍ଡକୁ ଛେଚି ତାଙ୍କୁ ମାରି ପକାଇଲେ । ଖଣ୍ଡେ ଛୋଟ ବାଡ଼ି ସୁଦ୍ଧା କାହାରି ହାତରେ ନଥିଲା । କେବଳ ସଂଖ୍ୟା ଅତି ବେଶୀ ଥିବାରୁ ରାସ୍ତା ଉପର ଟେକା ସୁଦ୍ଧା ବନ୍ଧୁକକୁ ବଳିଗଲା । ଏ ଘଟଣା ପରେ ଜନତା ଯେତେବେଳେ ବିଜୟ ଉଲ୍ଲାସରେ ରଜାଙ୍କ ପାଖକୁ ଯାନ୍ତି,ସେତେବେଳେ ରଜା ନିଜ ପ୍ରାଣ ଭୟରେ ପ୍ରଜାଙ୍କ ସମସ୍ତ ଦାବୀ ମଞ୍ଜୁର କରି ଦେଇ ଜେଲରେ ଥିବା ପ୍ରଜା ନେତା-ମାନଙ୍କୁ ମୁକ୍ତ କରି ରକ୍ଷା ପାଇଲେ ବୋଲି ମନେ କଲେ । ଏହାପରେ ଯେ ପୁଣି କ'ଣ ଘଟିବ ସେ ବିଷୟରେ ଚିନ୍ତା କରିବାକୁ କାହାରି ଅବସର ନାହିଁ ।"

ଦିବ୍ୟସିଂହ ବାବୁ ଯେତେବେଳେ ଜଣକୁ କହିଲେ, "ଏହାପର କଥା ବିଗୁରି କାମ କର" । ସେତେବେଳେ ସେ ଜଣକ କହିଲା, "ଯେତେ ଅତ୍ୟାଚାର ସେ କରିଲା କର୍ମ ଫଳ ତାର ଭୋଗିଛି ।" ଦିବ୍ୟସିଂହ ବାବୁ ବିରକ୍ତ ହୋଇ ଯାଇ କହିଲେ, "ସେ ତ କର୍ମଫଳ ଭୋଗିଲା, ତୁମେ ଯେ କର୍ମ କଲ, ତାର ଫଳ ତୁମେ ଭୋଗିବ ।" ଯେତେବେଳେ ଦିବ୍ୟସିଂହ ବାବୁ ତାକୁ ବୁଝାଇଲେ ଯେ ସାହେବର ହତ୍ୟା ଫଳରେ ଭୟ୍ୟା ବହୁ ପ୍ରତିହିଂସା ସାଧିତ ହୋଇ ପାରେ, ତେତେବେଳେ ଲୋକେ ଯାଇ ଚିନ୍ତା କରିବାକୁ ଆରମ୍ଭ କଲେ । ତା' ପରେ ଦିବ୍ୟସିଂହବାବୁଙ୍କ ପରାମର୍ଶ ଅନୁସାରେ ସେମାନେ ରାଜ ଛାଡ଼ି ଚାଲିଗଲେ ଓ ପ୍ରତିହିଂସା ସାଧନ କରିବାର ଅବକାଶ ରହିଲା ନାହିଁ । ସେ ସବୁ ଏ ଦଳର ବହିର୍ଭୂତ ବ୍ୟାପାର । ଦିବ୍ୟସିଂହ ବାବୁ ଯେତେ ଚେଷ୍ଟା କଲେ ବୁଢ଼ା ଲାଲମୋହନ ବାବୁଙ୍କ ଖବର ପାଇଲେ ନାହିଁ । ଲୁଆଡ଼େ ଗଲେ, କେଉଁଠି ଅଛନ୍ତି କିଛି ଜାଣି ପାରିଲେ ନାହିଁ । ଜଣେ ଦୁଇଜଣଙ୍କଠାରୁ ଶୁଣିଲେ ଯେ, ସେ ରାସ୍ତାରେ 'ଜନ ଦରବାରେ ତାର ହୋଇଅଛି ସଜା' ଏ ପଦକ ସୁର ଧରି ଗୀତ ଗାଇ ଗାଇ ଯାଉ ଥିବାର ସେମାନେ ଦେଖିଥିଲେ । କିନ୍ତୁ ଦିନପରେ ଶୁଣିଲେ ଯେ ସେ ଗିରଫଦାର ହୋଇ ରଣପୁର ଜେଲରେ ଅଛନ୍ତି ଓ ତାଙ୍କ ବିରୋଧରେ ହତ୍ୟାର ଅଭିଯୋଗ ଅଣା ହୋଇଅଛି । ଏ ଖବର ପାଇ ଦିବ୍ୟସିଂହ ବାବୁ ଅତି ବ୍ୟସ୍ତ ହୋଇ ପଡ଼ିଲେ । ମୋକଦ୍ଦମା ଲଢ଼ିବା ବ୍ୟବସ୍ଥା କରିବା ପାଇଁ କଟକ ଗଲେ । ସେଇଠୁ ସେ କୁମୁଦିନୀକୁ ବୁଝାଇ ସୁଝାଇ ଚିଠି ଲେଖିଲେ ଯେ, ସେମାନେ ବ୍ୟସ୍ତ ହେବା ଉଚିତ ନୁହେଁ ଓ ଏ ସମସ୍ତ ବନ୍ଦୋବସ୍ତ ସେ କରୁଛନ୍ତି ।

ବିପଦର କଳ୍ପନା କରିବା ସହଜ ଓ ସୁଖମୟ; ମାତ୍ର ସେହି କଳ୍ପନା ଯେତେବେଳେ ନାମ ରୂପ ଧରେ ବିଶେଷତଃ ଯେତେବେଳେ ସେ କଳ୍ପନା କାମରେ ପରିଣତ ହୋଇ ନିଜକୁ କୌଣସି ଅଭୂ ଧକ୍‌କା ଦିଏ, ସେତେବେଳେ ଜଣାଯାଏ ଯେ, ସେ କଳ୍ପନା ତେତେ ସହଜ ବା ସୁଖମୟ ନୁହେଁ । ଯେଉଁ କୁମୁଦିନୀ ଅନୁଗ୍ରହରେ ପଳାତକ ଛାଉଣୀରେ ବ୍ୟାକୁଳ ଥିଲେ, ଅତ୍ୟାଚାରକୁ ଜଣାଇ ଦେବାପାଇଁ ଯେ ସେମାନଙ୍କ ଜୀବନ ପାଣି ଫୁଟକା ପରି ଜଣେ କେତେ ଉନ୍ମତ୍ତ ଲୋକଙ୍କ ଦୟା ଉପରେ ନିର୍ଭର କରେ, ସେହି କୁମୁଦିନୀ ଯେତେବେଳେ ଜାଣିଲେ ସେ ସେହି ହାକିମ, ଯେ ହଜାର ହଜାର ଲୋକଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରିଥିଲା—ସେ ରଣପୁରରେ ନିହତ ହୋଇଛି । ସେତେବେଳେ ତାଙ୍କ ମନ ପୁଲକି ଉଠୁଥିଲା । ଭାବିଲେ ଯାହାହେଉ ଜନତା ଜଡ଼ ହେଲେ ମଧ୍ୟ ତାର ଜୀବନ ଯାଇ ନାହିଁ । ମାତ୍ର ଯେ ମୁହୂର୍ତ୍ତରେ ସେ ଖବର ପାଇଲେ ଯେ ଲଲମୋହନ ବାବୁ ହତ୍ୟା ଅପରାଧରେ ଧରା ହୋଇ ରଣପୁର ଜେଲ୍‌ରେ—ସେତେବେଳେ ତାଙ୍କ ଦେହ ଶିହରି ଉଠିଲା । ତାଙ୍କର ପ୍ରତିହିଂସାର କଳ୍ପନା ଠିକ୍ ତାଙ୍କରି ପ୍ରିୟତମ ବ୍ୟକ୍ତିଙ୍କଠି ରୂପ ଧାରଣ କରିବ, ଏ କଥାତ ସେ ଭାବି ନଥିଲେ । ସେ ଖବର କାଗଜରେ ଖବର ପଢ଼ି ଓ ସେହି ସମୟରେ ହରବଂସିହ ବାବୁଙ୍କ ଚିଠି ପାଇ ଏତେ ବ୍ୟସ୍ତ ହୋଇ ପଡ଼ିଲେ ଯେ ଚୌକିରୁ ଉଠିପଡ଼ି ଉନ୍ମତ୍ତ ପରି ବାରଣ୍ଡାର ଏପାଖରୁ ସେ ପାଖ କ୍ଷିପ୍ର ଗତିରେ ଯିବା ଆସିବା କରିବାରେ ଲାଗିଲେ । ସେ ଯେ କେତେଥର ଲଲମୋହନ ବାବୁଙ୍କୁ ବ୍ୟଙ୍ଗ କରି କହିଛନ୍ତି ଯେ ବିପଦର ସମ୍ମୁଖୀନ ହେଉ ନାହାନ୍ତି, ସେଥିପାଇଁ ମଧ୍ୟ ତାଙ୍କ ମନ

ଗାମ୍ଭୀର ହେଲା । କାହିଁକି ସେ ଯେପରି କହିଲେ—ହୁଏତ ତାଙ୍କର ପରିହାସ —ଲଲମୋହନ ବାବୁଙ୍କ ମନରେ କାମ କରି ତାଙ୍କୁ ବିପଦର ମୁହଁକୁ ଠେଲି ଦେଇଥିବ । ବହୁକ୍ଷଣ ଯାଏ ସେ ନିଜକୁ ସାନ୍ତ୍ୱନା ଦେଇ ପାରିଲେ ନାହିଁ । ଶେଷରେ ଯେତେବେଳେ ସେ ନିଶାମଣି କଥା ଭାବିଲେ, ସେତେବେଳେ ଯାଇ ତାଙ୍କର ଜ୍ଞାନ ହେଲା ଯେ ଆଉ ଜଣକୁ—ତାଙ୍କୁ ସାନ୍ତ୍ୱନା ଦେବାକୁ ହେବ । ନିଜର ହୃଦୟକୁ ବଳତ୍କାରରେ ବାଗକୁ ଆଣି ନିଶାମଣିକୁ କି ପ୍ରକାରେ ବୁଝାଇ ସମସ୍ତ କହିବେ ସେ କଥା ସେ ଚିନ୍ତା କଲେ । ପ୍ରଥମେ ମନ କଲେ ଯେ ତାଙ୍କୁ କୌଣସି ଖବର ଦେବେ ନାହିଁ ।

ବାସ୍ତବିକ ତାଙ୍କୁ ଅନେକ ଦିନ ପର୍ଯ୍ୟନ୍ତ ଏକଥା ସେ କିଛି ଜଣାଇ ନାହାନ୍ତି । ମାତ୍ର ନିଶାମଣି ତେଣେ ଅତିବ୍ୟସ୍ତ ଯେ, କାହିଁକି ଲଲମୋହନ ବାବୁ ଆସୁ ନାହାନ୍ତି । ଦିନପରେ ଦିନ, ମାସପରେ ମାସ ଗଡ଼ି ଯାଉଛି । ତାଙ୍କୁ କିଛି ସୁଖ ଲାଗୁ ନାହିଁ । ପୁଅଟିର ମୁହଁ ସୁଦ୍ଧା ଥରେ ଦେଖିବା ପାଇଁ ବାପ ଆସିଲା ନାହିଁ । ସତେ ତାଙ୍କ ସହିତ ଭେଟ କରାଇବା ପାଇଁ କୁମୁଦିନୀ ତାଙ୍କୁ ନେଇ ଆସିଲେ ନା ଅନ୍ୟ କୌଣସି ଉଦ୍ଦେଶ୍ୟରେ ପ୍ରବଞ୍ଚନା କରିଛନ୍ତି, ଏ ସନ୍ଦେହ ମଧ୍ୟ ଜାତ ହେଲାଣି । କିମ୍ବା ହୁଏତ ଭାଇ ସବୁ ସମସ୍ତ ଖାଇବେ ବୋଲି ଜାଲ କରି ତାଙ୍କୁ ଘରୁ ବିଦାୟ କରି ଦେଲେ । କୁମୁଦିନୀ ଚୌକି ଉପରେ ବସି ମୁଣ୍ଡକୁ ଛୋଟ ଟେବୁଲଟିଏ ଉପରେ ମାଡ଼ି ଦେଇଛନ୍ତି । ନିଶାମଣି ଘରୁ ଥାଇ କହିଲା, "କଅଣ ଖବର ଆସିଛି କି ? ଏତେ ଭାବି ହେଉଛ ?"

କୁମୁଦିନୀ ମୁଣ୍ଡ ଟେକି ହଠାତ୍ ଉଠିପଡ଼ି ଘର ଭିତରକୁ ଯାଇ କହିଲେ, "ନାଁ, କିଛି ନୁହେଁ, ଖାଲି ସେହିପରି ବସିଥିଲି ।"

ନିଶାମଣି ଶିଶୁଟିକୁ କୋଳରେ ଧରି ଦୁଧ ଦେଉ ଦେଉ କହିଲା—"ଚାରି ଦେବାର ତ ମାସେ ହୋଇଗଲା-କାହିଁ, ତାଙ୍କର ଦେଖା ନାହିଁ କି କିଛି ଖବର ନାହିଁ । ମୋ ମନ ଖାଲି କଅଣ ହୋଇ ଯାଉଛି, ସବୁମାଡ଼ି ପଡ଼ିଲା ପରି ଲାଗୁଛି । ମୁଁ ଘରେ ଥିଲି ଭଲ ଥିଲି । ଏଠିକି କାହିଁକି ଆଣିଲ । ତାଙ୍କ ପାଇଁ ମୋତେ ତୁମେ ଅଣାଇ ନାହିଁ । ତୁମର ଆଉ କିଛି, ମାତ୍ର

ଅଛ । କଅଣ ତୁମ୍ଭ ମନ କଥା ଖୋଲି କହ । ତାଙ୍କ ପାଇଁ ମୁଁ ଯବ ଆସିଥାନ୍ତି, ମୁଁ ଆସି ପର ଦୁଆରେ ଏତେ ଦିନ ହେଲି ପଡ଼ିଲଣି, ଥରେ ସେ ମୋ କଥା ବୁଝନ୍ତେ ନାହିଁ ।" ଏତିକି କହୁ କହୁ ତା ଆଖି ଛଳ ଛଳ ହୋଇ ଆସିଲା ।

ତୁମ୍ଭଦଣ ବସି ପଡ଼ ବୁଝାଇ କହିଲେ,"ସେ ତ ବର୍ତ୍ତମାନ ଏପରି ବଡ଼ କାମରେ ଲାଗିଛନ୍ତି ଯେ, ତା' ତୁମେ ବୁଝି ପାରୁ ନାହିଁ । ସେ ଜୀବନ ମୂଲ୍ଚ ଦେଇ ହଜାର ହଜାର ଲୋକଙ୍କୁ ଅତ୍ୟାଚାରରୁ ରକ୍ଷା କରିବା ପାଇଁ ଲାଗିଛନ୍ତି । ସେ ସବୁ ଅତ୍ୟାଚାର ଓ ସବୁ ଖବର ପରି ମୁଁ ତୁମକୁ ବାରମ୍ବାର ଶୁଣାଉଛି । ମୁଁ ବାରମ୍ବାର କହୁଛି ଯେ, ପରକୁ ରକ୍ଷା କରିବା ପାଇଁ ଯେ ବାହାରିବ ତା'ର ଧନ ସମସ୍ତ ପ୍ରିୟା ପ୍ରତି କିଛି ରହିବ ନାହିଁ । ତୁମେ ତ ଏଠି ଭଲରେ ଅଛ; କିଛି ଅସୁବିଧା ହେଉଥିଲେ ମୋତେ କହ । ଯାହାକୁ ପରଘର ବୋଲି କାହିଁକି ଭାବୁଛ । ମୁଁ ପରି ତୁମ୍ଭର ସ୍ଥାନ ଭଉଣୀ ପରି । ତୁମେ ଯାହା କହିବ ମୁଁ ତା କରିବି ।"

ନିଶାମଣି ପିଲାଟିକୁ ଶେଯ ଉପରେ ଶୁଆଇ ଦେଇ ଲୁଗାଖଣ୍ଡେ ଢାଙ୍କି ଦେଇ, ଆଖି ମଳି ମଳି କହିଲା, "ଘରେ ଥିଲି ବରଂ ଭଲ ଥିଲି—ଯାହା କରନ୍ତୁ ପଛକେ ସେ ତ ଭାଇ, ନିଜର ଲୋକ—ହେଉଁଥ ହେଲେ ଏତ ପର ଦୁଆର । ସେ ଆସୁ ନାହାନ୍ତି କାହିଁକି ? କେଉଁଠି ସେ ଅଛନ୍ତି । ମୁଁ ସେଠିକି ଯିବି ଏ ପିଲାଟିକି ନେଇ । ଯାହା କରୁଥାନ୍ତୁ ପଛକେ ଏ ପିଲାଟିକୁ ତାଙ୍କୁ ଜିମା କରିଦେବି ।"

ତୁମ୍ଭଦଣ ନିଶାମଣିଙ୍କ ପିଠିରେ ହାତ ମାରି କହିଲେ,"ପିଲା ତ ତୁମର । ମାଆ ହେବାର ସୌଭାଗ୍ୟ ସମସ୍ତଙ୍କୁ ମିଳେ ନାହିଁ । ମିଳିଲେ ମଧ୍ୟ ଅଭାଗିଣୀକୁ ତାହା ସହେ ନାହିଁ । ତୁମେ ଭାଗ୍ୟବତୀ । ବ୍ୟସ୍ତ କାହିଁକି ହେଉଛ ? ଧୈର୍ଯ୍ୟ ଧରି ରହ ।"

ନିଶାମଣି ରୁଦ୍ଧ କଣ୍ଠରେ କହିଲା, "ସେ ଆଜି କାଲି କେଉଁଠି ଅଛନ୍ତି । ମୋତେ କହୁ ନାହିଁ କାହିଁକି ?"

କୁମୁଦିନୀ ମୁହଁରୁ ହଠାତ୍ ବାହାରି ପଡ଼ିଲା, "ସେ ବର୍ତ୍ତମାନ-ଜେଲରେ ଅଛନ୍ତି ।"

କଣାମଣି ଚମକି ପଡି କହିଲା,"ଆଁ, ଜେଲଖାନାରେ ! ଥରେ ଯାଇ-ଥିଲେ ଯେ ଦଶବର୍ଷ ପରେ ଆସିଲେ; କାହିଁ କାହିଁ ମୋ ଦିନ ସରିଛି । ପୁଣି କେତେଦିନେ ସେ ଆସିବେ । କେତେ ମାସ ନାଁ କେତେ ବର୍ଷ ଜେଲ ହୋଇଛି ? ମୋତେ ସବୁ ଲୁଚାଉଚ କାହିଁକି ? ଖୋଲି କହ ।"

କୁମୁଦିନୀ ଅତି ବ୍ୟସ୍ତ ହୋଇ ନିଜକୁ ସମ୍ଭାଳି କହିଲେ, "ତାଙ୍କ ମୋକଦ୍ଦମା ଚାଲିଛି । କଅଣ ହେବ କିଛି ଠିକ୍ ନାହିଁ । ତୁମେ ଥୟଧରି ରହ ତୁମର କିଛି ଅସୁବିଧା ହେବ ନାହିଁ । ତୁମେ ଘରେ ଯେପରି ରହନ୍ତ ଏଠି ସେହିପରି ରହ । ତୁମର ସ୍ୱାମୀ ଯେ, ସେ ମୋର ସ୍ୱାମୀ ପରି ।"

ଏ ପଦକ କଥାପରି କଣାମଣି ଛାତିରେ ବାଜିଲା । ବହୁଦିନୁ ତା ମନକୁ ଆସୁଥିଲା, ତା ସ୍ୱାମୀଙ୍କ ଏ କୁମୁଦିନୀ ସହିତ କିଛି ଅନ୍ୟପ୍ରକାର ସମ୍ପର୍କ ଅଛି କି ? ମାତ୍ର ତା ହୋଇଥିଲେ ସେ ଏତେ ଯତ୍ନ କାହିଁକି ନିଅନ୍ତା ? ଏକଥା ପୁଣି ତା ମନକୁ ଆସି କୌଣସି ସନ୍ଦେହକୁ ଦୃଢ଼ କରି ନଥିଲା । ବର୍ତ୍ତମାନ ଯେ କଥା ଶୁଣିଲା, ସେଥିରେ ତାର ସନ୍ଦେହ ଜାଗି ଉଠିଲା । ମନ ଭିତରେ ଈର୍ଷା ପ୍ରବଳ ହୋଇ ଉଠିଲା । ସେ ଗମ୍ଭୀର ଭାବରେ ପଚାରିଲା, "ତୁମର କଅଣ ସେ ସ୍ୱାମୀ ?"—

କୁମୁଦିନୀ ଇତସ୍ତତ ହୋଇ କହିଲେ—"ନା ସେ ମୋର ଅତି ପ୍ରିୟବନ୍ଧୁ । ସ୍ୱାମୀ ହେଲେ ମଧ୍ୟ ତୁମେ ମୋତେ ସଉତୁଣୀ ବୋଲି ଈର୍ଷା କରିବ ନାହିଁ । ମୁଁ ତୁମର ଦାସୀ ହୋଇ ରହିବି । ତୁମର ସବୁ-ସେବା କରିବି ।"

କଣାମଣି ଉଠିପଡି ମୁହଁଖାଇ କହିଲା— "ସେହିକଥା ଆଜିଯାଏ ମୋତେ କାହିଁକି କହୁନାହିଁ । ତୁମର ତାଙ୍କର, ତାହେଲେ କିଛି-ଗଲ ଅଛି—ମୁଁ ତ ମୂର୍ଖ ଲୋକ, ମୁଁ ଏତେ କଥା କାହୁଁ ଜାଣିବି ?"

କୁମୁଦିନୀ ନିଶାମଣି ହାତ ଧରି ଟାଣି ବସାଇ ଦେଇ କହିଲେ, "ରାଗ କରୁଛ କି; ସେ କିଛି ତ ମୋତେ ଚିଠିପତ୍ର ଦେଇ ନାହାନ୍ତି । ତୁମଠାରୁ ମୋତେ କଣ ସେ ବେଶୀ ପଚାରୁଛନ୍ତି ଯେ, ତୁମେ ମୋ ଉପରେ ରାଗୁଛ । ବାସ୍ତବିକ ସେ ମୋର ସ୍ୱାମୀ ନୁହନ୍ତି । ମାତ୍ର ସେହିପରି ଜଣେ ପ୍ରିୟତମ ବନ୍ଧୁ ।" ନିଶାମଣି ବିଛଣାରେ ଶୋଇ ପଡ଼ିଲା । ଆଉ କିଛି କହିଲା ନାହିଁ । କେତେ ସଂଦେହ ତା ମନରେ ଲହରୀ ମାରିଲା । ତାକୁ କଅଣ ନେଇ ଅସିଛୁ, ସେ ମାରି ପକାଇବା ପାଇଁ—କିମ୍ବା କୁଆଡ଼େ ତାକୁ ଛାଡ଼ିଦେଇ ସେ ଦୁହେଁ ସ୍ତ୍ରୀ ପୁରୁଷ ହୋଇ ଅନ୍ୟ କେଉଁଠାରେ ରହିବେ ? କଥା କଅଣ ? ନିଜେ ଉପେକ୍ଷିତା ଓ ଶେଷରେ ତା ନିଜ ଆଖିରେ ଜଣେ ସଉତୁଣୀ ଦେଖିବ, ଏହାଠାରୁ ବଳି ଦାରୁଣ କଷ୍ଟ କଅଣ ଅଛି ? କିଛି କ୍ଷଣ ପରେ ସେ ବିଛଣାରେ ମୁହଁ ଲୁଚେଇ ସକ ସକ ହୋଇ କାନ୍ଦିଲା ।

କୁମୁଦିନୀ ବହୁତ ବୁଝାଇଲେ ସେ କାନ୍ଦଣା ବନ୍ଦ କଲା । ମାତ୍ର ତା ମନ ଆଉ ବୁଝିଲା ନାହିଁ । କୁମୁଦିନୀ ଦେଖୁଥାଏ ଯେ, ବେଳକୁ ବେଳ ଅବସ୍ଥା ବଡ଼ ଜଟିଳ ହୋଇଯାଉଛି । ମକଦ୍ଦମାରେ ଯାହା କିଛି ପରିଣାମ ଘଟି ପାରେ ଏ କଥା ଯେତେବେଳେ ସେ ଭାବି ପକାଏ, ତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଯାଏ । ସେ କେଉଁଠି ? ନିଶାମଣି ବା କେଉଁଠି ? କୁଆଡ଼େ ଯାଇ ତା ନୌକା ଲାଗିବ । ନିତାନ୍ତ ବ୍ୟସ୍ତହୋଇ ଦିବ୍ୟସିଂହ ବାବୁଙ୍କ ଠାକୁ ପତ୍ର ଦେଲା ଥରେ ଆସିବା ପାଇଁ ।

ଦଶ୍ୟସିଂହ ବାବୁ କଟକରୁ ଓକିଲ ନେଇ ରଣପୁରରେ ଲାଲମୋହନ ବାବୁଙ୍କୁ ଆଇନର କବଳରୁ ରକ୍ଷା କରିବା ପାଇଁ ବ୍ୟସ୍ତ । ଗୋରା ଲୋକେ ଏ ଦେଶର ରାଜା । ରାଜା ଘରେ ଜଣେ ବଡ଼ ହାକିମ ଓ ସେ ପୁଣି ଜଣେ ସୈନ୍ୟ ପରିଚାଳକ । ସେ ଯେତେବେଳେ ନିହତ ହୋଇଛି, ତେତେବେଳେ ଯେଉଁମାନେ ଦୋଷୀ ସେମାନଙ୍କୁ ଉଚିତ ଶାସ୍ତି ଭୋଗ କରିବାକୁ ପଡ଼ିବ । ତେଣୁ ଗଡ଼ଜାତ ମୋଗଲବନ୍ଦୀ ସବୁ ପୋଲିସ ଲାଗି ପଡ଼ି ମକଦ୍ଦମାକୁ ସଜାଇବାରେ ଲାଗିଛନ୍ତି । ଲାଲମୋହନ ବାବୁଙ୍କ ପଛେ ପଛେ ଆହୁରି ପଚିଶ ଜଣ ଗ୍ରେପ୍ତାର ହେଲେଣି । ମକଦ୍ଦମା ସଜାଇବା ପାଇଁ ଯେଉଁ ପୋଲିସ କର୍ମଚାରୀ ନିଯୁକ୍ତ ଥିଲେ, ସେ ଜଣେ ସେହି ରଣପୁର ବାସିନ୍ଦା ହାତ କରି ତାହା ଠାରୁ ଖବର ବୁଝି ଦୋଷୀ ଗିରଫଦାର କରିବାରେ ଲାଗିଥାନ୍ତି । ସେତେବେଳେ ରଣପୁର ଜନ ଶୂନ୍ୟ । ପ୍ରତିହିଂସାକୁ ଏଡ଼ିବା ପାଇଁ ଲୋକେ ଘର ଦ୍ୱାର ଛାଡ଼ି ଚାଲି ଯାଇଥାନ୍ତି । କେବଳ ଶାମା ବୋଲି ଜଣେ ମଜବୁତ ଟୋକା ଗୃହ ବାସ କରି ଚଳେ । ସେ ପୋଲିସ କର୍ମଚାରୀଙ୍କ ଶରଣ ପଶି ସବୁ ଖବର ଠିକ କହି ଦେବାର ପ୍ରତିଶ୍ରୁତି ଦେଇ ବିଶ୍ୱାସୀ ହୋଇ ପୋଲିସ ଆଶ୍ରୟରେ ଥାଏ । ସାକ୍ଷୀ ସହଜରେ ମିଳୁ ନ ଥାନ୍ତି । ମାତ୍ର କୌଣସି ପ୍ରକାରେ ଆଇନ ଅନୁସାରେ ଜଣକ କଥାକୁ ଆଉ ଜଣକ କଥାରେ ମିଳାଇ ସାକ୍ଷୀ ଛିଡ଼ା କରାଇବାକୁ ହେବ । ନ ହେଲେ ହାକିମ ଦଣ୍ଡ ଦେଇ ପାରିବେ ନାହିଁ । ଏଣୁ ଯେଉଁମାନେ ବହୁ ଦିନ ଘର ଦ୍ୱାର ଛାଡ଼ି ପଳାଇ ପୁଣି ଘରକୁ ଫେରିବା ପାଇଁ ଅତି ଉଦବିଗ୍ନ, ସେହିମାନଙ୍କୁ ଶାମା ଠଉରାଇ ଶିଖାଇଲା—"ମୋ

କଥାମାନ, ଗୁଳି ଔଷ, ଯାହା ଦାରୋଗା ବାବୁ କହୁଛନ୍ତି ସେଇଆ କହି ଦିଅ । ବାସ ଖଲାସ; ଘରକରଣା କରି ରହ ।" ଏଥିରେ ଅନେକ ଲୋକ ହୋଇ ସାକ୍ଷୀ ହେବାର ଶିକ୍ଷା, ପୋଲିସ ଦାରୋଗାଙ୍କ ତତ୍ତ୍ୱାବଧାନରେ ପାଉଛନ୍ତି । ଜଣେ ପ୍ରୌଢ଼ ନିବାହ, ଲୋକ ତାକୁ ଯେତେବେଳେ ବୁଝାଗଲା ଯେ, ସେ ସାକ୍ଷ୍ୟ ଦେଇ କହିବ, ଲାଲମୋହନ ବାବୁଙ୍କୁ ଦେଖିଛି ସାହେବ ମୁଣ୍ଡରେ ଆଘାତ କରିବାର । ସେତେବେଳେ ସେ ଆବାକାବା ହୋଇ ଗୃହିଆଡକୁ ଅନାଇ ନିଶ୍ୱାସ ମାରି କହିଲା, "କେଉଁ ବାବୁ ସେ, ଯେଉ ବାବୁ କଟକରୁ ଆସିଥିଲେ ନାଁ । ।"

ପୋଲିସ ଦାରୋଗା ବିରକ୍ତ ହୋଇ କହିଲା, "ହଁ ହେ ସେହି—କେତେ ଏଠାକୁ ଶିଖାଇବ ।"

ବୁଢ଼ା ମୁହଁ ତଳକୁ କରି କହିଲା, "ନା, ବାବୁ ମୋତେ ମାରି ପକାଅ ପଛକେ ମୁଁ ସେ କଥା କହି ପାରିବି ନାହିଁ । ଯେତେବେଳେ ଲୋକେ ସାହେବଙ୍କୁ ଘେରିଗଲେ ସେତେବେଳେ ତ ସେ ବାବୁ ସାହେବଙ୍କୁ ଓଗାଳି ଘଡ଼ିଏ ତାକୁ ସମ୍ଭାଳି ନେଇଥିଲେ । ସେତେବେଳେ ତ କେତେ ମାଡ ସେ ବାବୁଙ୍କ ଦେହରେ ବସି ଯାଇଛି । ଶେଷରେ ଲୋକେ ତାଙ୍କୁ ଛଡାଇ ଦେଇ ସାହେବଙ୍କୁ ଧରିଲେ । ମୁଁ କିପରି କହିବି ଯେ, ସେ ବାବୁ ମାରିଛନ୍ତି ।"

ଦାରୋଗା ଏତେକ ଶୁଣି, ରାଗି ଅସ୍ଥିର ହୋଇ ତାକୁ ଧାଙ୍ଗେ ସାଙ୍ଗେ ଗିରଫ୍‌ଦାର କରି ଜେଲ୍‌ଖାନାକୁ ପଠାଇ ଦେଲେ । ଏହିପରି ମିଛ କହିବାକୁ ହନ୍ତ ସନ୍ତ ହୋଇ ଅନେକ ମଧ୍ୟ ଜେଲ୍‌ଖାନାକୁ ପଠା ହେଲେଣି । ମାତ୍ର ସାହେବଙ୍କ ହଣା ମକଦ୍ଦମା ପାଇଁ ଯେତେ ସାକ୍ଷୀ ଦରକାର ତା' ଠାରୁ ବେଶୀ ଠିକ୍ ହୋଇ ଗଲେଣି । ସାହେବ ଜଣେ ନିହତ ହୋଇ ଯାଇଛନ୍ତି ବୋଲି ଯେ ଆଇନ ବାହାରେ ତାଙ୍କ ଘର ସରକାର କିଛି କରିପିବେ ଏ ଧାରଣା ସାଧାରଣଙ୍କ ମନରେ ଯେପରି ନ ହୁଏ, ସେଥିପାଇଁ ମକଦ୍ଦମା ବିଚାରର ବିଧିମତ ବ୍ୟବସ୍ଥା ହୋଇଛି । ବାହାରୁ ଭଲ ହାକିମ ଓ ପୁଣି ତାଙ୍କ ଉପରୁ ବିଚାରରେ ହାଇକୋର୍ଟ

ପର୍ଯ୍ୟନ୍ତ ଅପିଲ, ଯହିଁ। ଗଡଜାତ ବୁଦ୍ଧିମଣାରେ କେହି କଳନା ସୁଦ୍ଧା କରି ପାରିବ ନାହିଁ ସେ ସବୁର ବନ୍ଦୋବସ୍ତ ହୋଇଛି । ପରଦା ଭିତରେ ଯାହା ହେଉ ଥାଉ ପଛକେ ପରଦା ବାହାରେ ଆଇନ ଏକ ଦିଗରେ, ଅନ୍ୟ ଦିଗରେ ଧର୍ମକୁ ସାକ୍ଷୀ ରଖି ସତ୍ୟ ପାଠ—ଯହିଁରେ ନିର-ପେକ୍ଷତାର ଆବରଣ ତଳେ କପଟ ମିଥ୍ୟା ଗଢ଼ା କରୁଛି । ସେ ଆବରଣକୁ ହଟାଇବା ପାଇଁ ଓକିଲ ଯେତେ ବୁଦ୍ଧି ଖର୍ଚ୍ଚ କଲେ ସୁଦ୍ଧା ପାରୁ ନାହାନ୍ତି । ଜେରା କଣ କରାଯିବାର ସମ୍ଭାବନା ତାକୁ ଅନୁମାନ କରି ତାର ଉତ୍ତର କଣ ହେଲେ ଠିକ୍ ଖାପ ଖାଇବ, ସେ ସବୁ ସାକ୍ଷୀମାନେ ତୋତା ଚଢ଼େଇ ପରି କଣ୍ଠସ୍ଥ କରୁଛନ୍ତି । ଯେଉଁ ପୋଲିସ କର୍ମଚାରୀ ମକଦ୍ଦମା ସଜାଉଥିଲେ, ତାଙ୍କର ବୁଦ୍ଧି ସହିତ ଯେ ଓକିଲ ମକଦ୍ଦମା ଲଢ଼ୁଥିଲେ ତାଙ୍କର ବୁଦ୍ଧି ସମକକ୍ଷ ହୋଇ ପାରିଲା ନାହିଁ । ଏଣୁ ଲାଲମୋହନ ବାବୁ ଯେ ହତ୍ୟାକାରୀଙ୍କ ମଧ୍ୟରେ ମୁରବୀ ଲୋକ, ଏହା ବିଚାରକଙ୍କ ଆଗରେ କୌଣସି ଅମେଳ ନ କରି ବହୁ ସାକ୍ଷୀ କହିଗଲେ । ଶେଷରେ ହାକିମ ଲାଲମୋହନ ବାବୁଙ୍କୁ ପଚାରିଲେ ତାଙ୍କର କଣ କହିବାରି ଅଛି ।

ଲାଲମୋହନ ବାବୁ କଟେରାରେ ଖୁବ୍ ଦମ୍ଭ ସହକାରେ ଛିଡା ହୋଇଥାନ୍ତି । ତାଙ୍କ ମୁହଁରେ ଧୈର୍ଯ୍ୟ ପ୍ରସନ୍ନତା ଖେଳି ଯାଉଥାଏ । ସେ ଟିକିଏ ହସି ଦେଇ କହିଲେ, "ଏତେ ଲୋକ କହି ଯାଉଛନ୍ତି ମୁଁ ସାହେବଙ୍କୁ ମାରିଥିଲି ବୋଲି । ଏମାନେ ସମସ୍ତେ କଙ୍ଗାଳ, ଗାଁର ଲୋକ । କେତେ ଅତ୍ୟାଚାର ସହି ଏଠିକି କହିବାକୁ ଏମାନେ ରାଜି ହୋଇଛନ୍ତି । ମୁଁ ବୁଝିପାରୁଛି, ମୁଁ ଏଠାରେ କୌଣସି ନ୍ୟାୟର ଆଶା ରଖିନାହିଁ । ଲୋକେ ଯେପରି ଉତ୍କ୍ଷିପ୍ତ ହୋଇ ସେ ସାହେବଙ୍କୁ ମାରି ପକାଇଲେ ସେହିପରି ଆପଣ ଉତ୍କ୍ଷିପ୍ତ ହୋଇ ମୋତେ ମାରି ପକାଇଲେ ମୋର କିଛି କହିବାର ନଥାନ୍ତା । ମାତ୍ର ଯେତେବେଳେ ନ୍ୟାୟ ବିଚାରର ଗୋଟିଏ ପ୍ରଦର୍ଶନୀ ଏଠି ଖୋଲା ଯାଉଛି ଓ ମୋତେ ମୋ କଥା କହିବା ପାଇଁ ଗମ୍ଭୀର ଭାବରେ ପଚରା ଯାଉଛି, ମୁଁ ବାଧ୍ୟ ହୋଇ କହୁଛି

ଯେ, ମୁଁ ସାହେବଙ୍କୁ ମାରି ନାହିଁ । ବରଂ ମୁଁ ତାଙ୍କୁ ରକ୍ଷା କରିବାକୁ ଯାଉଥିଲି । ଆଗରୁ ହୋଇ ମୁଁ ସାହେବଙ୍କ ସହିତ ତର୍କ ବିତର୍କ କରୁଥିଲି; ସତ । ମାତ୍ର ସାହେବ ମହିରେ ବୁଝି ହଠାତ୍ ପିସ୍ତଲରେ ଦମାଦମ ଗୁଳି ମାରି ଯେତେବେଳେ କେତେ ଜଣଙ୍କୁ ମାରି ପକାଇଲେ, ସେତେବେଳେ ଜନତା କ୍ଷିପ୍ତ ହୋଇ ଯାଇ ତାଙ୍କୁ ଆକ୍ରମଣ କଲା । ମୋର ସମସ୍ତ ଶକ୍ତି ଦେଇ ମଧ୍ୟ ମୁଁ ତାଙ୍କୁ ରକ୍ଷା କରି ପାରିଲି ନାହିଁ । ମୁଁ ଯେ କାହିଁକି ତାଙ୍କୁ ରକ୍ଷା କରିବାକୁ ବାହାରିଲି ସେ କଥା ସବୁ ବୁଝାଇ କହି ପାରିବି ନାହିଁ । ଏ ସାହେବ ସୈନ୍ୟମାନଙ୍କୁ ନେଇ ଯେ ପୈଶାଚିକ ଅତ୍ୟାଚାର ଗ୍ରାମେ ଗ୍ରାମେ ଗଡ଼ଜାତରେ ଚଳାଇ ଥିଲେ, ତାହା ମୁଁ ଆଖିରେ ଦେଖିଛି ।

ବେଳେ ବେଳେ ମୋ ପ୍ରାଣ ଭାବୁଛି ଏହାକୁ ଉଚିତ ଶିକ୍ଷା ଦେବା ପାଇଁ । ମାତ୍ର ପୁଣି ମୁଁ ଭାବୁଛି ଯେ ଜଣେ ଦୁଇ ଜଣଙ୍କୁ ଶିକ୍ଷା ଦେଇ ଲାଭ କ'ଣ । ସେତେବେଳେ ସେ ଭିଡ଼ରେ ମୋ ମନରେ ସେହି କଥା ଉଠିଲା । ସାହେବଙ୍କୁ ରକ୍ଷା କରିବା ପାଇଁ ମୁଁ ମଧ୍ୟ ମାଡ ଖାଇଛି । ମୋତେ ଯେତେବେଳେ ଲୋକେ ଟାଣି ବାହାରକୁ ନେଇଗଲେ; ସେତେ-ବେଳେ ସାହେବଙ୍କୁ ଏକୁଟିଆ ଲୋକେ ଧରିଲେ । ମାତ୍ର ଏ କଥା ମୁଁ ବା କିପରି ପ୍ରମାଣ କରିବି । କିପରି ବା ମୋ ମୁହଁରୁ ବାହାରିବ ଯେ,ଯେଉଁ-ମାନେ ଏଠି ସାକ୍ଷୀ ଦେଇ ଗଲେ ସେହିମାନଙ୍କ ଭିତରୁ ଅନେକ ସେହିଦିନ ମୋତେ ସାହେବଙ୍କଠାରୁ ଛଡ଼ାଇ ଟେକି ନେଇ ଗଲେ । ସେମାନେ କହନ୍ତି ଲୋକ; ଅତ୍ୟାଚାର ବିରୁଦ୍ଧରେ ମୁଣ୍ଡ ଟେକି ଉଠିଥିଲେ । ପୁଣି ଲାଠି ମାଡ଼ ଖାଇ ମୁଣ୍ଡ ନୁଆଁଇ ଦେଇଛନ୍ତି । ପୁଣି ହୁଏତ ସେମାନେ ଉଠିବେ ! ନିଶ୍ଚୟ ସେମାନେ ଉଠିବେ । ମୁଁ ଯଦି ଫାଶୀ ପାଏ— ପାଇବି, ଯେପରି ମୁଁ ଅନୁମାନ କରୁଛି— ତେବେ ଫାଶି କାଠ ଉପରେ ମୃତ୍ୟୁ ସମ୍ମୁଖରେ ମୋର ଏତିକି ଆଶ୍ୱାସନା ଥିବ ଯେ, ଆଉ ଏ ଲୋକ ପାଶବିକ ଅତ୍ୟାଚାର ସହି ପାରିବେ ନାହିଁ । ଏମାନେ କଡ଼ ନେଉଥାଇବେ ଓ ସେଥିରେ ଯେ, ଭୂମିକମ୍ପ ଜାତ ହେବ ତାହାହିଁ ଏ ବର୍ବର ଅତ୍ୟାଚାର ସମସ୍ତଙ୍କୁ ଧୂଳିସାତ କରାଇ ଦେବ !"

ବିଚାରପତି ମନ ଦେଇ ସବୁ କଥା ଶୁଣୁଥିଲେ । ଲାଲମୋହନ ବାବୁ ବନ୍ଦ ହେବା ମାତ୍ରକେ ଧୀରେ ଧୀରେ କହିଲେ, "ଏହି ଆପଣଙ୍କ ଯାହା କିଛି କହିବାର । ଆପଣ ନିଜ ପକ୍ଷ ସମର୍ଥନ କରି ସାକ୍ଷୀ ଦେବେ ?"

ଲାଲମୋହନ ବାବୁ ହସି ଦେଇ କହିଲେ, " ଆଉ ସେ ପ୍ରହସନ ଭିତରକୁ ମୁଁ ଯିବାକୁ ଚାହେଁ ନାହିଁ । ଯା ହେବାର ଶୀଘ୍ର ହୋଇ ଯାଉ । ମୋର ଏତିକି ସନ୍ତୋଷ ଯେ, ଲୋକେ ଅତ୍ୟାଚାରରେ ହତ ନହୋଇ ଯାଇ କିଛି ହେଲେ କରିଛନ୍ତି । ବିଶେଷତଃ ଯେ ସବୁଠାରୁ ବେଶୀ ଅତ୍ୟାଚାରୀ ତାର ବିଚାର ସେମାନେ କରି ଦେଇଛନ୍ତି । ଏଣିକି ମୁଁ ଫାସୀ ପାଇଲେ ମୋର ଦୁଃଖ ନାହିଁ ।"

ବିଚାରପତି ମୁହଁ ତଳକୁ କରି କିଛି ସମୟ ଭାବି ପୁଣି ମୁହଁ ଉଠାଇ କହିଲେ,"ଆଚ୍ଛା, ଆପଣ, ଦୋଷୀ ନା ନିର୍ଦ୍ଦୋଷୀ ।"

ଲାଲମୋହନ ବାବୁ କିଛି କ୍ଷଣ ଚିନ୍ତା କରି କହିଲେ, "ଏତେ ଲୋକଙ୍କୁ ଯେ ହତ୍ୟା ଅପରାଧରେ ଗିରଫଦାର ହୋଇ ଯାଇଛି, ଏମାନେ ନିର୍ଦ୍ଦୋଷ, ମୁଁ ଏକ ମାତ୍ର ଦୋଷୀ । ମୋତେ ହିଁ ଫାସୀ ହେଉ, ଏମାନଙ୍କୁ ମୁକ୍ତ କରି ଦିଆ ଯାଉ ।"

ବିଚାରପତି ମୁହଁ ତଳକୁ କରି ଲେଖିବାରେ ଲାଗିଲେ ।

ବିଚାର ସରିଲା । କିଛିଦିନ ପରେ ରାୟ ଦିଆଗଲା । ଲାଲମୋହନ ବାବୁ ଓ ଆହୁରି ତିନିଜଣଙ୍କୁ ଫାସୀ ଓ କୋଡ଼ିଏ, ପଚିଶ ଜଣଙ୍କୁ ଯାବଜ୍ଜୀବନ କାରାବାସ ଓ ଅନ୍ୟମାନଙ୍କୁ ପାଞ୍ଚବର୍ଷ,ଦଶବର୍ଷ କରି ଜେଲ୍ ହୁକୁମ ହେଲା । ଏ ହୁକୁମ ଶୁଣିଲା ମାତ୍ରକେ ଲାଲମୋହନ ବାବୁଙ୍କ ମୁହଁ ଯେପରି ହଠାତ୍ ଶୁଖିଗଲା । ସେ ସେହି ଉତେଜନାରେ ଶୁଖିଲା ମୁହଁରେ ବିବ୍ୟଣିହି ବାବୁଙ୍କୁ

ଗୃହଁଦେଲେ । ଦିବ୍ୟସିଂହ ବାବୁ ମଧ ଦଣ୍ଡ ଦେବା ଶୁଣି ବିବ୍ରତ ହୋଇଗଲେ । ସେ ଲାଲମୋହନ ବାବୁଙ୍କ ଆଡ଼କୁ ଅନାଇଲେ ।

ଲାଲମୋହନ ବାବୁ ଅସ୍ପଷ୍ଟ ସ୍ୱରରେ କହିଲେ, "କୁମୁଦିନୀ, ଆପଣଙ୍କୁ ଲାଗିଲା ।"

ଦିବ୍ୟସିଂହ ବାବୁ କେବଳ କୁମୁଦିନୀ ନାଁଟି ଶୁଣି ବିଷୟ ବୁଝି ପାରିଲେ । ଆଉ ବେଶି କଥାବାର୍ତ୍ତା ହେବାକୁ ପୋଲିସ ଅନୁମତି ଦେଲେ ନାହିଁ । ଲାଲମୋହନ ବାବୁ ଜେଲ୍‌କୁ ନିଆ ହେଲେ । ଦିବ୍ୟସିଂହ ବାବୁ ସିଧା ସେହି ଠାରୁ ପୁଣି ଆସିଲେ ।

ସକାଳ ଓଳି ଦିବ୍ୟସିଂହ ବାବୁ କୁମୁଦିନୀଙ୍କ ବସା ଆଗରେ ରାସ୍ତା ଉପରେ ଛିଡ଼ା ହୋଇ ଏଣେ ତେଣେ ଅନାଉଛନ୍ତି, ଏହି ସମୟରେ କୁମୁଦିନୀ ଘରୁ ବାହାରି ଆସି, "ଆସନ୍ତୁ, ଭିତରକୁ" କହି ତରତର ହୋଇ ଚୌକି ସଜାଡ଼ି ବସିଲେ ।

"ଯେଉଁଦିନ ତୁମେ ବସା ଠିକଣାଟା କହିଥିଲ । ମୁଁ ସେଦିନୁ ଖୋଜି ଖୋଜି ଭାବୁଥିଲି, ଏଇଟି, ମୋ ପାଖ ବସା ।" ଏହା କହି କହି ହସି ହସି ପିଣ୍ଡା ଉପରକୁ ଉଠି ଚୌକିରେ ବସିଲେ । କୁମୁଦିନୀ ତାଙ୍କର ଗୋଡ଼-ତଳେ ନଇଁ ଜୁହାର ହେଲା ।

ଦିବ୍ୟସିଂହ ବାବୁ ପଚାରିଲେ, "ନଣାମଣି କିପରି ଅଛି ? ପିଲାଟା ଭଲ ଅଛି ତ ?"

କୁମୁଦିନୀ ନମ୍ର ଭାବରେ କହିଲେ, "ହଁ ସମସ୍ତେ ଭଲ ଅଛନ୍ତି । ଲାଲ-ମୋହନ ବାବୁଙ୍କ ଖବର କଣ ? ଘର ଭିତରେ ନଣାମଣି ଯେତେବେଳେ ଶୁଣିଲା ତା ନାଁ ଧରି ଜଣେ କିଏ ପଚାରୁଛି ଓ ଲାଲମୋହନ ବାବୁଙ୍କ ଖବର ତାଙ୍କୁ କୁମୁଦିନୀ ପଚାରୁଛନ୍ତି ସେତେବେଳେ ସେ ବିଛଣାରୁ ଉଠି ପଡ଼ି ଛିଡ଼ା ହୋଇ ଗଲା । ତା ଛାତି ଥରି ଉଠିଲା । ଏହି ଥର ନିଶ୍ଚୟ ତା ସ୍ୱାମୀ-ଠାରୁ କେହି ଲୋକ ଆସିଛି । ଏହିଥର ସବୁ ଖବର ଭଲେ ଜଣାଯିବ । ଏହା ଭାବି ଆନନ୍ଦ ବିଷାଦ ଓ କୌତୁହଳ ସବୁ ମିଶି ତାକୁ ଏ ପାଖ ସେ ପାଖ କରି ଦେଲେ । ସେ ଆସି କବାଟ ପାଖରେ ଆଡ଼ ହୋଇ ଛିଡ଼ା ହୋଇ ବାହାର କଥାବାର୍ତ୍ତା ଶୁଣିଲା । ଦିବ୍ୟସିଂହ ବାବୁ ଚୌକିରୁ ଉଠି କହିଲେ, "କହିବ ସବୁ କଥା, ଆଗେ ମୁଁ ପିଲାଟିକୁ ଦେଖେ ।"

କୁମୁଦନୀ ଦିବ୍ୟସିଂହ ବାବୁଙ୍କୁ ଘର ଭିତରକୁ ନେଇ ଗଲେ । ବାଟରେ ନିଶାମଣିଙ୍କୁ ଦିବ୍ୟସିଂହ ବାବୁଙ୍କୁ ଚିହ୍ନାଇ ଦେଲେ । ଲଜ୍ଜାରେ ନିଶାମଣି ମୁଁହ ତଳକୁ କରି ଦେଲା । ପିଲାଟି ପାଖକୁ ଯାଇ ତାକୁ ହାତରେ ଉଠାଇ କୋଳରେ ବସାଇ ଦିବ୍ୟସିଂହ ବାବୁ ହସି ହସି କହିଲେ, "ତୁ ତୋ ବାପାଠୁଁ ଆହୁରି ବଡ ମଣିଷ ହେବୁ ।" ପିଲାଟି ଅଚିହ୍ନା ଲୋକର କୋଳ ନ ବାରି ପାକୁଆ ପାଟିରେ ହସିଲା, ଯେପରି ଉଠାଣିଆ ମେଘ ଥରେ ବର୍ଷା ହୋଇ ଛାଡ଼ିଗଲା ପରେ ଜହ୍ନଲିଆ ଖରା ପୁଣି ଖେଳିଯାଏ । ଶିଶୁର ହସ ଦେଖି ଦିବ୍ୟସିଂହ ବାବୁ ଭାରି ଖୁସି ହେଲେ । ତା ସହିତ କଥା ସମସ୍ତଙ୍କୁ କୌତୁକ କରି ନିଶାମଣି ଆଡ଼କୁ ଚାହିଁ କହିଲେ, "ମୁଁ ଏହାଙ୍କ ନାମ ଅନେକ ଦିନୁ ଶୁଣିଥିଲି; ମାତ୍ର କେବେ ଦେଖି ନ ଥିଲି । ଯାହା-ହେଉ ସବୁ ଭଲ ତ ?"

ନିଶାମଣି ସଙ୍କୁଚିତ ହୋଇ ଗୋଟିଏ ପାଖରେ ମୁହଁ ତଳକୁ କରି ଛିଡା ହୋଇଥାଏ । ତା ପରେ ଦିବ୍ୟସିଂହ ବାବୁ ବାହାରକୁ ଆସି କୁମୁଦନୀକୁ କହିଲେ, "ଚାଲ ମୋ ସାଙ୍ଗରେ ଧର୍ମଶାଳାକୁ ଯିବ, ମୁଁ ଏଥର ସେଇଠି ଆସି ଅଛି ।"

କୁମୁଦନୀ ଭିତରକୁ ଯାଇ ଲୁଗାପଟା ପିନ୍ଧି ନିଶାମଣିକୁ କହିଦେଇ ଦିବ୍ୟସିଂହ ବାବୁଙ୍କ ସହିତ ଧର୍ମଶାଳାକୁ ବାହାରିଲେ । ନିଶାମଣି ବ୍ୟସ୍ତ ହୋଇ ପଚାରିଲା, "କଣ ତାଙ୍କ ଖବର ?"

କୁମୁଦନୀ ତରତର ହୋଇ କହିଲେ, "କିଛି ସେ କହି ନାହାନ୍ତି । ସେଇକଥା ବୁଝିବା ପାଇଁ ଯାଉଛି ।" ନିଶାମଣି ମୁଁହ ଶୁଖାଇଦେଇ ନିଶ୍ୱାସ-ଟିଏ ମାରିଲା । କୁମୁଦନୀ ଦିବ୍ୟସିଂହ ବାବୁଙ୍କ ସାଙ୍ଗରେ ଧର୍ମଶାଳାକୁ ଗଲେ ।

ଧର୍ମଶାଳାର ଉପର ତାଲାରେ ଗୋଟିଏ କୋଣ ବଖରାରେ ଖଟିଆ ଉପରେ ଦିବ୍ୟସିଂହ ବାବୁ ବସିଲେ । ସେ ନିଜେ ଶତରଞ୍ଜି ସତରଞ୍ଜି ନିଜ ବିଛଣାରୁ ବାହାର କରି କୁମୁଦନୀ ପାଇଁ ପକାଇଦେବାକୁ ଯାଉଥିଲେ । ମାତ୍ର କୁମୁଦନୀ ତାଙ୍କୁ ବାଧାଦେଇ ନିଜେ ସତରଞ୍ଜି ପକାଇଦେଇ ବସିଯାଇ

ବ୍ୟଗ୍ରହୋଇ ପଚାରିଲେ, "କଅଣ କହନ୍ତୁ ଲାଲମୋହନ ବାବୁଙ୍କ ମୋକ-ଦ୍ଦମା ଖବର।"

ଦବ୍ୟସିଂହ ବାବୁ—"ଦେଶସେବାର ସର୍ବୋଚ୍ଚ ପୁରସ୍କାର ତାଙ୍କୁ ମିଳୁଛି। ବାସ୍ତବକ୍ ସେ ଭାଗ୍ୟବାନ।"

କୁମୁଦିନୀଙ୍କ ଧୈର୍ଯ୍ୟ ଶେଷ ସୀମାରେ। ସେ ଉଦ୍‌ଗ୍ରୀବ ହୋଇ ଚାହିଁ-ଥାଆନ୍ତି। କିଛିକ୍ଷଣ ନୀରବ ହୋଇ ଦବ୍ୟସିଂହ ବାବୁ କହିଲେ, "ତୁମେ ତାଙ୍କୁ ଭଲ ପାଉଥିଲ, ସେ ମଧ୍ୟ ତୁମକୁ ଭଲ ପାଉଥିଲେ। ଏଣୁ ତୁମେ ତାଙ୍କର ବାକି କାମତକ କରିବାକୁ ବାହାରିବା ଉଚିତ।"

କୁମୁଦିନୀ ବ୍ୟସ୍ତହୋଇପଡ଼ି କହିଲେ, "କଣହେଲା କହନ୍ତୁ।"

ଦବ୍ୟସିଂହବାବୁ—"ମୋ ଜିଭ ଲେଉଟୁ ନାହିଁ କହିବାକୁ, କାରଣ ମୁଁ ଅତି ଦୁର୍ବଳ। ମୁହଁରେ ସିନା ମୁଁ ଠାଣ ଦେଖାଉଛି, ମୋ ଭିତରଟା ଥରୁଛି।"

କୁମୁଦିନୀଙ୍କ ଉଦ୍‌ବେଗ ସ୍ଥଳକୂଳ ନ ମାନି ବଢି ଚାଲିଛି। ନିଶ୍ୱାସ ପ୍ରଖର ହୋଇ ଉଠୁଛି। ସେ ଏକଧ୍ୟାନରେ ଦବ୍ୟସିଂହ ବାବୁଙ୍କ ଓଠକୁ ଅନାଉଅଛନ୍ତି। ଦବ୍ୟସିଂହବାବୁ ତଳକୁ ମୁହଁକରି କିଛିକ୍ଷଣ ଉପରନ୍ତ କହିଲେ, "ତାଙ୍କୁ ମୃତ୍ୟୁଦଣ୍ଡ ହୋଇଛି।" ଏ ପଦକ ବାହାରିଲା ମାତ୍ରକେ କୁମୁଦିନୀ ଚିତ୍କାର କରି କହି ଉଠିଲେ, "କଣ କହିଲେ?" ତାପରେ ସେ ମୂର୍ଚ୍ଛାହୋଇ ପଡ଼ିଗଲେ। ଦବ୍ୟସିଂହବାବୁ ବ୍ୟସ୍ତହୋଇ ତାଙ୍କୁ ଉଠାଇ ମୁହଁରେ ପାଣିଛାଟି ଚେତା କରାଇ ତାଙ୍କ ମୁଣ୍ଡରେ ପଙ୍ଖା କରିବାରେ ଲାଗିଲେ। କୁମୁଦିନୀ ସଚେତନ ହୋଇ ମଧ୍ୟ ଜଳକାପରି ଚାହିଁ କିଛି କଥା କହୁ ନଥାନ୍ତି। ଦବ୍ୟସିଂହବାବୁ ତାଙ୍କୁ ନିଜ ଛାତିରେ ଆଉଜାଇ ପଙ୍ଖା କରୁ-ଛନ୍ତି। କିଛି ସମୟ ପରେ କୁମୁଦିନୀ ଆଖିରୁ ଝର ଝର ହୋଇ ଲୁହ ବାହାରିବାରେ ଲାଗିଲା। ଦବ୍ୟସିଂହବାବୁ କିଛି କହୁ ନଥାନ୍ତି, ନୀରବରେ ସେ ଅଶ୍ରୁବର୍ଷଣ ଦେଖୁଥାନ୍ତି।

"ଏହି ଖବର ଦେବାପାଇଁ ମୋତେ ଏଠିକି ଡାକି ଆଣିଥିଲେ ? ମୋର ଆଶାର ଜାହାଜ ଚୂରମାର ହୋଇ ସମୁଦ୍ରର ବାଲି ହୋଇଗଲା । ଆଉ ମୁଁ ବଞ୍ଚିବି କାହିଁକି ?"

ବିଦ୍ୟାସିଂହବାବୁ—"ଏ କଣ କୁମୁଦିନୀ ? ଏ କଣ ତୁମର ପ୍ରିୟପ୍ରତି କର୍ତ୍ତବ୍ୟ । ଦେଶ ସେବା କରି ଯାହା ଜଣେ ଲୋକ ଖୋଜି ନ ପାଏ ତା ଭିତରେ ମିଳିଗଲା । ତାଙ୍କ ପ୍ରତି ତୁମର ସ୍ନେହ ଥିଲେ ତୁମେ ଦୃଢ଼ହୁଅ, ଧୈର୍ଯ୍ୟ ଧର । ଏ କଣ ?"

ଶେଷରେ ଯେତେବେଳେ ସୁଦର୍ଶନ ଆସି ଛିଡ଼ା ହୋଇଗଲା,ସେତେବେଳେ ବିଦ୍ୟାସିଂହ ବାବୁ ଜାଣିଲେ ଯେ ବୋଧହୁଏ ଖାଇବା ପାଇଁ ଡାକିବାକୁ ଆସିଛି । ସୁଦର୍ଶନ ବିସ୍ମିତ ହୋଇ ଚାହିଁ ଦେଖିଲା ଯେ, କୁମୁଦିନୀ କାନ୍ଦି କାନ୍ଦି ଅସ୍ଥିର । ବିଦ୍ୟାସିଂହବାବୁଙ୍କ ମୁହଁ ମଧ୍ୟ ଦୁଃଖରେ ଭରା । ସେ କିଛି ନ କହି ନୀରବରେ ସବୁ ଦେଖୁଥାଏ ।

ବିଦ୍ୟାସିଂହବାବୁ ପାଟିକରି କହିଲେ, "କୁମୁଦିନୀ, ତୁମ୍ଭଙ୍କୁ ଖାଇବାକୁ ଡାକ ଆସିଛି । ଧୈର୍ଯ୍ୟଧର, ଏପରି କାହିଁକି ହେଉଛ ?" କୁମୁଦିନୀ ସୁଦର୍ଶନ ଆଡ଼କୁ ଚାହିଁ ବାହାନୀ ହେଲା, "ଆଉ କାହିଁକି ଖାଇବି ? ଆଉ ଏ ଦେହରେ କି ପ୍ରୟୋଜନ ? ଯାହାର ଏ ଦେହ ସେତ ଆଉ ନାହିଁ, ମୁଁ ଆଉ ବଞ୍ଚିବି କାହିଁକି ?"

ସୁଦର୍ଶନ ଓଡ଼ିଆ ଭଲ ବୁଝିପାରୁ ନଥାଏ । ମାତ୍ର ବିଦ୍ୟାସିଂହ ବାବୁଙ୍କ ଯାତ୍ନା ଓ କୁମୁଦିନୀଙ୍କ ବାହନାରୁ ବେଶ୍ ବୁଝିପାରିଲା ଯେ ବୋଧହୁଏ ଲାଲ୍‌ମୋହନ ବାବୁଙ୍କର କିଛି ଅନିଷ୍ଟ ଘଟିଛି । ସେ ବିଦ୍ୟାସିଂହ ବାବୁଙ୍କ ପାଖକୁ ଯାଇ ଚୁପ କରି ପଚାରିଲା, "ବାବୁଜୀ କ୍ୟା ହୁଆ ?"

ବିଦ୍ୟାସିଂହବାବୁ—"ଲାଲମୋହନ ବାବୁଙ୍କୁ ଫାସିକା ହୁକୁମ ହୁଆ ହୈ ।"

ସୁଦର୍ଶନର ମୁହଁ ହଠାତ୍ ଶୁଖିଗଲା । କାରଣ ସେ ଜାଣେ କୁମୁଦିନୀଙ୍କ ସହିତ ତାଙ୍କର ସମ୍ପର୍କ । ସୁଦର୍ଶନକୁ ସେତିକି କହିଦେଇ ବିଦ୍ୟାସିଂହ ବାବୁ ପସ୍ତେଇ ହେଲେ ଯେ ସେ କାହିଁକି କହିଲେ । କାରଣ ସେ ହୁଏତ ହଠାତ୍

ଯାଇ ସେ ଖବର ନିଶାମଣିକୁ ଦେଇ ଦେବ । ଏଣୁ ସୁଦର୍ଶନକୁ ବୁଝାଇ କହିଲେ, "ଏହା ସେଠି କହିବ ନାହିଁ, ସାବଧାନ ।"

ସୁଦର୍ଶନ-"ଜୀ, ହଜୁର୍" କହି ଏକ ପାଖିଆ ହୋଇ ଛିଡ଼ାହେଲା ।

ଦିବ୍ୟସିଂହ ବାବୁ—"ଏପରି କାହିଁକି ହେଉଛ ? ତୁମେ ବୁଝୁନାହଁ । ତୁମେ ଜଣେ କର୍ତ୍ତୃସ୍ଥାନୀୟା । ତୁମକୁ ପରା ଆଉ କେତେଜଣଙ୍କୁ ସାନ୍ତ୍ୱନା ଦେବାକୁ ହେବ । ନିଶାମଣିକୁ ଯେ ଆଣିଛ ସେ ପରା ତୁମକୁ ଚାହିଁଛି, ତୁମେ ତ ଏପରି ହେଉଛ ତାକୁ କଣ ସାନ୍ତ୍ୱନା ଦେବ ?" ଏ କଥା କୁମୁଦିନୀ ମନରେ ଧରିଲା । ନିଜର ଚିନ୍ତାକୁ ଦବାଇ ନିଶାମଣି ଚିନ୍ତା ତାଙ୍କ ମନରେ ଉଦ୍ରେକ ହେଲା । ସେ ବହୁ କଷ୍ଟରେ ନିଜକୁ ସଂଯତ କରି ଗୁମ୍ ମାରି ବସି ରହିଲେ । ଯେପରି କି ତାଙ୍କ ମନ ଭିତରେ ଏକ ଭାରି ସଂଘର୍ଷ ଚାଲିଛି, ନିଜ ପୁତ୍ର ଚିନ୍ତା ଓ ନିଶାମଣି ବିଷୟରେ ଚିନ୍ତା, ଏ ଦୁହିଁଙ୍କ ଭିତରେ ।

ଦିବ୍ୟସିଂହ ବାବୁ—"ପୁଣି ଏ ଚିନ୍ତା ବିରୋଧରେ ଅର୍ପାଳ ହେବ । ଦେଖାଯାଉ କଅଣ ହେଉଛି । ଏପରି ଅସ୍ଥିର କାହିଁକି ହେଉଛ ?" ଏପରି ଚିନ୍ତାଙ୍କିନୀ ଛଟା'ର ଭିତରେ, ଏକ କ୍ଷୀଣ ଆଶାର ରେଖା କୁମୁଦିନୀଙ୍କ ଅନ୍ଧାର ହୃଦୟରେ ଦେଖାଗଲା । ସେ ତ ଅଶା ଯୁକ୍ତିତର୍କ ବିଛି ମାନେ ନାହିଁ । ଧୀରେ ଧୀରେ କୁମୁଦିନୀ ଶାନ୍ତ ହେଲେ । ସେତେବେଳକୁ ଦିନ ଠିକ ହୋଇ ଗଲାଣି । ଖାଇବା ବେଳ ଗଡ଼ି ଗଲାଣି । କୁମୁଦିନୀକୁ ମୁହଁ ଧୋଇବା ପାଇଁ ଦିବ୍ୟସିଂହ ବାବୁ ଲୋଟାରେ ପାଣି ଦେଲେ । ମୁହଁ ଧୋଇ କୁମୁଦିନୀ ଯିବାକୁ ବାହାରିଲେ । ଦିବ୍ୟ-ସିଂହ ବାବୁ ସାଙ୍ଗରେ ଯିବାପାଇଁ ବାହାରିଲେ । ମାତ୍ର କୁମୁଦିନୀ ନିଷେଧ କରି କ୍ଷୀଣ ସ୍ୱରରେ କହିଲେ, "ଆପଣ ଥାଆନ୍ତୁ । ମୁଁ ଅଳ୍ପ ସମୟ ଭିତରେ ଆସିବି ।" କୁମୁଦିନୀ ଚାଲିଗଲା ପରେ ଦିବ୍ୟସିଂହବାବୁ ଚିନ୍ତିତ ଭାବରେ ଖଟିଆରେ ଅନେକ ସମୟ ପଡ଼ି ରହିଲେ । ସେଦିନ କିଛି ଖାଇବାକୁ ତାଙ୍କର ଆଉ ମନ ହେଲାନାହିଁ ।

କୁମୁଦିନୀ ଯେତେବେଳେ ବସାରେ ପହଞ୍ଚିଲେ ସେତେବେଳକୁ ସେ ମନକୁ ନିଜ ବାଗକୁ ଆଣି ସାରି ଥିଲେ । କାରଣ ତାଙ୍କୁ ନିଶାମଣିଙ୍କ ସମ୍ମୁଖୀନ ହେବାକୁ ହେବ । ମୁରବିମାନଙ୍କୁ ଛାଡ଼ି ପଥର କରି କେତେ ଯେ ସମ୍ଭାଳି ଚାଲିବାକୁ ହୁଏ ତା କୁମୁଦିନୀ ଅଙ୍ଗେ ନିଭାଇ ଥାଆନ୍ତି । ବସାରେ ପହଞ୍ଚି ଆଗେ ନିଶାମଣି ପ୍ରତି ବିରକ୍ତ ହେଲେ ଯେ ସେ କାହିଁକି ଖାଇ ନେଇ ନାହିଁ । ତା ପରେ ସୁଦର୍ଶନ ପ୍ରତି ବିରକ୍ତ ହେଲେ ଯେ କାହିଁକି ନିଶାମଣିଙ୍କୁ ଖାଇବାକୁ ନ ଦେଇ ସେଠାରୁ ଚାଲିଗଲା ।

ନିଶାମଣି ବ୍ୟଗ୍ର ହୋଇ ପଚାରିଲା, "କଅଣ ଖବର ? ମୋତେ ଟିକିଏ ଶୁଣାଅ ଭଲା । ମୁଁ କଅଣ କେହି ନୁହେଁ, ନା ?

କୁମୁଦିନୀ ଆଗ ଖାଇବା ପାଇଁ ଜିଦ କଲେ । ମାତ୍ର ନିଜେ ଖାଇବା ପାଇଁ ତାଙ୍କ ମନ ବଳୁ ନ ଥାଏ । ସେ କହିଲେ, "ମୁଁ ସେଠୁ ଖାଇ ଆସିଛି, ତୁମେ ଖାଇ ନିଅ । ଖାଇ ସାରିଲା ପରେ ଖବର କହିବି ।"

ନିଶାମଣି ବିରସ ହୋଇ ଖାଇବା ଘରକୁ ଗଲା । କୁମୁଦିନୀ ବାହାର ଘରେ ବିଛଣାରେ ଶୋଇ ନିଜର ଚିନ୍ତାକୁ ଦମନ କରିବାକୁ ଚେଷ୍ଟା କଲେ । ଖାଇବା ବେଳେ ସୁଦର୍ଶନ ଚୁପ୍ ଚୁପ୍ କରି କହିଲା ଯେ, କୁମୁଦିନୀ ଖାଇ ନାହାନ୍ତି ଓ ସେଠାରେ ସେ ବହୁତ କାନ୍ଦି ଥିଲେ । ନିଶାମଣି ଏ ଖବର ପାଇ ଖାଇବା ଛାଡ଼ି କୁମୁଦିନୀକୁ ଆସି ଡ଼ାକିଲା । ତୁମେ କୁଆଡ଼େ ଖାଇନାହଁ, ଆସ, ଖାଇବା ଆସ । କୁମୁଦିନୀ ଇତସ୍ତତଃ ହୋଇ ଯାଇ ସୁଦର୍ଶନ ଉପରେ ବିରକ୍ତ ହେଲେ । ନିଶାମଣି ନିତାନ୍ତ ଜିଦ କରି ପଚାରିଲେ, "କଅଣ ଖବର ମୋତେ କହିବାକୁ ହେବ । ନହେଲେ ମୁଁ ଛାଡ଼ିବି ନାହିଁ ।"

କୁମୁଦିନୀ କଅଣ କହିବେ କିଛି ବୁଝି ପାରୁ ନ ଥାନ୍ତି । ଭାବୁଥାନ୍ତି ତାକୁ କିଛି ଜଣାଇବେ ନାହିଁ । ମାତ୍ର ନ ଜଣାଇ ଶେଷରେ କରିବେ କଅଣ ? ତାଙ୍କର ସମସ୍ତ ଯୋଜନା ତ ପଣ୍ଡ ହେବାକୁ ଯାଉଛି । କେତେଦିନ ଖବର ଲୁଚେଇବେ । ବରଂ ଆଗରୁ କହି ତା ମନକୁ ବାଟକୁ ଆଣି ପାରିଲେ

ଉଲ । ନିଜର ଅବସ୍ଥା ସହ ମୋକଦ୍ଦମାର ମୂଳ ବିବରଣ ଶୁଣାଇ ଶେଷରେ ଫାସୀର ଖବର କହିଲେ । ଉଦଗ୍ରୀବ ହୋଇ ନିଶାମଣି ସବୁ ଶୁଣୁଥାଏ । ମଝିରେ ମଝିରେ ତାର ଶ୍ୱାସ ରୁଦ୍ଧ ହୋଇ ଯାଉଥାଏ । ଶେଷରେ ଯେତେ-ବେଳେ ଫାସୀର ଖବର ଶୁଣିଲା, ସେତେବେଳେ ସେ କଳନାବୁ ଆଣି ପାରିଲା ନାହିଁ ଯେ, ବ୍ୟାପାର କଣ ହେଲା ? ସେ ଜଳଜଳ ହୋଇ ଚାହିଁ ରହିଲା ।

ତାପରେ ଯାଇ ନିଜ ବିଛଣା ଉପରେ ପଡି ରହିଲା । କୁମୁଦିନୀ ଆଶ୍ୱସ୍ତ ହେଲେ ଯେ, ସେପରି ଶୋକର ଆବେଗରେ ନିଶାମଣି ବିକ୍ଷିପ୍ତ ହୋଇ ନାହିଁ । ବିଛଣାରେ କିଛି ସମୟ ପଡିରହି ତାପରେ ଉଠି ନିଶାମଣି ନିଜ ଗାଁରୁ ଯେଉଁ ଛୋଟ ବିନ୍ଧୁଆଟିଏ ଆଣିଥିଲା ତାକୁ ବାହାର କରି ନିଜ କାନ୍ଧରେ ଲାକୁ ମାଡ଼ି ପୁଣି ବିଛଣାରେ ପଡି ରହିଲା । ତା ମୁହଁରୁ ଜଣେ କିଛି ଜାଣି ପାରିବ ନାହିଁ ଯେ, ତା ମନରେ କି ଚିନ୍ତା କାମ କରୁଛି । କୁମୁଦିନୀ ନିଜ ବିଛଣାରୁ ଉଠିପଡି କହିଲେ, "ଯାହାଭାଗ୍ୟରେ ଥିବ ତା ହେବ । ବର୍ତ୍ତମାନ ଏହି ଶିଶୁଟିହିଁ ସମ୍ବଳ । ଏହାକୁ ଯତ୍ନ ନେଇ ଦୀର୍ଘଜୀବୀ କରାଇବାକୁ ହେବ ।" ନିଶାମଣି କୁମୁଦିନୀଙ୍କ ମୁହଁକୁ ଚାହିଁ ଦେଲା, ମାତ୍ର କିଛି କହିଲା ନାହିଁ ।

କୁମୁଦିନୀ ପିଣ୍ଡାରେ ଚୌକି ଉପରେ କିଛି ସମୟ ଗୁମ୍ମ ମାରି ବସି, ଭିତରକୁ ଆସି କହିଲେ, "ନିଶାମଣି ତୁମେ ଥାଅ, ମୁଁ ଦିବ୍ୟସିଂହ ବାବୁଙ୍କଠୁଁ ଆସେ । ମନ ଖରାପ କର ନାହିଁ । ଏକ ନୌକାରେ ତମେ ଓ ମୁଁ ବସିଛେ; ଯାହା ହେବ ଦୁହିଁଙ୍କର ହେବ ।"

—୩୧—

ଦିବ୍ୟସିଂହ ବାବୁ କୁମୁଦିନୀଙ୍କୁ ଅପେକ୍ଷା କରି ବସି ଅଛନ୍ତି । ତାଙ୍କୁ ମଧ୍ୟ କିଛି ବୁଦ୍ଧି ଦିଶୁ ନ ଥାଏ, କିପରି ସେ ଏ ଦୁଇଜଣ ସ୍ତ୍ରୀ ଲୋକଙ୍କୁ ସାନ୍ତ୍ୱନା ଦେବେ । ସେ ମନେ ମନେ ଭାବି ଆଶ୍ୱସ୍ତ ହେଉଥାନ୍ତି ଯେ, ଏ ପ୍ରକାର ଜଞ୍ଜାଳରୁ ସେ ନିଜେ ମୁକ୍ତ । ବାସ୍ତବିକ ପରାଧୀନ ଦେଶରେ ଦେଶସେବା କରିବାକୁ ବାହାରି ସବୁ ଦଉଡ଼ି ନ କାଟି ଦେଲେ ଚଳିବ ନାହିଁ । ଲଳମୋହନ ତ ତାହାହିଁ ବୁଝି ସବୁ ଛାଡ଼ଛୁଡ଼ି ଦେଇଥିଲେ । ପୁଣି କାହିଁକି ଏ ଅବ୍ୟାପାରରେ ପଶିଲା । ନିଶାମଣି ତାର ଘରେ ମାତ୍ର ଜାକି ହୋଇ ରହି ଯାଇଥିଲା । ପିଲାଟିକୁ ନେଇ ତାର ଘରେ କୌଣସି ପ୍ରକାରେ ଥାଆନ୍ତା । ତାକୁ ବା କାହିଁକି ପୁଣି ଅଣାହେଲା । ଏ ସବୁ ଅଡୁଆ ମେଲାଇ-ବାର କି ପ୍ରୟୋଜନ ଥିଲା । ଯଦି ଏ ଆଡ଼େ ଏତେ ମନ, ତେବେ ସେଆଡେ ବା ଏତେ ଉନ୍ମାଦନା କାହିଁକି ? ଏହି ପରି ଭାବି ଦିବ୍ୟସିଂହ ବାବୁ ଲଳମୋହନଙ୍କ ପ୍ରତି ବିରକ୍ତ ହୋଇ ଯାଉଥାନ୍ତି । ମାତ୍ର ପୁଣି ସେ ବିରକ୍ତି ପାଇଁ ଦୁଃଖିତ ହେଉଥାନ୍ତି । କାରଣ ତାର ତ ସବୁ ଶେଷ ହେଲା, ସେ ତ ଟିକେଟ୍ କାଟିଲାଣି । ଆଉ ତା କାମ ସମାଲୋଚନା କରି ଲାଭ କଣ ?

ଏହି ସମୟରେ କୁମୁଦିନୀ ଆସି ପହଞ୍ଚିଲେ । ମୁହଁ ସେହିପରି ଶୁଖିଲା ଖାଇ ନ ଥିବାରୁ ଆହୁରି ମଧ୍ୟ ଟିକିଏ ଶୁଖିଲା ଦେଖାଯାଉଛି । ଦିବ୍ୟସିଂହ ବାବୁ ସ୍ନେହଭରେ ବସିବା ପାଇଁ କହିଲେ ।

କୁମୁଦିନୀ—"ସେତେବେଳେ ଯେ ଅପିଲ କଥା କହୁଥିଲେ ତାର କି ବ୍ୟବସ୍ଥା ହେଉଛି ?"

ଦିବ୍ୟସିଂହ ବାବୁ—"ହଁ, ହେଉଛି । ମାତ୍ର… ।" କୁମୁଦିନୀ ବ୍ୟସ୍ତ ହୋଇ ଅନାଇଥାନ୍ତି, କଅଣ ପୁଣି କହିବେ ।

କୁମୁଦିନୀ—"ଆଉ ଅସୁବିଧା କଣ ?"

ଦିବ୍ୟସିଂହ ବାବୁ ମୁହଁ ତଳକୁ କରି କହିଲେ, "ତୁମେ ତ ଏତେ ବ୍ୟସ୍ତ ହୋଇ ପଡୁଛ, ତୁମକୁ ମୁଁ କଅଣ କହିବି କିଛି ବୁଝି ପାରୁନାହିଁ । ତୁମେ କହୁଥିଲ ଦୁଃଖୀ ସେବା ପାଇଁ ତୁମେ ବାହାରିଛ; ମାତ୍ର ଏତେ ନରମ ହୃଦୟରେ ତୁମେ ତ କିଛି କରିପାରିବ ନାହିଁ । କେତେ ଝଡ଼ ତୋଫାନ ସହିବାକୁ ହେବ । କେତେ ଢେଉ ଏ ଲୁହା ଛାତିରେ ଆସି ବାଜିବ । ବର୍ତ୍ତମାନ ଏହି ଯେଉଁ ସମସ୍ୟା ଉପସ୍ଥିତ ହୋଇଛି, ଏଥିରେ କର୍ତ୍ତବ୍ୟ ନିର୍ଣ୍ଣୟ କରିବାକୁ ହେଲେ ଖୁବ୍ ଦମ୍ ରଖିବାକୁ ହେବ । ଧୀର ଭାବରେ ଚିନ୍ତା କରିବା ପାଇଁ ଚେଷ୍ଟା କର । ତା'ଛଡ଼ା ଯେ ସେବକ ବା ସେବିକା ହେବାକୁ ଯିବ, ସେ ମମତାକୁ ଏତେ ଦୂରକୁ ନେବା ଠିକ୍ ନୁହେଁ । ମୁଁ ଦାର୍ଶନିକ ହିସାବରେ କହୁନାହିଁ, ଜଣେ ସାଧାରଣ ଲୋକ ହିସାବରେ ବିଚାର କରି କହୁଛି । ପରାଧୀନ ଦେଶରେ ଦେଶ ସେବା ଅର୍ଥ ଯେ କୌଣସି ସମୟରେ ଜେଲ ବା ଫାଶୀ । ସେତିକିକୁ ମଇଦାଣ୍ଡି କରି ଗୃହଆଡ଼କୁ ଯେ ଯେତିକି ପାରିବ ପ୍ରସାର କରିବ । ଆଜି ସକାଳେ ତୁମେ ଯେପରି ହେଲ ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଅବଶ୍ୟ ତୁମ ମନ ମୁଁ ବୁଝୁଛି । ମାତ୍ର ନିଜକୁ ନିଜେ ସମ୍ଭାଳିବାର ଉଦ୍ୟମ ସୁଦ୍ଧା ତୁମେ ଠିକେ କରି ପାରୁନାହିଁ । ଏ ତ ଏକ ଦୂଷଣ ଅଯୋଗ୍ୟତା ।" ଏତିକି କହି ନୀରବ ରହିଲେ ।

କୁମୁଦିନୀ ଲଜ୍ଜିତ ହୋଇ କହିଲେ, "ଦୁର୍ବଳ ମୋ ମନ, କାହିଁକି ଏତେ ଦୁର୍ବଳ ଆପଣ ଜାଣନ୍ତି ନାହିଁ । ଏ ଛାତି ଏକ ସମୟରେ ପାଷାଣଠାରୁ ଅଧିକ କର୍କଶ ହୋଇଥିଲା, ଲୁହାଠାରୁ ଆହୁରି କଠିନ ହୋଇଥିଲା । କୁ କି ବେଳରେ ଲକ୍ଷ୍ମୀଧର ବାବୁଙ୍କ ସହିତ ମୋର ଦେଖା ହୋଇଗଲା, ଆଉଟି ହେଲା ପରେ ମୋର ସେ କଠିନ ହୃଦୟ ତରଳି ଗଲା । ଏତେ ତରଳ ଯେ, ମୁଁ ନିଜେ ତାକୁ ସମ୍ଭାଳି ପାରୁନାହିଁ ।"

ଦବ୍ୟସିଂହବାବୁ—"ଆଶ୍ରମ ଜୀବନ ଅର୍ଥ ଏ ସବୁ ମମତାକୁ ଯେତେ କମାଇ ଦିଆ ଯାଇପାରେ, ତେତେ କମାଇ ଦେବା । ତୁମେ ଭାବି ଦେଖ, ନାନା ପ୍ରକାର ମମତା ଗୃହଅଟେ ମେଲ୍ଲିଇ ଉତ୍ସାହ ସହକାରେ ଜଣେ ପରାଧୀନ ଦେଶର ସ୍ୱାଧୀନତା ସଙ୍ଗେ କାମ କରି ପାରିବ କି ? ତେଣୁ ମୁଁ ତୁମକୁ କହୁଥିଲି ଚାଲ ଆଶ୍ରମରେ ରହିବ । ସେଠି ଯେ ବେଶୀ କିଛି ଅଛି, ତାହା ନୁହେଁ । ଆଶ୍ରମରେ ରହିବା ଅର୍ଥ ଏ ସବୁ ଝନ୍‌ଝଟରୁ ନିଜକୁ ଦୂରରେ ରଖିବା ।"

କୁମୁଦିନୀ—"ମୁଁ ଇଚ୍ଛା କରେ, ବା ନ କରେ ମୋର ଆଶ୍ରମ ହିଁ ଶେଷ ଆଶ୍ରୟ, ମୁଁ ଭାବି ଦେଖୁଛି । କିନ୍ତୁ ମୋତେ ଆପଣ ଆଶ୍ରମକୁ ନେବେ କି ?"

ଦବ୍ୟସିଂହ ବାବୁ—"କାହିଁକି ନୁହେଁ, ମୁଁ ତ ଅନେକ ଦିନୁ ସେ କଥା କହୁଛି ।"

କୁମୁଦିନୀ—"ମୋର ପୂର୍ବ ଇତିହାସ ଆପଣ ଜାଣିଲେ, ମୋତେ ଆପଣ ଘୃଣା କରିବେ । ପାଖରେ ବସାଇ ଦେବେ ନାହିଁ ।"

ଦବ୍ୟସିଂହ ବାବୁ—"କଅଣ ତୁମର ଏପରି ପୂର୍ବ ଇତିହାସ ଯେ, ବାରବାର ସେ କଥା ଦେଖାଇ ଦେଉଛ ଅଥଚ କହୁନାହିଁ ।"

କୁମୁଦିନୀ—"ମୁଁ ଆଜି ମନକୁ ଦୃଢ଼ କରି ଆସିଛି, ଆପଣଙ୍କୁ ସେ କଥା କହିବା ପାଇଁ । ଆଶାର ଆଲୁଅରେ ମୁଁ ଅନ୍ଧାର ବାଟରେ ଚାଲୁଥିଲି, ସେ ଆଲୁଅ ନିଭି ଯାଇଛି । ଆଉ ମୋର ଜୀବନରେ ଅଛି କଅଣ ?" ଏତିକି କହୁ କହୁ କୁମୁଦିନୀଙ୍କ କଣ୍ଠ ରୁଦ୍ଧ ହୋଇ ଆସିଲା । ସେ ଲୁଗାକାନି ମୁହଁରେ ଦେଇ କାନ୍ଦିବାରେ ଲାଗିଲେ ।

ଦବ୍ୟସିଂହ ବାବୁ ବିରକ୍ତ ହୋଇ କହିଲେ, "ଏତେ କାନ୍ଦୁଛ କାହିଁକି ? ବାସ୍ତବିକ ମୋତେ ତାହା ସହ୍ୟ ହେଉ ନାହିଁ । ନିଜକୁ ଟିକିଏ ସଂଯତ କରି ପାରୁ ନାହଁ ।"

"କଅଣ ତୁମ କଥା ?—ନିଶ୍ଚିତ ଜାଣ ଯେ, ତୁମ ପ୍ରତି ମୋର କେବେ ଖରାପ ଧାରଣା ହେବ ନାହିଁ । କେତେ ସ୍ନେହରେ ତୁମକୁ ଆଶ୍ରମକୁ ଡାକୁଛି, ତୁମେ ଜାଣିପାରୁ ନାହଁ ।"

●

କୁମୁଦନୀ ଲଜ୍ଜେଇ କରି ଦରବାଂଶିହ ବାବୁଙ୍କ ଆଡ଼କୁ ଚାହିଁଲେ । ଦରବାଂସିହବାବୁ ମଧ୍ୟ ସ୍ନେହଭରେ ତାଙ୍କ ମୂର୍ତ୍ତିକୁ ଚାହିଁ ରହିଥିଲେ । କୁମୁଦନୀ ଧୀରେ ଧୀରେ କହିଲେ, "ମୋର ଘର ଭଦ୍ରଖ ଠାରୁ ବାର ମାଇଲ ଦୂରରେ ନାଳଙ୍ଗ ଗାଁରେ । ମୋ ବାପା ଜଣେ ବଡ଼ ଜ୍ୟୋତିଷ ଥିଲେ । ସେ ଅଞ୍ଚଳର ସମସ୍ତେ ତାଙ୍କୁ ଭରି ମାନୁ ଥିଲେ । ସମସ୍ତେ ତାଙ୍କଠିଁ ଜାତକ ଦେଖାଉ ଥିଲେ । ପୂଜା ପାର୍ବଣରେ ସବୁଠି ତାଙ୍କର ପ୍ରଥମ ଆସନ । ମୁଁ ଥିଲି ତାଙ୍କର ଏକମାତ୍ର କନ୍ୟା । ମୋର ଜାତକ ସାଧି ପିଲାଦିନେ ମୋତେ କହିଥିଲେ, ତୁ ମୋ ନାଁ ରଖିବୁ । ତୋ ଦ୍ୱାରା ମହତକର୍ମ ସାଧିତ ହେବ । ସେ ମୋତେ ଘରେ କିଛି ପାଠ ପଢ଼ାଇ ଥିଲେ ଓ ମୋତେ ଏତେ ସ୍ନେହରେ ବଢ଼ାଇ ଥିଲେ ଯେ, ଦୁଃଖ ବୋଲି କଅଣ ମୁଁ ପିଲାଦିନେ ଜାଣି ନ ଥିଲି । ମୋର ବୟସ ଯେତେବେଳେ ୯ ବର୍ଷ, ସେତେବେଳେ ମୋତେ ବାହା ଦେଇ ଜୋଇଁଟିଏ ଆଣି ଘରେ ରଖି ତାକୁ ପୁଅପରି ଲାଳନପାଳନ କରି ଶେଷରେ ତାକୁହିଁ ଉତ୍ତରାଧିକାରୀ ରଖି ଯିବେ ବୋଲି ସେ ସ୍ଥିର କଲେ । ପନ୍ଦର ବର୍ଷର ଜଣେ ଯୁବକ, ତାଙ୍କର ଜାତକ ମୋ ଜାତକ ମିଳାଇ ବାବା ଜାଣିଲେ ଯେ, ଏପରି ଜୋଡ଼ିକ କମ୍ ଲୋକଙ୍କ ଭାଗ୍ୟରେ ଜୁଟେ । ତେଣୁ ଆମର ବିଭା କରାଇ ଦେଲେ । ମୋର ଯେତେବେଳେ ତେର ବର୍ଷ ବୟସ, ସେତେବେଳେ ଆମ ଗାଁରେ ହଇଜା ଲାଗିଲା । ସେହି ସମୟରେ ମୁଁ ବିଧବା ହେଲି । ସେତେବେଳେ ମୋ ବାପାଙ୍କ ବୟସ ବାଉନ । ମାଆ ତ ମୋର ପିଲାଦିନୁ ଚାଲିଯାଇଥିଲେ । ବାପାଙ୍କ ଦୁଃଖ ସେତେବେଳେ କାରି ମୁଁ କହିବି କଅଣ । କାନ୍ଦି କାନ୍ଦି ସେ ପ୍ରାଣତ୍ୟାଗ କଲେ । କନ୍ୟାର ବୈଧବ୍ୟ ଓ ଉତ୍ତରାଧିକାରୀର ଅକାଳ ବିୟୋଗ ତ ତାଙ୍କୁ ଖୁବ୍ ବାଧିଥିଲା ।

ଘରେ ମୁଁ ଏକା, ଯୁବତୀ । ବାପା ବଞ୍ଚିଥିବା ବେଳେ ଯେଉଁ ଜମିବାଡ଼ି ଆମର ଥିଲା ସେ ସବୁ ଜମିଦାରଙ୍କ ସୁବେହବତ କାଟିବ୍ ଜମି । ନିଜର ଖୁଦ୍ ଅଳପ ଜମି ଥିଲା । ମୋର ହାତ କାମନା କରି ସେଥିପାଇଁ ବାପା ଜଣେ ଉତ୍ତରାଧିକାରୀ ରଖିବାକୁ ସ୍ଥିର କରିଥିଲେ । କାରଣ ସେ ଜମିଦାରଙ୍କ କାମ ଚଳେଇବ ଓ ଜମି ଭୋଗ ଦଖଲ କରିବ । ମାତ୍ର ତା ତ ହେଲା ନାହିଁ । ବାପା ମରିଯିବା ପରେ ପରେ ଜମିଦାର ସେ ଜାଗିର ଜମି ଛଡ଼ାଇ ନେଲେ । ଶେଷରେ ମୁଁ ପଥର ବିକାଳୁଣୀ ହୋଇଗଲି । ଏହି ସମୟରେ ମୁଁ ଗର୍ଭବତୀ ବୋଲି ଗାଁ ଲୋକେ ଜାଣିଲେ । ମୋର ସ୍ୱାମୀଙ୍କ ପରଲୋକ ପରେ ମୁଁ ଋତୁ ସ୍ନାନ ନ କରୁଥିଲେ ମଧ୍ୟ ମୋର ଧାରଣା ନ ଥିଲା ଯେ, ମୁଁ ମାତା ହେବାକୁ ଯାଉଛି । ୭।୮ ମାସ ପରେ ଗାଁ ଲୋକେ କୁହାକୁହି ହେଲେ ଯେ, ମୁଁ ଭ୍ରଷ୍ଟା ହୋଇ ଯାଇଛି । କିଏ କହିବ ସେ ଲଜ୍ଜାର କାହାଣୀ, ସେ ଅପମାନ, ବର୍ତ୍ତମାନ ସୁଦ୍ଧା ଭାବିଲେ ମୋ ଦେହ ରାଗରେ ଜଳି ଯାଉଛି । ମନ ହେଉଛି ଭାଙ୍ଗି ଚୂରି ଏ ସମାଜକୁ ସମୁଦ୍ର ଗର୍ଭରେ ଫୋପାଡ଼ି ଦିଅନ୍ତି ।"

କୁମୁଦିନୀର ମୁହଁ ଆରକ୍ତ ହୋଇଗଲା । ନିଶ୍ୱାସ ପ୍ରଖର ହୋଇ ଉଠିଲା । ସେ ଆଉ କିଛି କହି ପାରିଲେ ନାହିଁ । ଉତ୍ତେଜିତ ହୋଇ ଗୃହଆଡ଼କୁ ଗୃହିଁଲେ ।

ଦରୋଗା ହରିବାବୁ କୋର୍ଟରେ ସାକ୍ଷୀକୁ ଜବାବ ବନ୍ଦ କରାଇଲାଭଳି କହିଲେ । "ହଁ ତେଣିକି କହ । ମୁଁ ଜାଣେ ଗାଁରେ ଏହିପରି କେତେ ମିଥ୍ୟା ଜନରବ ଉଠନ୍ତି । ଅଳସୁଆ ଲୋକେ, କାମ କିଛି ନାହିଁ—ସେୟା କରି ଦିଅନ୍ତି । ହଁ ତେଣିକି କଅଣ ହେଲା ?"

କୁମୁଦିନୀ ଉତ୍ତେଜିତ ଭାବରେ କହିଲେ, "ଏତେ ନୀଚ ଲୋକ ସେମାନେ, ମୋତେ ନେଇ ଜମିଦାର କଚେରୀରେ ପହଞ୍ଚାଇଲେ । ପୋଲିସରେ ଖବର ଦେଲେ । ସମସ୍ତଙ୍କ ମୁହଁରେ ମୁଁ ଜଣେ ଭ୍ରଷ୍ଟା ଓ ବିଧବା ଅବସ୍ଥାରେ ଅବୈଧ ପ୍ରଣୟ ଯୋଗେ ଗର୍ଭବତୀ ହୋଇଛି ।

ସେ ସମୟରେ ମୋ ମନ ହେଉଥାଏ, ବିଷ ଖାଇ ମୁଁ ମରି ଯାଆନ୍ତି । କିନ୍ତୁ କେଜାଣେ କାହିଁକି ମୋ ମନ ଡାକୁଥାଏ, ମୋ ଶିଶୁଟିର ମୁହଁ ମୁଁ ଦେଖନ୍ତି । ଶେଷରେ ପ୍ରସବ ବେଦନା ଯେତେବେଳେ ଅନୁଭବ କଲି, ସେତେବେଳେ ଘରେ କେହି ନାହାନ୍ତି । ମୋତେ ଏପରି ବାସନ୍ଦ କରି ଥାଆନ୍ତି ଯେ, ମୋ ଦୁଆରକୁ କେହି ଆସିବେ ନାହିଁ । ବାପାଙ୍କ ଅନ୍ତେ ଘରେ ଯେତକ ଯାହା ଥିଲା, ସେଇଥିରେ ମୁଁ ଯଥାକଥା ଚଳୁଥିଲି । ମାତ୍ର ଗାଁ ବାଲା ଲଗାଇ ଥାଆନ୍ତି, ଯେତକ ଜମି ଜଗର ଥିଲା ସେତକ କବଲା କରିଦେଲେ ମୋତେ ଚଳାଇବେ । ମୁଁ ରାଜି ହେଲି ନାହିଁ । ଶେଷରେ ନାଁ ପାଣି ଅଟକ ମୋତେ କଲେ । ଅତି ଗହିର ପ୍ରସବ ବେଦନା ପରେ ମୁଁ ବେହୋସ ହୋଇଗଲି । ଘରେ ପଡ଼ିଛି, କେହି ପାଖରେ ନାହାନ୍ତି । ଯେତେବେଳେ ହୋସ ହେଲା, ସେତେବେଳେ ଶୁଣିଲି ଶିଶୁଟିର କ୍ରନ୍ଦନ । କଅଣ କରିବି ! ସେତିକିବେଳେ ମୋର ଜଣେ ପଡ଼ୋଶୀକୁ କହିଲି ଯେ, ମୋ ଦେହ ଭଲ ହୋଇଗଲେ ମୁଁ ଜମି କବଲା କରିଦେବି । ଏଣିକି ମୋତେ ଚଳାନ୍ତୁ । ଏ ଖବର ପାଇ ଗାଁର ଯେ ମାମଲତକାର ସେ ଆସି ମୋଠାରୁ ଧୂଇ ଟିପ ଖଣ୍ଡ କାଗଜରେ ଟିପଚିହ୍ନ ନେଇ ନେଲେ । ତା'ପରେ ମୋ ଉପରୁ ବାସନ୍ଦ ଉଠିଗଲା । ସେ ଶିଶୁଟିର ଫୁଲ ପାଖୁଡ଼ା ପରି ହସ ହସ ମୁହଁ ମୋର ବର୍ତ୍ତମାନ ଶୁଖିଲା ଆଖିରେ ନାଚି ଯାଉଛି । ମାତ୍ର ମୋର ଭାଗ୍ୟ ଖରାପ । ୭।୮ ଦିନ ପରେ ସେ ଶିଶୁଟି ମଧ୍ୟ ବିଦାୟ ନେଲା ! ଯାହାପାଇଁ ଏତେ ଲଜ୍ଜା, ଏତେ ଅପମାନ ସହି, ମୁଁ ଜୀବନ ଧରିଥିଲି, ସେ ଯେତେବେଳେ ମୋତେ ଛାଡ଼ି ଚାଲିଗଲା, ମୋର ଆଉ କୌଣସି ବିଷୟରେ ମମତା ରହିଲା ନାହିଁ । ଏଣେ ଗାଁ ବାଲା ବରାବର ମୋ ସାଙ୍ଗରେ ଲଗାଇ ଥାଆନ୍ତି, ତେଣେ ଘରେ ମଧ୍ୟ ଆଉ କିଛି ଖାଇବାର ନ ଥାଏ ।

ମୁଁ ଜୀବନ ମୁଣ୍ଡିଆ ଘର ଛାଡ଼ି ଦିନେ ରାତିରେ ଉଠି ପଳାଇଲି । ସେତେବେଳେ ମୁଁ ପାଗଳୀ । କେଉଁଠିକି ଯିବି ବା କଅଣ କରିବି କିଛି ଭାବି ନ ଥାଏ । ଯେତେବେଳେ ଭଦ୍ରଖରେ ପହଞ୍ଚିଲି ସେତେବେଳେ

ଜଣେ ପ୍ରୌଢ଼ା ସ୍ତ୍ରୀ ଲୋକ ମୋତେ ଦେଖି ଅତି ସ୍ନେହଭରେ ପଚାରିଲେ, 'କଲେ ଝିଅ, କୁଆଡ଼େ ଯାଉଛୁ ?' ଦୁଃଖର ମରୁଭୂମି ଭିତରେ ଏ ସ୍ନେହ ଡାକ ପଦକ ମୋତେ ଏତେ ସନ୍ତୋଷ ଦେଇଥିଲା ଯେ, ସେତେ-ବେଳର ମୋ ମନର ଭାବ ବର୍ତ୍ତମାନ ସୁଦ୍ଧା ମନେ ପଡ଼ୁଛି । ସେହି ସ୍ତ୍ରୀ ଲୋକଟି ମୋତେ ଆଶ୍ରୟ ଦେବ ବୋଲି ଆଶ୍ୱାସନା ଦେଇ ସାଙ୍ଗରେ ନେଇଗଲା । ତାଙ୍କ ଘରେ ପ୍ରାୟ ମାସେ ଖଣ୍ଡେ ରହିଛି । ସେ ହେଉଛି ଏକ ବେଶ୍ୟା ନିବାସ । ସେଠା କାରବାର ସବୁ ମୁଁ ଦେଖୁଥାଏ । ମୋତେ ଘୃଣା ବୋଧ ହେଉଥାଏ । ମାତ୍ର ମୋ ପ୍ରତି କିଛି ଆଞ୍ଚ ଆସି ନ ଥାଏ ।

ଦିନେ ରାତିରେ ମୁଁ ଶୋଇଛି ସେ ସ୍ତ୍ରୀ ଲୋକ ମୋତେ ଆସି ରାତି ଅଧରେ ଉଠାଇଲା । ମୁଁ ଉଠି ବସିଲି ନିଦ ଅଳସରେ, ସେ କଅଣ କହିଲା, ମୁଁ ବୁଝି ପାରିଲି ନାହିଁ । ତା' ପରେ ଯେତେବେଳେ ମୋର ପୂର୍ଣ୍ଣ ଜ୍ଞାନ ହେଲା, ସେତେବେଳେ ମୁଁ ଜାଣିଲି ଯେ ଜଣେ ରସିକ ଆସିଛନ୍ତି, ମୋତେ ଉପଭୋଗ କରିବା ପାଇଁ । ମୁଁ କିଛି ବୁଝି ପାରିଲି ନାହିଁ । ମୁଁ ଖୁବ୍ ଜୋରରେ 'ନା' କହିଲି । ମାତ୍ର ସେ ସ୍ତ୍ରୀ ଲୋକଟି ମୋତେ କହିଲା, "ତୁ ଚୁପ୍ ହୋଇ ରହ । ମୁଁ ତାକୁ ଡାକି ଆଣୁଛି । ସେ ସୁନାର ଗହଣା ଦେବ, ପାଟଶାଢ଼ୀ ଦେବ ।" ମୁଁ ସେତେବେଳେ ଜଡ଼ଭ୍ରାନ୍ତ, ମୂକ ହୋଇ ବସି-ଥାଏ । ଇତିମଧ୍ୟରେ ସେ ପୁରୁଷ ଆସି ଘରେ ଛିଡ଼ା ହୋଇଗଲେ । ମୋ ସହିତ ନାନାପ୍ରକାର ପ୍ରେମର ବ୍ୟବହାର କଲେ । ମୁଁ ଜାକି ଜୁକି ହୋଇ ମୁହଁ ତଳକୁ କରି ଦୃଢ଼ ଭାବେ ବସିଥାଏ । ଶେଷରେ ବିରକ୍ତ ହୋଇ ସେ ଚାଲିଗଲେ । ତା ପରେ ସେ ସ୍ତ୍ରୀ ଲୋକଟି ଆସି ମୋତେ ଅତି ଅସଭ୍ୟ ଭାଷାରେ ଗାଳିଦେଇ ମାଡ ଦେଲା । ମୁଁ ସେହି ରାତିରେ ସେଠୁ ପୁଣି ପଳାଇଲି । କୁଆଡ଼େ ଯିବି କିଛି ଠିକ୍ ନାହିଁ । ଶେଷରେ ଭଦ୍ରଖ ରେଳ ଷ୍ଟେସନରେ ପହଞ୍ଚି ଦେଖିଲି କଲିକତା ଆଡ଼କୁ ଯେଉଁ ଗାଡ଼ି ଯାଏ ସେଇଟା ଛିଡ଼ା ହୋଇଛି । ସେତେବେଳେ ଏ ସବୁ କିଛି ମୁଁ ଜାଣି ନ ଥାଏ । ମୁଁ ଯାଇ ଗୋଟିଏ ଡବାରେ ଯେଉଁଠି ଖାଲି ସ୍ତ୍ରୀଲୋକ ବସିଥାଆନ୍ତି ସେଇଠି ବସିଲି ।

ମନେ ମନେ ଭାବୁଥାଏ—ଏ ଗାଡ଼ିରୁ ବାହାରିଗଲେ ମୋତେ ଖାଦ୍ୟ ମିଳିବ । ଯେଉଁଠି ହେଲେ ରେଳ ଉତ୍ତର ଦେଲେ ଦେଖିବା ଦେଖାଯିବ । ଏହି ଯେ ଟିକିଏ ଦମ୍ଭ ମୋ ମନରେ ଥିଲା, ସେହି ମୋତେ ଆଜିଯାଏ ରକ୍ଷା କରିଛି । ତା' ପରେ ରେଳ ଯେଉଁଠି ଉତ୍ତର ଦେଲା, ସେ ହେଉଛି ହାୱଡ଼ା ଷ୍ଟେସନ—କଲିକତା ।

ମୁଁ ଗୃହଆଡ଼କୁ ଗୃହ ଦେଇ ଅବାକ୍ ହୋଇଗଲି । ଗୋଟିଏ ପାଦ ଆଗକୁ ଯିବାକୁ ମୋର ସାହସ ହେଉ ନ ଥାଏ । ମୁଁ ଜଡ଼ ପରି ଛିଡ଼ା ହୋଇ-ଥାଏ । ଜଣେ ଭଦ୍ରଲୋକ ମୋତେ କଅଣ କହିଲେ, ମୁଁ କିଛି ବୁଝି ପାରିଲି ନାହିଁ । ତା'ପରେ ସେ ମୋତେ ସଙ୍କେତ କରି ଡାକିଲେ, ମୁଁ ଯନ୍ତ୍ର ପରି ତାଙ୍କ ପଛେ ପଛେ ଗଲି । ତାପରେ ସେ ମୋତେ ଗାଡ଼ିରେ ବସାଇ ଦେଇ ଗଲେ ।

କଲିକତା ସହର ଦେଖି ମୋର ବୁଦ୍ଧି ଶୂନ୍ୟ ହୋଇଗଲା । ମୋ ମୁଣ୍ଡ ଭିତରେ କିଛି ଚିନ୍ତା କରିବାର ଶକ୍ତି ଥାଏ କି ନା ମୋତେ ଜଣାଯାଉ ନ ଥାଏ । ମୋତେ ଯେଉଁଠାରେ ଭଦ୍ରଲୋକ ନେଇ ପହଞ୍ଚାଇ ଦେଲେ, ସେ ହେଉଛି ଏକ ଅବଳାଶ୍ରମ । ଏ ଆଶ୍ରମର ସ୍ୱେଚ୍ଛାସେବକମାନେ ଷ୍ଟେସନକୁ ଯାଇ ଅନାଥା ସ୍ତ୍ରୀ ଲୋକମାନଙ୍କୁ, ଯେଉଁମାନଙ୍କୁ ଦୁଷ୍ଟଲୋକ ଶିଖାଇ ନେଇ ଆସିଥାନ୍ତି, ସେମାନଙ୍କୁ ଖୋଜି ନେଇ ଆସନ୍ତି । ଏହି ଅବଳାଶ୍ରମରେ ଜଣେ ହିନ୍ଦୁସ୍ଥାନୀ ଅଧ୍ୟକ୍ଷା ଥିଲେ । କିଛିଦିନ ପରେ ସେ ମତ ପ୍ରକାଶ କଲେ ଯେ, ମୋର ପାଠଶାଠ ହେବ । ତେଣୁ ମୋତେ ନିୟମିତ ରୂପେ ପାଠ ପଢ଼ାଇବା ପାଇଁ ବ୍ୟବସ୍ଥା କରାଗଲା । ଆଠବର୍ଷ କାଳ ମୁଁ ସେହି ଆଶ୍ରମରେ ରହିଲି । ସେଇଠି ଏ ଜୀବନରେ ଯାହା କିଛି ଶିଖିଲି । ତା' ପରେ ମୋର କି ଗୁଣ ଦେଖିଲେ କେଜାଣି, ଅବଳାଶ୍ରମର କର୍ତ୍ତାମାନେ ସୁପାରିଶ କଲେ ଯେ, ମୁଁ କଲିକତାରେ ଶ୍ରମିକମାନଙ୍କ ଭିତରେ ନାରୀ ଜାଗରଣ ସମ୍ପର୍କରେ କାମ କରିବ ଓ କଲିକତାରେ ଯେଉଁ ନାରୀ ବ୍ୟବସାୟ ଚାଲିଛି ତା ବିରୋଧରେ ଆନ୍ଦୋଳନ ଚଳାଇବ । ଗଳି ଗଳି ବୁଲି ମୁଁ ଉତ୍ସାହ ସହ-

କାରେ କାମ କରୁଛ । ମୋ କାମରେ ଆର୍ଯ୍ୟ ସମାଜ ଯାହାଙ୍କଦ୍ୱାରା ମୁଁ ନିଯୁକ୍ତ, ସେମାନେ ମୋ ଉପରେ ସନ୍ତୁଷ୍ଟ ଥିଲେ ।

ଏହି ସମୟରେ ଲାଲମୋହନ ବାବୁ କଲିକତାରେ ଶ୍ରମିକମାନଙ୍କ ଭିତରେ କାମ କରିବାକୁ ଗଲେ । ଥରେ ସେଠାରେ ଏକ ବଡ଼ ସଭା ହୋଇଥାଏ । ସେଠାରେ ଲାଲମୋହନ ବାବୁ ବକ୍ତୃତା ଦେଉଥାନ୍ତି । ମୁଁ ଜଣେ ହିନ୍ଦୁସ୍ଥାନୀ ରମଣୀ ହିସାବରେ ସେଠି ବସିଥାଏ । ତାଙ୍କର ବକ୍ତୃତା ଯେପରି ମୋର ହୃଦୟର ପ୍ରତ୍ୟେକ ଶିରାକୁ ସ୍ପର୍ଶ କରୁଥାଏ । ସେ ବକ୍ତୃତା ଦେଇ ସାରିଲା ପରେ ମୁଁ ନାରୀ ଜାଗରଣ ସମ୍ବନ୍ଧରେ କିଛି କହିବା ପାଇଁ ଉଠିଲି ।

ମୁଁ ହିନ୍ଦୁସ୍ଥାନୀରେ ବକ୍ତୃତା ଦେଲି । ଅଧିକାଂଶ ଶ୍ରୋତା ଓଡ଼ିଆ ଥିଲେ ମଧ୍ୟ ମୋର ବକ୍ତୃତାର ପ୍ରଭାବ ସେମାନଙ୍କ ଉପରେ ପଡ଼ୁଥିବାର ମୁଁ ଲକ୍ଷ୍ୟ କରୁଥାଏ ।

ସେଇଠି ଲାଲମୋହନ ବାବୁଙ୍କ ସହିତ ମୋର ପରିଚୟ । ସେ ବାରମ୍ବାର ମୋ ବସାକୁ ଆସିଲେ । ଧୀରେ ଧୀରେ ତାଙ୍କ ସହିତ ମୋ ପ୍ରଣୟ ଏପରି ଘନୀଭୂତ ହୋଇଗଲା ଯେ, ମୁଁ କାର୍ଯ୍ୟର ଛଳନା କରି ପୁରୀରେ ଆସି ପହଞ୍ଚିଲି । ଦାମ୍ପତ୍ୟ ସୁଖର ଯେ କ୍ଷୁଦ୍ର ଅଙ୍କୁରଟି ମାଟିଭେଦ କରି ସୁକୋମଳ ଶିଶୁ ଆକାରରେ ଦେଖା ଦେଇଥିଲା, ତାହା ଦୁର୍ଭାଗ୍ୟର ମରୁଡ଼ିରେ ଜଳି ପୋଡ଼ି କୁଆଡ଼େ ଉଭେଇ ଯାଇଥିଲା । ମନ ଅନ୍ୟଆଡ଼େ ଗତି କରୁଥିଲା; ମାତ୍ର ଲାଲମୋହନଙ୍କ ସମ୍ପର୍କ ହିଁ ପୁଣି ସେ ଶୁଖିଲା ମାଟିରେ ପାଣି ବର୍ଷା କଲା । ଯେଉଁଠି ସେ ଶୁଖିଲା ଅଙ୍କୁର ଲୁଚି ରହିଥିଲା ସେ ପୁଣି ମୁଣ୍ଡ ଟେକି ଧୀରେ ଧୀରେ ବଢ଼ିବାରେ ଲାଗିଲା । କ୍ଷୁଦ୍ର ଅଙ୍କୁରଟି ବଡ଼ଗଛ ଡାଳ ପତ୍ର ମେଲାଇ କେତେ ଚଢ଼େଇଙ୍କର ବାସସ୍ଥଳ ହେବ, ସେ ଚଢ଼େଇ କେତେ ରକମର ସ୍ୱରରେ କେତେ ରକମର ଗାନ ଗାଇବେ । ମୁଁ ସେହି ମଧୁର ସଙ୍ଗୀତର କଳ୍ପନାରେ ବିଭୋର । ଏଣେ ସେ ଅଙ୍କୁରଟିର ମୂଳ ଉପୁଡ଼ି

ଗଲଣି । ଏହି ମୋ ଜୀବନ—କଳଙ୍କରେ ଚର୍ଚ୍ଚିତ, ନିରାଶାରେ ଆଚ୍ଛାଦିତ । ଏଣିକି ଆପଣ ମୋତେ ପାଖରେ ବସାଇବାପାଇଁ ସ୍ନେହରେ କଥା କହିବା ପାଇଁ ସଙ୍କୋଚ ବୋଧ କରିବେ ନାହିଁ କି ? ମୁଁ ଯଦି ଉତ୍କଳ ଯାଏ, ସେଠି ମୁଁ ମୁହଁ ଦେଖାଇ ପାରିବି କି ? ସେଠି ମୋତେ 'ଏ' ବୋଲି କହି ଆଙ୍ଗୁଳି ଦେଖାଇଲେ ମୋ ମୁହଁଟି ଜଳିଯିବ ।

ଲଲମୋହନ ବାବୁ କେଲେ—ମୁଁ ତାଙ୍କ ପଛେ ପଛେ କୌଣସି ପ୍ରକାରେ ଯାଇ ପାରିଲେ ହୁଏତ, ବୁଝିହେଁଯାକ ପୁଣି ନୂଆ କରି ଜୀବନ ଆରମ୍ଭ କରନ୍ତି । ପୁରୁଣାକୁ ଧୋଇ ପୋଛି ସାଫ୍ କରି ଉଜ୍ଜ୍ୱଳ ନୂତନ କିଛି ଉପଭୋଗ କରନ୍ତି । କିନ୍ତୁ କାହିଁ ? ଏ ଜୀବନ ତ ଯିବାଭଳି ଦେଖାଯାଉ ନାହିଁ ।"

ଦିବ୍ୟସିଂହ ବାବୁ ଉତ୍ସୁକ ହୋଇ ନୀରବ ଭାବରେ ସବୁ ଶୁଣୁଥିଲେ । ସେ ବାଧା ଦେଇ କହିଲେ, "ତୁମର ଜୀବନ ବାସ୍ତବିକ ଏକ ଉପନ୍ୟାସ । ମୁଁ ତ ଏଥିରେ ଲଜ୍ଜାର କୌଣସି ସଙ୍କେତ ପାଉ ନାହିଁ । ବର୍ତ୍ତମାନ ଶାନ୍ତ ହୁଅ । ଯେଉଁ ଜୀବନଟିକି ପାଇଛ, ସେ ଟିକିକର ସଦୁପଯୋଗ କର । ତା ପରେ ଆପଣା ଛଏଁ ସେ ଯେତେବେଳେ ଯିବ ସେତେବେଳେ ଆନନ୍ଦ ହିଁ ସଙ୍ଗେ ନେଇଯିବ । ନିରାଶାକୁ ପ୍ରଶ୍ରୟ ଦେଲେ ତାର ଅନ୍ତ ନାହିଁ—ଅସ୍ଥିର ହୋଇ ପଡ଼ିବ । ତୁମର ବାପା କହୁଥିଲେ, ତୁମେ ଖୁବ କୀର୍ତ୍ତି ଅର୍ଜନ କରିବ । କିଏ ଜାଣେ, ଏତେ ଘାତ ପ୍ରତିଘାତ ପରେ ତୁମର ଜୀବନ ଏପରି ଉଦାର ହୋଇଯିବ ଯେ, ତୁମ ଦ୍ୱାରା ମହତ୍ କାର୍ଯ୍ୟମାନ ସାଧିତ ହୋଇ ପାରିବ ।"

ଏହି ସମୟରେ ହଠାତ୍ ସୁଦର୍ଶନ ଖବର ଦେଲା ଯେ, ନିଶାମଣିଙ୍କ ଅବସ୍ଥା ଅତି ସାଙ୍ଘାତିକ । ଡରି ଡରି ହୋଇ କୁମୁଦିନୀ ଓ ଦିବ୍ୟସିଂହ ବାବୁ ଦୁହେଁ ଉଠିଲେ ।

ନିଶାମଣି ବେହୋସ ହୋଇ ପଡ଼ିଛି, କଅଣ ହୋଇଛି କିଛି ଜଣା-
ପଡ଼ୁ ନାହିଁ । ପାଖରେ ପିଲାଟି କାନ୍ଦୁଛି । କୁମୁଦିନୀ ଓ ଦିବ୍ୟସିଂହ ବାବୁ
ପହଞ୍ଚି ଯାଇ ହଠାତ୍ ଡାକ୍ତରଙ୍କୁ ଖବର ଦେଲେ । ଦିବ୍ୟସିଂହ ବାବୁ ନାଡ଼ି
ଦେଖି ମୁଣ୍ଡ ହଲାଇ ସଂକେତ ଦେଲେ ଯେ, ଅବସ୍ଥା ଭଲ ନୁହେଁ । କୁମୁଦିନୀ
ମୁହଁରେ ପାଣି ଛାଟି ବିଞ୍ଚିବାରେ ଲାଗିଲେ । ମାତ୍ର କ୍ରମଶଃ ନିଶ୍ୱାସ ଧିମେଇ
ଆସୁଛି । ମୁହଁରୁ ନାଳ ବୋହି ଯାଉଛି, ଆଖି ବୁଜି ହୋଇ ଯାଉଛି ।
ଡାକ୍ତର ଆସି ପରୀକ୍ଷା କରି ଦେଖି କହିଲେ ଯେ, କୌଣସି ପ୍ରକାର ବିଷାକ୍ତ
ଜିନିଷ ସେ ଖାଇଛି । ପାକସ୍ଥଳୀ ସାଫ୍ କରିବା ପାଇଁ ଜଳ ପ୍ରୟୋଗ କଲେ ।
ବହୁ କଷ୍ଟରେ ବାନ୍ତି ହୋଇ ଅଳ୍ପ କିଛି ବାହାରକୁ ବାହାରି ପଡ଼ିଲା ।
ଡାକ୍ତର ମୁଣ୍ଡ ହଲାଇ ବିରସ ହୋଇ କହିଲେ, "ସେ ଶଙ୍ଖୁଆ ଖାଇ
ଦେଇଛି । ତାର ପ୍ରତିକାର କିଛି ଦିଶୁ ନାହିଁ ।" କୁମୁଦିନୀ ଡର ଡର
ହୋଇ ତକିଆ ତଳେ ହାତ ବୁଲାଇ ଦେଖିଲେ ଯେ, ଛୋଟ ବଟୁଆଟିଏ
ପଡ଼ିଛି । ଯାହାକୁ ନେଇ ସେ ପାଖରେ ରଖୁଥିଲା, ସେ ଦେଖି ପୃଲେ । ବଟୁଆରେ
ଶଙ୍ଖୁଆ ଆହୁରି କିଛି ରହିଛି । କୁମୁଦିନୀଙ୍କ ମନେ ପଡ଼ିଗଲା ଥରେ ନିଶାମଣି
କଥା ପ୍ରସଙ୍ଗରେ କହିଥିଲା ଯେ, ଘରେ ସବୁବେଳେ ବିଷ ତା ପାଖରେ
ରଖିଥାଏ । କାରଣ ତାର ତ କେହି ସାହା ନାହାନ୍ତି । ଯେତେବେଳେ
ଜୀବନକୁ ବାଧିବ ବିଷ ଖାଇ ଦେବ । ସେତେବେଳେ କୁମୁଦିନୀ ଏ କଥାକୁ
ତେତେ ଗୁରୁତ୍ୱ ଦେଇ ନ ଥିଲେ । ବର୍ତ୍ତମାନ ଏ ଘଟଣାରେ ସେ ଅତି
ବ୍ୟସ୍ତ ହୋଇ ଡାକ୍ତରଙ୍କୁ ପଚାରିଲେ, "କିଛି ଆଶା ଅଛି କି ନାହିଁ ?"

ଡାକ୍ତର ମୁଣ୍ଡ ହଲାଇ କହିଲେ, "ଘଣ୍ଟାକ ଆଗରୁ ଜଣାଇଥିଲେ କିଛି କରି-ଯାଇ ପାରିଥାନ୍ତା, ବର୍ତ୍ତମାନ ତ ହୃତ୍ ଯନ୍ତ୍ର ଅଚଳ ହୋଇ ଗଲଣି ।"

ଦିବ୍ୟସିଂହ ବାବୁ ଅବାକ୍ ହୋଇ ବସିଥାନ୍ତି । କୁମୁଦିନୀ ମଧ୍ୟ ସ୍ତବ୍‌ଧ। ଡାକ୍ତର କିଛି ସମୟ ରହି ବିଦା ହୋଇଗଲେ । ସେ ଯେପରି ଚିକିତ୍ସା କରିବା ପାଇଁ କହିଥିଲେ, ସେହିପରି କିଛି ସମୟ ଚାଲିଲା । ଶେଷରେ ନଣା-ମଣିର ଗୋଡ ହାତ ସବୁ ଥଣ୍ଡା ହୋଇଗଲା ।

କୁମୁଦିନୀ ହାତ ବୁଲଉ ବୁଲଉ ଦେହ ସମୁଦାୟ ଶୀତଳ ହୋଇଗଲା । ତଥାପି କୁମୁଦିନୀଙ୍କ ମନ ମାନୁ ନ ଥାଏ ଯେ, ନଣାମଣି ମରିଗଲଣି । ଦିବ୍ୟସିଂହ ବାବୁ ଦେହରେ ହାତ ମାରି କହିଲେ, "ଏତ ମୃତ । କୁମୁଦିନୀ ସେହି ଶବ ଉପରେ ମୁଣ୍ଡ ଥୋଇ କାନ୍ଦିବାରେ ଲାଗିଲେ । ଦିବ୍ୟସିଂହ ବାବୁ ଅପେକ୍ଷା ନ କରି ପୋଲିସରେ ଖବର ଦେଲେ । ପୋଲିସ କର୍ମଚାରୀ ଜଣେ ଆସି ସନ୍ତୁଷ୍ଟ ହୋଇଗଲେ ଯେ, ନଣାମଣି ଆତ୍ମହତ୍ୟା କରିଛନ୍ତି ଓ ପୋଡ଼ି-ଦେବା ପାଇଁ ଅନୁମତି ଦେଇଗଲେ ।

ଦିବ୍ୟସିଂହ ବାବୁ ଶବ ସତ୍କାର କରିବା ପାଇଁ ବାହାରକୁ ଯିବା ପୂର୍ବରୁ କୁମୁଦିନୀକୁ କହିଲେ, "ସବୁ କଥା ଭୁଲିଯାଅ, ତୁମେ ଏ ପିଲାଟିକୁ ଅଲଗା ଶୁଆଇ ତାର ତତ୍ତ୍ୱବୁଝ । ଅତି କଠିନ ପରୀକ୍ଷା ସମୟ ଏ । ଅଧିକ ଆଉ କଅଣ କହିବ । ପିଲାଟିକୁ ରଖିବାର ଭାର ତୁମ ଉପରେ । ନ ହେଲେ ସେ ତା ମା ସାଙ୍ଗ ଧରିବ ।" କୁମୁଦିନୀ ଏ ପଦକ ଶୁଣି ଚମକି ଉଠି ପିଲାଟି ଆଡ଼କୁ ଅନାଇଲେ । ସେ କାନ୍ଦି କାନ୍ଦି ଥକି ପଡି ଟିକିଏ ନିଦେଇ ଯାଇଛି । ପ୍ରଶାନ୍ତ ସେ ଶିଶୁର ବଦନ ମଣ୍ଡଳ । କୌଣସି ପ୍ରକାର ଉଦ୍‌ବେଗ ରେଖା ତା କପାଳରେ ନାହିଁ । କି ସ୍ୱପ୍ନ ଦେଖୁଛି କେଜାଣେ ମଝିରେ ମଝିରେ ବିଜୁଳି ପରି ଆନନ୍ଦର ରେଖା ତା ମୁହଁରେ ଖେଳିଯାଉଛି । କୁମୁଦିନୀ ବହୁ-ସମୟ ସେ ପିଲାଟି ମୁହଁକୁ ଅନାଇ ରହିଲେ । ଶିଶୁକୁ ଦେଖି ସିନା ଲୋକ ଦେବତ୍ୱର କଳ୍ପନା କରି ପାରନ୍ତି ! ଆଶାର ତୋଫାନ ସେଠି ପହଞ୍ଚି ପାରେ

ନାହିଁକି ନିର୍ଗାର ମର୍ଯ୍ୟାଦା ତାକୁ ବିଚଳିତ କରେ ନାହିଁ । ବାପ ଫାଶୀ ପାଇବାକୁ ଯାଉଛି । ମା ଗଲାଣି ଆଗରୁ ବାଟରୁ, ପାଛୋଟି ନେବା ପାଇଁ । ଏ ଶିଶୁର କି ସମ୍ପର୍କ ଅଛି ବାପ ମାଙ୍କ ସହିତ । ଏ ତ ସେହି ବିଶୁଦ୍ଧ ଆନନ୍ଦ ସହିତ ନିଜକୁ ଜଡ଼ାଇ ରଖିଛି । ମାୟାର ଶକ୍ତି ନାହିଁ ଏହାକୁ ସ୍ପର୍ଶ କରିବାକୁ । ଧୀରେ ଧୀରେ କାଳହିଁ ଏ ପବିତ୍ର ବସ୍ତୁକୁ ସେ ଆନନ୍ଦରୁ ଟାଣି ଆଣି ତାକୁ ଏ ଧୂଳି କାଦୁଅରେ ଗଡ଼ାଇବ । ସେତେବେଳେ ସେ ମନେ କରିବ କି ଅବସ୍ଥାରେ ତାର ବାପ ମଲା । ତାପରି ତା ମା ଆତ୍ମହତ୍ୟା କଲା । ସେତେବେଳେ ସେ ମନେ କରିବ ତା'ର ପାଳିକା ଥିଲା ଜଣେ ଗୃହତ୍ୟାଗିନୀ, ଅପମାନିତା ଲାଞ୍ଛିତା ସ୍ତ୍ରୀ ଲୋକ । କେହି ତାକୁ ସେତେବେଳେ କହିବେ କି ଯେ, ସେ ସ୍ତ୍ରୀ ଲୋକ ତା ବାପର ପ୍ରଣୟିନୀ ଥିଲା । ସୁବିଧା ଘଟିଥିଲେ ହୁଏତ ବିଧି ଅନୁସାରେ ସହଧର୍ମିଣୀ ହୋଇଥାନ୍ତା ଏକଥା ଜାଣିଲେ ହୁଏ ତ ଶିଶୁର ମନରେ ମୋ ପ୍ରତି ମାଆ ଭାବ ଆସନ୍ତା । ହୁଏତ ମୋତେ ମା, ମା, ବୋଲି ଡାକନ୍ତା । ସେଇଟି ତ ମୋ ଜୀବନ ସାର୍ଥକ ହୋଇ ଯାଆନ୍ତା । ହଠାତ୍ ଉଠିଯାଇ ଅତି ସ୍ନେହରେ ନିଦ୍ରିତ ଶିଶୁର କପାଳରେ କୁମୁଦିନୀ ଗୋଟିଏ ଚୁମ୍ବ ଦେଇ ନିଜର ଚିନ୍ତା ସମାପ୍ତ କଲେ । ପିଲାଟିକୁ ଉଠାଇ ନେଇ ଅଲଗା ବିଛଣା କରି ଶୁଆଇଲେ ।

ଦର୍ପସିଂହ ବାବୁ ସମସ୍ତ ବନ୍ଦୋବସ୍ତ କରି ଆସି ଶବକୁ ସ୍ୱେଚ୍ଛାସେବକଙ୍କ ଦ୍ୱାରା ଉଠାଇ ନେଇ ଚାଲିଗଲେ । ସୁଦର୍ଶନ ମଧ୍ୟ ସାଙ୍ଗରେ ଗଲା । ଘରେ କେହି ନାହାନ୍ତି । ଏକାକିନୀ କୁମୁଦିନୀ ଶିଶୁ ପାଖରେ ବସିଥାନ୍ତି । ମିଞ୍ଜି ମିଞ୍ଜି ହୋଇ ଆଲୁଅ ଜଳୁଛି ।

ନିର୍ଜ୍ଜନତାର ସୁବିଧା ନେଇ ସମୁଦାୟ ଜୀବନର କାହାଣୀ ଚଳଚ୍ଚିତ୍ର ପରି ତାଙ୍କ ଆଗରେ ଅଭିନୀତ ହୋଇପାଉଛି । କେତେ ବ୍ୟସ୍ତ ହୋଇ ଲାଲମୋହନ ବାବୁଙ୍କ ଜୀବନରେ ଟିକିଏ ସରସତା ଖୋଜୁଥିଲେ । ଅଭାଗା ସେ, ତାଙ୍କୁ ତା ମିଳିଲା ନାହିଁ । କେତେ ବ୍ୟସ୍ତ ହୋଇ ନିଶାମଣି ଜୀବନରେ ଟିକିଏ ଆନନ୍ଦ ପାଇବ ବୋଲି ଗୃହ ବସିଥିଲା । ଅଭାଗିନୀ ସେ, ତା ହୃଦୟରେ

ମଧ୍ୟ ତା ଜୁଟିଲା ନାହିଁ । କେତେ ବ୍ୟସ୍ତ ହୋଇ କୁମୁଦିନୀ ନିଜେ ଜୀବନକୁ ଉପଭୋଗ କରିବା ପାଇଁ ବାହାରି ଥିଲେ । ଅଭାଗିନୀ ସେ, ତାର ଭାଗ୍ୟ ଚିରକାଳ ବନ୍ଦ । ବାକି ରହିଛି ସେ ଶିଶୁଟି । ଏକଣ ସେପରି ଅଭାଗା ? ସୁଖ ସୁଖ ବୋଲି ଗୃହିଁ ଗୃହିଁ ଏକଣ ସେପରି ଦୁଃଖରେ ନିଜକୁ ରତ କରିବ ? ନା, ତା କଦାପି ହେବ ନାହିଁ । ଜୀବନ ଦେଇ ଏ ଶିଶୁକୁ ଲାଳନ ପାଳନ କରିବାକୁ ହେବ । ତା'ର ଜୀବନ ସୁଖମୟ କରିବାକୁ ହେବ । ଏ ଶିଶୁ ଭାଗ୍ୟବାନ୍ ହେଲେ, ଏହାର ସୁଖ ପ୍ରେତ ଲୋକରେ ସୁଦ୍ଧା ପିତାମାତାଙ୍କୁ ସନ୍ତୋଷ ଦେବ । ଆଉ ତାର ପାଳକା ମାଆ ଅବଶ୍ୟ ଆନନ୍ଦ ପାଇବ, ଏଥିରେ ସନ୍ଦେହ ନାହିଁ । ଏପରି ଭାବି ଭାବି କୁମୁଦିନୀ ନିଜ ମନକୁ ଏପରି ଡାଆଣି କରି ଆସୁଥାନ୍ତି ଯେ, ତାଙ୍କ ନିଜ ଜୀବନର ସୁଖର ପ୍ରୟାସ ସମାପ୍ତ ହେଲା । ଏଣିକି ତାଙ୍କର ଏକମାତ୍ର ସୁଖ ହେଉଚି, ଏହି ଶିଶୁର ସୁଖରେ ।

ଏ ସବୁ ଭିତରେ ତାଙ୍କ ନିଜ ଜୀବନ ବୃତ୍ତାନ୍ତ ଯାହା ଦିବ୍ୟସିଂହ-ବାବୁଙ୍କୁ ଶୁଣାଉ ଥିଲେ, ସେ ମଧ୍ୟ ଜ୍ୱଳନ୍ତ ଭାବରେ ତାଙ୍କ ଆଖି ଆଗରେ ନାଚି ଯାଉଥାଏ । ନିଜ ପିତାର ମୃତ୍ୟୁ, ନିଜ ସ୍ୱାମୀର ମୃତ୍ୟୁ, ତା ପରେ ନିଜ ସନ୍ତାନର ମୃତ୍ୟୁ, କେତେ ଠେଉ ଖାଇ ଖାଇ ସେ କେଉଁଠି ପହଞ୍ଚିଲେଣି ? ବରଂ ଭଲ ଥିଲା କଲିକତାରେ ଅବଳାଶ୍ରମରେ, ସେ ଯେତେବେଳେ ମନ୍ତ୍ର ଦୃଢ଼ କରିଥିଲେ ଯେ, ଜୀବନ ବ୍ୟାପୀ ପତିତା ନାରୀଙ୍କ ସେବା କରିବେ । ସେଇଥିରେ ମନ ମାରି ରହି ଯାଇଥିଲେ, ଏ ଉଠାଣି ଗଡାଣିରେ ପଡ଼ିବାକୁ ହୋଇ ନ ଥାନ୍ତା । ପୁଣି ସେ ଅବସ୍ଥାକୁ ଫେରିଯିବା ମଧ୍ୟ ଅସମ୍ଭବ ମନେ କରୁଥାନ୍ତି । ମନର ସେ ପ୍ରକାର ଦୃଢ଼ତା ଆଉ ନାହିଁ । ଏଣିକି ଯା କିଛି, ତାଙ୍କୁ ଏ ଶିଶୁକୁ କେନ୍ଦ୍ର କରି କରିବାକୁ ହେବ । ଲାଲମୋହନ ବାବୁଙ୍କ-ଠାରୁ ସେ ଶିଶୁଟିଏ ଆଶା କରୁଥିଲେ, ଏହି ଶିଶୁଟିକୁ ସେ ଜାଣି ଦେଇଛନ୍ତି । ଏଥିରେ ସନ୍ତୁଷ୍ଟ ହୋଇ ଜୀବନରେ ଯାହା କିଛି ତାଙ୍କୁ କରିବାକୁ ହେବ ।

ମାତ୍ର ଲାଲମୋହନ ବାବୁଙ୍କ ରକ୍ଷା ପାଇବାର କଅଣ କିଛି ଉପାୟ ନାହିଁ ? ଦିବ୍ୟସିଂହ ବାବୁ ଯେ ଅପିଲ କଥା କହୁଥିଲେ, ସେ କଅଣ

ହେଲା ? ଯଦି ଅପିଲରେ ଖଲାସ ହୋଇ ଯାଆନ୍ତି ବା କେତେବର୍ଷ ଜେଲ
ମାତ୍ର ହୁଏ, ତା ପରେ ସେ ଯେତେବେଳେ ଖଲାସ ହୋଇ ଆସିବେ—
ସେତେବେଳେ ସେ ମୃତଦାର ଆଉ ଗୋଟିଏ ସ୍ତ୍ରୀ ବିବାହ କରିବାର ପ୍ରଶ୍ନ
ନ ଥିବ । ସେଣିକି ଆଉ କୁମୁଦିନୀ ଭାବି ପାରୁ ନ ଥାନ୍ତି । ତାଙ୍କ ଦେହ
ଶିହରି ଉଠୁଥାଏ । ହଠାତ୍ ଅନ୍ଧାରରୁ ଆସି ଉଜ୍ଜ୍ୱଳ ଆଲୁଅକୁ ଚାହିଁ
ଦେଲେ ଯେପରି ଆଖି ସହି ପାରେ ନାହିଁ, ସେହିପରି ତାଙ୍କ ମନ ସେ
କଳ୍ପନାକୁ ଧରି ପାରୁ ନ ଥାଏ ।

ପିଲାଟି ମଝିରେ କାନ୍ଦିବାରୁ ତାକୁ ଉଠାଇ ସାମ୍ନାରେ ଦୁଧ
ପିଆଇଲେ । ଶିଶୁ ପୁଣି ତାର ନିଶ୍ଚିନ୍ତ ନିଦ୍ରାରେ ନିଦ୍ରିତ ହେଲା । ମାତ୍ର
ନାନା ପ୍ରକାର ଚିନ୍ତାରେ କୁମୁଦିନୀ ରାତିଯାକ ବସି ବସି କଟାଇଲେ ।
ଶେଷରେ ସିନ୍ଦୁର ଫାଟିବାକୁ ଅଳ୍ପ ସମୟ ଥାଏ, ଦିବ୍ୟସିଂହ ବାବୁ ଆସି
ଦୁଆରେ ଡାକିଲେ ।

ଦିବ୍ୟସିଂହ ବାବୁଙ୍କ ପାଟି ବାଉ ଡରବର ହୋଇ ଦୁଆର ଫିଟାଇ
ଚାହିଁ ଦେବା ମାତ୍ରକେ ତାଙ୍କ ମୁହଁରୁ ହଠାତ୍ ବାହାରି ପଡ଼ିଲା, "ନୀଳମଣିକୁ
ମୋର ପାଉଁଶ କରି ଦେଇ ଆସିଲେ—ହଁ, ସେ ଆଉ ସତେ, ନାହିଁ ।
ତା ପୁଅଟିକୁ ଛୁଆ ସେ ପାଶୋରି ଦେଇ ଚାଲିଗଲା ।" ଏତିକି କହୁ କହୁ
ନହ ଝର ଝିର ରୋହିଗଲା । ଦିବ୍ୟସିଂହ ବାବୁ ମଧ୍ୟ କାନ୍ଦ କାନ୍ଦ ହୋଇ
ଚଲେ । "ମୁଁ ଯାଉଛି ମୋ ନିତ୍ୟକର୍ମ ସାରି ପୁଣି ଆସିବି ।"—ଏତିକି
କହିଦେଇ ଚାଲିଗଲେ ।

ପ୍ରତ୍ୟେକ ମନୁଷ୍ୟର ଜୀବନକୁ ଠିକ ଜାଣି କରି ଆଲୋଚନା କଲେ ଦେଖାଯିବ ଯେ, କେତେ ଧକ୍କା ସେ ଖାଉଛି ଓ ତାର ମନୋରଥ କେତେଥର ଭାଙ୍ଗି ଚୁରମାର ହୋଇ ଯାଉଛି । କେତେଥର ସେ ନିରାଶାରେ ମନେ କରୁଛି ଯେ, ଆଉ ତାର ଜୀବନରେ କୌଣସି ପ୍ରୟୋଜନ ନାହିଁ । ତଥାପି ସେ ଗଢ଼ୁଛି ନୂତନ ଆଶାରେ ପୁରୁଣା ଦୁଃଖକୁ ଭୁଲିଯାଇ । ଏଇଟି ମନୁଷ୍ୟର ପ୍ରଧାନ ସହାନୁ ସମନ୍ଧୁ । ଯାହାକୁ ଦାର୍ଶନିକମାନେ ବସ୍ତୁତଃ କିଛି ନୁହେଁ ବୋଲି ଯୁକ୍ତି ଛଳରେ କହିଥାନ୍ତି । ଦିନପରେ ଦିନ ବହି ଯାଉଛି—ଠିକ୍ ନଈ ବହିଗଲା ପରି । କେତେ ଘଟନାର ବାଲୁକା ରାଶି ଯେ, ସେଥିରେ ଅଜଣା ଭାବରେ ଭାସି ଯାଉଛି, ଭାବିଲେ ବିସ୍ମିତ ହେବାକୁ ହୁଏ । ଯେ ଦୁଃଖ ଏକ ସମୟରେ ମନୁଷ୍ୟ ହୃଦୟକୁ ଦଳମଳ ଛାରଖାର କରି ଦେଇଥିଲା, ସେହି ଦୁଃଖ କାଳର ପ୍ରବାହରେ ଧୀରେ ଧୀରେ ଅଳ୍ପ ଅଳ୍ପ ଅପସରି ଯାଇ ଯେତେବେଳେ କେବଳ ଅତୀତର ସ୍ମୃତି ହିସାବରେ ରହିଯାଏ, ସେତେବେଳେ ମନୁଷ୍ୟ ପୁଣି, ଦମ୍ଭ ଧରି ଚିତ୍କାର କରେ—'ଭୁଲିଯାଅ ଅତୀତକୁ'—ତାପରେ ଭବିଷ୍ୟତ ଚିନ୍ତାରେ ନିମଜ୍ଜିତ ହୋଇଥାଏ । ଏପରି ଯଦି ନ ହେଉଥାନ୍ତା, ତେବେ ମନୁଷ୍ୟ ଜୀବନ ଧରି ରହିବାର ଯୋଗ୍ୟ ହୋଇ ନ ଥାନ୍ତା । ଜୀବନ ସାଙ୍ଗେ ସାଙ୍ଗେ ଦୁଃଖର ଯେପରି ସୃଷ୍ଟି, ସେପରି ସେ ଦୁଃଖକୁ ଧୀରେ ଧୀରେ ଭୁଲିଯିବାର ମଧ୍ୟ ବନ୍ଦୋବସ୍ତ ଅଛି । ସେଥିପାଇଁ ଜୀବନରେ ଯେତେ ଆଘାତ ପାଇ ମଧ୍ୟ ଭୂମ୍ଭଦଶା ସେହି ଶିଶୁଟି ନିଜକୁ ଅଜାଡ଼ି ଦେଇ, ପୁରୁଣା ସନ୍ତାପ ସବୁକୁ ଭୁଲିଯିବା ପାଇଁ ଅଣ୍ଟା ଭିଡ଼ି ବାହାରିଛନ୍ତି ।

ଶିଶୁର ମନ କଥା ବୁଝୁଛି କିଏ ? କିଣ୍ଟୁକୁ ସେ ମାଆକୁ ଦେଖିବାକୁ ନ ପାଇଁ ତା ମନ ଘାଣ୍ଟି ଗୋଳେଇ ହେଉଛି । ଛନ ଛନ ହୋଇ ଏଣେ ତେଣେ ଅନାଉଛି । ମଝିରେ ମଝିରେ କାନ୍ଦ ଉଠୁଛି । ସେହି କାନ୍ଦଣା ଛଡ଼ା ଆଉ ତା'ର କିଛି ଭାଷା ନାହିଁ । ସେ ଭାଷା ବା ବୁଝୁଛି କିଏ ? କାନ୍ଦ ଉଠିବା ମାତ୍ରକେ ବୃନ୍ଦାବନ ହାତରେ ଧରି ଝୁଲାଉଛନ୍ତି ବା କାନ୍ଧରେ ପକାଇ ବୁଲାଉଛନ୍ତି, ଖାମୁକାରେ ଦୁଧ ଦେଉଛନ୍ତି, ଖେଳଣା ଆଣି ତା ଆଗରେ ଧରୁଛନ୍ତି ବା କେତେବେଳେ ବାହାରକୁ ନେଇ ଜହ୍ନମାମୁଁକୁ ଦେଖାଉ-ଛନ୍ତି । ମାତ୍ର ଶିଶୁ ଏ ସବୁ ପ୍ରବଞ୍ଚନା ବୁଝୁଥାଏ । ଯେତେବେଳେ କୌଣସି ପ୍ରକାରେ ତା କାନ୍ଦଣା ବନ୍ଦ ନ ହୁଏ, ସେତେବେଳେ ବୃନ୍ଦାବନ ବୁଝି ପାରନ୍ତି ଯେ, ସେ ମାଆକୁ ଖୋଜୁଛି । ଆଖି ଢୁକୁ ଢୁକୁ କରି ପିଲାଟି ଆଡ଼କୁ ଅନାଇଁ ତା ମୁହଁ ପାଖରେ ମୁହଁକୁ ଲଗାଇ କହନ୍ତି, "ତୋ ମା ଯାଇଛି ମାମୁଁଘରକୁ । ଏହି ଦେଖ ତୋ ମାମୁଁ ତୋତେ ଉପରୁ ଅନାଇ ରହିଛି ।" ଏହା କହି, ଜହ୍ନକୁ ହାତ ବଢ଼ାଇ ଦେଖାନ୍ତି । ପିଲାର କାନ୍ଦଣା ଠିକେ ବନ୍ଦ ହୋଇପାଏ । ବୋଧହୁଏ ସେ ଭାବେ ଯେ, ସତେ ତାର ମା, ସେଆଡ଼େ କୁଆଡ଼େ ଯାଇଛି । ଯେତେ ସେ ଆଦରୁଛି , ତେତେ ବୃନ୍ଦାବନର ସୁଖ ।

ତେଣେ ଲାଲମୋହନ ବାବୁଙ୍କ ମକଦ୍ଦମା ଅପିଲ କରିବା କଥା ହେଲା ନାହିଁ । କାରଣ ବଡ଼ ବଡ଼ ଓକିଲମାନେ ମତ ଦେଲେ ଯେ, ଅପିଲ କରିବାରେ କିଛି ନାହିଁ, ତଥାପି ଫାଶୀ ପରିବର୍ତ୍ତରେ ଜାବଜ୍ଜୀବନ କାରାବାସ କରାଇବା ପାଇଁ ଚେଷ୍ଟା କରାଯାଇ ପାରେ । ମାତ୍ର ଲାଲମୋହନ ଅପିଲ କରିବା ପାଇଁ ଦୃଢ଼ ଭାବରେ ମନା କଲେ । ତାଙ୍କ ଠାକୁ ଏହି ସମ୍ପର୍କରେ ଦେଖା କରିବାକୁ ଓକିଲ ଯିବାରୁ ସେ କହିଲେ, "କେତେ ଲୋକ ଗୁଳି ଖାଇ ମରିଗଲେ । ମୁଁ ଯଦି ସେହିପରି ମରି ଯାଇ ଥାନ୍ତି ସେଥିରେ ତ ଆଉ ଅପିଲ ନ ଥାନ୍ତା । ସେହିପରି ଧରି ନିଅ, ମୁଁ ମରି-ଯାଇଛି । ମୋତେ କାହିଁକି ମୃତ୍ୟୁ ବଡ଼ ସୁଖକର ବୋଧ ହେଉଛି । ମୋର ମନ ହେଉଛି, ବହୁଲୋକ ଇଚ୍ଛା କରି ନ ମଲେ ଏ ଦେଶରେ କିଛି ହେବ ନାହିଁ । ଅବଶ୍ୟ ଯେ ଅବସ୍ଥାରେ ମୁଁ ମରିବାକୁ ଯାଉଛି, ତାକୁ

ଶୁଣ ସ୍ୱେଚ୍ଛା ମରଣ କୁହା ଯାଇ ନ ପାରେ । ମାତ୍ର ଯେତେକ ମୋ ହାତରେ ଅଛି !—ଅର୍ଥାତ୍ ଏ ଅପୀଲ ମୁଁ ନ'କର ମୃତ୍ୟୁର ସମ୍ମୁଖୀନ ହେବି—ସେତକ କୃତିତ୍ୱ ମୋର ଥାଉ ।" ଓକିଲ ନିରାଶ ହୋଇ ଫେରି ଆସିଲେ । ତା ପରେ ଲଲମୋହନ ବାବୁଙ୍କ ଜୀବନ ସମ୍ପର୍କରେ ଆଉ କୌଣସି ପ୍ରକାର ଆଶା କାହାରି ରହିଲା ନାହିଁ ।

କୁମୁଦିନୀଙ୍କ ଏକାନ୍ତ ଇଚ୍ଛା ଯେ, ସେ ଥରେ ଲଲମୋହନ ବାବୁଙ୍କୁ ଅନ୍ତିମ ସାକ୍ଷାତ କରିବେ । କିନ୍ତୁ ସେ ଜାଣି ପାରୁ ନ ଥାନ୍ତି ଯେ, ଲଲମୋହନ ବାବୁ କିପରି ଅବସ୍ଥାରେ ଥିବେ । ମୃତ୍ୟୁ ଯେତେବେଳେ ସିଧା ଆଗରେ ଛିଡ଼ା ହୋଇଛି, ସେତେବେଳେ ତାଙ୍କ ମନରେ କି ଚିନ୍ତା ଅତି ପ୍ରବଳ ଥିବ, କିଏ ଜାଣେ ? ହୁଏତ ସେ ମୃତ୍ୟୁକୁ ଭେଟିବା ପାଇଁ ଯେତେ ପ୍ରକାର ମାୟା ମମତା ସବୁକୁ ବଳତ୍କାରରେ ପାଶୋରି ପକାଇ ମନକୁ ତିଆରି କରୁଥିବେ ।

ଏ ଅବସ୍ଥାରେ ତାଙ୍କୁ ସାକ୍ଷାତ୍ କରିବାର ଅର୍ଥ ହେବ, ତାଙ୍କ କାମରେ ବାଧା ଦେବା । ହୁଏତ ସେ ଦରିଦ୍ର ଅତ୍ୟାଚରିତ ଲୋକଙ୍କ ପାଇଁ ଭଗବାନଙ୍କ ପ୍ରାର୍ଥନା କରୁଥିବେ—ଏହି ବିଶ୍ୱାସରେ ଯେ, ଜୀବନକୁ ସେହିମାନଙ୍କ ପାଇଁ ଦେଇ ଶେଷ ବେଳରେ ପ୍ରାର୍ଥନା କଲେ ଅବା କିଛି ହେବ ? ଏପରି ଅବସ୍ଥାରେ କିପରି ଜଣେ ଯାଇ କି ମୂର୍ତ୍ତିରେ ତାଙ୍କୁ ଦେଖା କରିବ ? ବାସ୍ତବିକ ଲଲମୋହନ ବାବୁଙ୍କ ମନ କି ଅବସ୍ଥାରେ ଥିବ ଅନୁମାନ କରିବା ପାଇଁ କୁମୁଦିନୀ ବି ଖୁବ୍ ଚେଷ୍ଟା କଲେ । ମାତ୍ର ସମର୍ଥ ହୋଇ ପାରିଲେ ନାହିଁ । ସେ ଶୁଣିଥିଲେ ଜୀବନରେ ଯେ ଯାହାକୁ ଅତି ସୁଖ ପାଉଥାଏ, ମୃତ୍ୟୁ ନିକଟରୁ ତାହାହିଁ ମନରେ ବାରମ୍ବାର ନାଚେ । ଲଲମୋହନ ବାବୁ ଦେଶକୁ ତ ସବୁଠାରୁ ବେଶୀ ସୁଖ ପାଉଥିଲେ । କୁମୁଦିନୀଙ୍କ ପ୍ରତି ତାଙ୍କର ଯେ ମମତା ସେ ତ ସଫା କହୁଥାନ୍ତି ଯେ, ତାହା ବଡ ବ୍ୟବହାର ଜୀବୀଙ୍କ ଦୀର୍ଘ ଅବକାଶରେ ସ୍ଥାନ ପରିବର୍ତ୍ତନ ଭଳି । ଏପରି ସ୍ଥଳେ ହୁଏତ ତାଙ୍କ ମନ ମଧ୍ୟରେ କୁମୁଦିନୀ ଆଦୌ ନ ଥିବେ । ଏ କଥା ଭାବିଲା ମାତ୍ରକେ କୁମୁଦିନୀଙ୍କ ମନ ଦବି ଯାଉଥାଏ । ସେ ପୁଣି ଭାବି ଆନନ୍ଦ ପାଉଥାନ୍ତି ଯେ, ଲଲମୋହନ ବାବୁ ତାଙ୍କୁ ନିଶ୍ଚୟ ବେଶୀ ସୁଖ ପାଉଥିଲେ ଓ ସେ ନିଶ୍ଚୟ ତାଙ୍କ ମନେ

ପଡୁଥିବେ । ମାତ୍ର ତାଙ୍କ ସଙ୍ଗେ ଦେଖା ହେଲେ କହିବେ କଅଣ ? ଦମ୍ଭ ଧରି ରହି ପାରିବେ ତ ? ଏହିପରି ସେ ନାନାଆଡ଼ୁ ଭାବି ସ୍ଥିର କରି-ପାରୁ ନ ଥାନ୍ତି, ତାଙ୍କ ସହିତ ସାକ୍ଷାତ୍ କରିବାର ଉଦ୍ୟମ କରିବେ କି ନା ? ଏହି ସମୟରେ ଯୁଗ୍ମାର ପୋଲିସ ଅଫିସରୁ ଏକ ଚିଠି ପାଇଲେ । ଲଲି-ମୋହନ, ଯେ କି ରଣପୁର ଜେଲ୍‌ରେ ଫାଶୀ ପାଇବା ପାଇଁ ଅଛନ୍ତି, ସେ ତାଙ୍କର ସ୍ତ୍ରୀ କୁମୁଦିନୀଙ୍କ ସହିତ ସାକ୍ଷାତ୍ କରିବା ପାଇଁ ଇଚ୍ଛା କରିଛନ୍ତି । ସେ ଇଚ୍ଛା କର୍ତ୍ତୃପକ୍ଷ ଅନୁଗ୍ରହ କରି ମଞ୍ଜୁର କରିଛନ୍ତି । ଏଣୁ ଆସନ୍ତା ସାତ ତାରିଖ ମଧ୍ୟରେ ସେ ରଣପୁରରେ ଯାଇ ତାଙ୍କ ସହିତ ସାକ୍ଷାତ କରି ପାରନ୍ତି ।

ଚିଠିଟି ପଢ଼ି କୁମୁଦିନୀ ଗୁମ୍ ମାରି ବସିଗଲେ । ସେ ତାଙ୍କୁ ନିଜର ସ୍ତ୍ରୀ ବୋଲି ପ୍ରକାଶ କରି ଅଛନ୍ତି ଅଥଚ ଯେ ସ୍ତ୍ରୀ ସେ। ସ୍ୱାମୀର ମୃତ୍ୟୁଦଣ୍ଡର ଖବର ପାଇ ଦିନ ଗୋଟାଏ ସୁଦ୍ଧା ପ୍ରାଣ ଧରି ରହି ପାରିଲା ନାହିଁ । ଅଥଚ ସେ ଧୀରେ ଧୀରେ ପୁରୁଣା କଥାକୁ ପାଶୋରି ପୁଣି ନୂଆ ଯୋଜନାରେ ମାତି ଚାଲିଛନ୍ତି । ସେ ନିଜକୁ ଓ ନିଶାମଣିକୁ ପ୍ରଣୟିନୀ ଭାବରେ ନିକଟରେ ତଉଲିଲା ବେଳକୁ ନିଶାମଣି ଯେପରି ତଳେ ଲାଗି ଯାଉଥାଏ ଓ ସେ ନିଜେ ଯେପରି ଉପରକୁ ଉଠି ଯାଉଥାନ୍ତି । ଏପରି ଭାବି ସେ ଲଜ୍ଜିତ ହେଉଥାନ୍ତି । ପୁଣି କିଏ ଯେପରି ପଛରୁ କହି ଦେଉଥାଏ, ନିଶାମଣି ତ ଆଉ ନାହିଁ ଓ ଲଲିମୋହନ ତ ରହିବେ ନାହିଁ, ଆଉ ପ୍ରଣୟର ପ୍ରତିଦ୍ୱନ୍ଦିତା କାହା ପାଇଁ ?

କୁମୁଦିନୀ ରଣପୁର ଯିବେ ଓ ନିଶାମଣିଙ୍କ ତରଫରୁ ଶିଶୁଟିକୁ ଲଲିମୋହନ ବାବୁଙ୍କୁ ଉପହାର ଦେବେ ଏବଂ ପୁଣି ତାଙ୍କଠାରୁ ପ୍ରୀତିର ନିଦର୍ଶନ ସ୍ୱରୂପ ଉପହାର ପାଇଁ ସେ ଶିଶୁଟିକୁ ଜୀବନର ଶ୍ରେଷ୍ଠ ଧନ କରି ରଖିବେ । ଏହି ଚିନ୍ତାହିଁ ତାଙ୍କୁ ବିଷାଦ କୁହୁଡ଼ି ଭିତରେ ସକାଳ ସୂର୍ଯ୍ୟ ପରି ସାନ୍ତ୍ୱନା ଦେଉଥାଏ ।

ଯେତେବେଳେ କୁମୁଦବାବୁଙ୍କ ସହିତ ଦେଖା କରିବା ପାଇଁ ଲାଲମୋହନ ବାବୁ ଇଚ୍ଛା ପ୍ରକାଶ କଲେ ଓ ସେ ଇଚ୍ଛାକୁ ଏପରି ବଳବତ୍ତର ଭାବରେ ଜେଲକର୍ତ୍ତୃପକ୍ଷଙ୍କ ଆଗରେ ଥୋଇଲେ ଯେ, ସେମାନେ ତାହା ପୂରଣ କରିବାକୁ ବାଧ୍ୟ ହେଲେ । ସେତେବେଳର ତାଙ୍କ ମନର ଚିତ୍ର ଆଙ୍କିବା ବଡ଼ କଠିନ । ଫାଶୀର ଆଦେଶ ସେ ଯେତେବେଳେ ଶୁଣିଲେ, ସେତେବେଳେ ତାଙ୍କ ମନ ଦବିଗଲା—'ସବୁ ଶେଷ' ଏ ପ୍ରକାର ଏକ ହତାଶ ଭାବ ଆସିଲା । ମାତ୍ର ପରେ ତାଙ୍କ ମନ ଆନନ୍ଦରେ ଉଚ୍ଛୁଳି ଉଠିଲା । ଗତ କେତେ ମାସ ହେଲା ଯେ ବୀଭତ୍ସ ଅତ୍ୟାଚାରର ଶାସନ ଓ ଶୃଙ୍ଖଳା ନାମରେ ନିରୀହ ଜନତାଉପରେ ଗୁଳି ଚଳାଇ ମଧ୍ୟଯୁଗର ବର୍ବରତାକୁ ଚିରକାଳ କାଏମ ରଖିବାର ଚେଷ୍ଟା କରାହୋଇଛି, ସେ ସବୁ ନିଜ ଆଖିରେ ଦେଖି ଦେଖି ତାଙ୍କ ମନ ଏତେ ତିକ୍ତ ହୋଇ ଯାଇଥିଲା ଯେ, ମନୁଷ୍ୟ ଭିତରେ ଯେ ଚିରନିହିତ ଦେବତ୍ୱ ଟିକେ ଅଛି, ସେଥିରେ ତାଙ୍କର ଅବିଶ୍ୱାସ ଜନ୍ମି ଯାଇଥିଲା । ତେଣୁ ସେ ଆଉ ଭାବୁ ନ ଥିଲେ ଯେ, ଅତ୍ୟାଚାର କରି କରି ଅତ୍ୟାଚାରୀ ଆପେ ଥକି ପଡ଼ିବ ଓ ତା ମନରେ ସେ ଦେବତ୍ୱ ସ୍ୱତଃ ଜାଗି ଉଠିବ । ତାଙ୍କ ମନରେ ଦାରୁଣ ପ୍ରତିହିଂସା ଭାବ ଜାଗ୍ରତ ହେଉଥିଲା, ଯାହାକୁ ସେ ଦବାଇବାପାଇଁ ଚେଷ୍ଟା କରୁଥିଲେ, ଅହିଂସାର ଆଦର୍ଶ ଦୃଷ୍ଟିରୁ । ଲୋକେ ଉତ୍ତେଜିତ ହୋଇ ସାହେବକୁ ମାରି ପକାଇଲେ, ସେ ସେତେବେଳେ ମନେ ମନେ ଏକ-ପ୍ରକାର ସନ୍ତୋଷ ଅନୁଭବ କଲେ, ଯାହାକୁ ସେ ବ୍ୟକ୍ତ କରୁଥିଲେ କବିଙ୍କ ଭାଷାରେ "ଜନ ଦରବାରେ ତାର ହୋଇଅଛି ସଜା ।" ଏ ସନ୍ତୋଷ ତାଙ୍କ

ମନକୁ ଆସୁଛି—ସେ ଏଥିପାଇଁ ଦୁଃଖିତ ହେଉଥିଲେ । ଚେଷ୍ଟା କରୁଥିଲେ ଯେପରି ସେ ଜଣଙ୍କ ମୃତ୍ୟୁରେ ଦୁଃଖିତ ହୁଅନ୍ତୁ; ମାତ୍ର ଶହ ଶହ ଲୋକ ଯେ ଗୁଳି ମାଡ଼ରେ ମରିଛନ୍ତି, ଶହ ଶହ ନାରୀ ଯେ ଅତ୍ୟାଚାରିତ ହୋଇଛନ୍ତି —ଏସବୁ ଯେପରି ତାଙ୍କ ଗୃହ ପାଖ ପରିଭ୍ରମଣ କରି ତାଙ୍କ ମନରେ ସାହେବଙ୍କ ହତ୍ୟାର ସନ୍ତୋଷ ଆଣିବା ପାଇଁ ତାଣ୍ଡବ ନୃତ୍ୟ କରୁ ଥାଆନ୍ତି । ଫାଶୀ ହୁକୁମ ପାଇଁ ସେ ସନ୍ତୋଷ ଅନୁଭବ କଲେ, ଯେତେବେଳେ ସେ ଭାବିଲେ ଯେ, ନିଜକୁ ଅତ୍ୟାଚାରିତମାନଙ୍କ ସହ ପୁରା ପୁରି ମିଶାଇଁ ଦେବାର ସୁଯୋଗ ପାଇଛନ୍ତି । ଯେତେବେଳ ପର୍ଯ୍ୟନ୍ତ ସେ କେବଳ ଉତ୍ପୀଡ଼କ ତା ଥିଲେ ଓ ତାଙ୍କ ଦ୍ୱାରା ଉତ୍ପୀଡ଼ିତ ହୋଇ ଜନତା ଧନ, ଜୀବନ, ସମ୍ମାନ ସବୁ ହରାଉ ଥିଲା, ସେତେବେଳ ପର୍ଯ୍ୟନ୍ତ ସେ ନିଜକୁ ଜନତା ଭିତରେ ଜଣେ ବୋଲି ପୁରି ପୁରି ଭାବି ପାରୁ ନ ଥିଲେ । ବର୍ତ୍ତମାନ ସେ ସେହି ଜନତା ଭିତରେ ଜଣେ ଯେ ବନ୍ଧୁ ବର୍ଷର ଅସଭ୍ୟତା ଓ ଅତ୍ୟା-ଚାରକୁ ଠେଲି ଦେବାକୁ ଯାଇ ନିଜ ଜୀବନକୁ ତୁଚ୍ଛ କରି ଦେଇଛି ।

ରାଜଗଡ଼ର ଆଡାସବାଜରେ କେତେ ଜୀବନ · ସମ୍ମାନର ଚରମ ସୀମାକୁ ଯାଇ ପୁଣି କୁଆଡ଼େ ବିସ୍ମୃତିରେ ଲୀନ ହୋଇ ଯାଉଛି, ମାତ୍ର ଯେଉଁମାନେ ଦେଶ ପାଇଁ ଜୀବନ ଦେଉଛନ୍ତି ସେମାନଙ୍କ ନାମ ଇତିହାସରେ ବ୍ୟକ୍ତିଗତ ଭାବରେ ନ ରହିଲେ ମଧ୍ୟ ସମୂହଭାବରେ ସେହିମାନେ ଯେ ଆଧୁନିକ ଇତିହାସର ରଚୟିତା ଏକଥା କାଲ କାଲକୁ ରହିଯିବ । ସେ ନିଜେ ସେହି ଭାଗ୍ୟବାନମାନଙ୍କ ଭିତରୁ ଜଣେ ଯେ ପରାଧୀନତାର ଶିକୁଳି ଛିଡ଼ାଇବା ପାଇ ନିଜ ଜୀବନ ସୁଦ୍ଧା ଦାନ କରୁଛନ୍ତି ! ଏହି ଚିନ୍ତାରଧାରା ଲଲମୋହନ ବାବୁଙ୍କ ମନରେ ଅନେକ ଦିନ ପର୍ଯ୍ୟନ୍ତ କାମ କଲା । ସେ ସମୟରେ ସେ ଆଉ କିଛି ମନେ ପକାଇ ନାହାନ୍ତି, ଘର ଭାଇ, ବନ୍ଧୁ, ସ୍ତ୍ରୀ ବା କୁମୁଦିନୀ—କେବଳ ତାଙ୍କ ଆଖି ଆଗରେ ନାଚୁଥାଏ ସେହି ଲୋକେ ଯେଉଁ-ମାନେ ଗୁଳିରେ ମରି ଯାଇଛନ୍ତି, ସେହିମାନେ ଯେଉଁମାନେ ସର୍ବସ୍ୱ ହରାଇ ସୁଦ୍ଧା ସାହସବାନ୍ଧ ଅତ୍ୟାଚାରର ବିରୋଧରେ ଉତ୍ସାହ ସହକାରେ

ଲଗିଥାନ୍ତି । ଏହି ସମୟରେ ସେ ଏପରି ଚିନ୍ତାରେ ଭରପୂର ହୋଇ ରହିଲେ ଯେ, ସେ ପାଗଳ ହୋଇ ଯାଇଛନ୍ତି ବୋଲି ଜେଲ କର୍ତ୍ତୃପକ୍ଷ ମନେ କଲେ । କାରଣ ସେ ଅନେକ ସମୟରେ ଅବାନ୍ତର ଭାବରେ ଏପରି କଥା ନିଜ ମନକୁ କହନ୍ତି, ଯାହାର ଅର୍ଥ ଜେଲକର୍ତ୍ତାମାନେ ବୁଝିପାରନ୍ତି ନାହିଁ ।—"କିଏ କହୁଛି ସେମାନେ ମରିଯାଇଛନ୍ତି—ସେମାନେ କଦାପି ମରି ନାହାନ୍ତି । ସେମାନେ ଯାଇଛନ୍ତି ପୁଣି ସଜବାଜ ହୋଇ ଆସିବା ପାଇଁ । ଆସିବେ ସେମାନେ ନୂତନ ଶକ୍ତି ନେଇ—ନୂତନ ଉତ୍ସାହ ନେଇ—ସେ ଦିନ ଆକାଶରେ ବାଦଲ ଏ ହେଲେ ଅନ୍ଧକାର ନ ଥିବ—ସେ ଦିନ ସୂର୍ଯ୍ୟ ଚନ୍ଦ୍ର ଏକ ସଙ୍ଗରେ ଉଦିତ ହୋଇ ଅନ୍ଧ ସନ୍ଧି ଖୋଜି ପୃଥିବୀର ସବୁଆଡ଼ୁ ଯେତେ ଅନ୍ଧକାର ଅଛି ସବୁ ଦୂର କରିବେ । ସେ ଦିନ ମଳୟ ପବନ ଚୁରିଆଡ଼େ କୀର୍ତ୍ତନ କରି ବୁଲିବ ଯେ, ପୃଥିବୀରେ ମନୁଷ୍ୟ ଉପରେ ମନୁଷ୍ୟର ଅତ୍ୟାଚାରର ଅବସାନ ଘଟିଅଛି । ତରୁ ଲତା, ପଶୁ ପକ୍ଷୀ ସମସ୍ତେ ଆନନ୍ଦରେ କୋଳାହଳ କରି ନାଚିବେ—ଗାଇବେ ସେ ଶାନ୍ତିର ସଙ୍ଗୀତ"—ଏତିକି କହି ଦେଇ ସେ ଯେଉଁ ଘରେ ବନ୍ଦୀ ଥାନ୍ତି ସେଠାରେ ଦ୍ରୁତ ଗତିରେ ଏ ପାଖ ସେପାଖ ପଦକ୍ଷେପ କରନ୍ତି । କେତେବେଳେ ଅବା ଝରକା ପାଖେ ବାହାରକୁ ଅନାଇ ହସି ହସି କହନ୍ତି—"ଭାବନ୍ତୁ ତୋର ଜୀବନର ମୂଲ୍ୟ ଅଛି—ଆଉ କାହାରି ନାହିଁ । ଏଇଥର ମରଣରୁ ବୁଝୁ ଯେ ସମସ୍ତଙ୍କ ଜୀବନ ଅତି କ୍ଷୀଣ ଓ ତାହା ଅନ୍ୟର ଦୟା ଉପରେ ନିର୍ଭର କରେ ।"

ତାଙ୍କର ଖାଇବା ପାଇଁ ଭାତ ଡାଲି ପ୍ରସ୍ତୁତ କରି ନେଇ ଦେଲେ, ସେ ବହୁକ୍ଷଣ ପର୍ଯ୍ୟନ୍ତ ଭାତକୁ ଅନାଇ ଧୀରେ ଧୀରେ ଅସ୍ପଷ୍ଟ ଭାବରେ କହନ୍ତି, "ଯେ ମରିବାକୁ ଯାଉଛି—ତା ପାଖକୁ ତୁ ଆପେ ଆପେ ଆସୁଛୁ—ଯେ ବଞ୍ଚିବାକୁ ଚାହୁଁଛି, ତା' ପାଖରୁ ତୁ ଦୂରରୁ ଦୂରକୁ ଅପସରି ଯାଉଛୁ । ଏ ତୋର ପରିହାସ ନା ।—ଜୋର କରି ତୋତେ ସେମାନଙ୍କ ପାଖକୁ ଯିବାକୁ ହେବ । ନ ହେଲେ ରଣସ୍ଥଳରେ ଯାହା ହେଲା ତାହା ହେବ ।" ଏହା କହି ଅଟ୍ଟହାସ୍ୟ କରି ଭାତକୁ ଫୋପାଡି ଦିଅନ୍ତି । କେବଳ

ଯେ ଜାଗ୍ରତ ଅବସ୍ଥାରେ ଏପରି ତାଙ୍କ ସ୍ଥିତ ତାହା ନୁହେ । ରାତିରେ ଶୋଇଥିବା ବେଳେ ମଧ୍ୟ ହଠାତ୍ ଧଡ଼ପଡ଼ ହୋଇ ଉଠି କେବେ କେବେ ବନ୍ଦ ହୋଇଥିବା ଦରଜାକୁ ଖୁବ୍ ଜୋରରେ ଆଘାତ କରି ପାଟି କରି କହନ୍ତି—"କାହାର ସାଧ୍ୟ, କିଏ ଏତେ ବଡ଼ ଦେଶକୁ ବନ୍ଦ କରି ରଖିବ । ଖୋଲ, ଖୋଲ ଦ୍ୱାର, ନ ହେଲେ ପ୍ରଳୟ ।" ତା' ପରେ ପୁଣି ଆସି ବିଛଣାରେ ପଡି ରହନ୍ତି । କେତେବେଳେ କି ସ୍ୱପ୍ନ ସେ ଦେଖନ୍ତି କେ ଜାଣେ, ନିଦରେ ଚିତ୍କାର କରନ୍ତି । "ଛାଡିଦିଅ ଲମ୍ବା ଡୋରି...... । ସେହି ଡୋରିରେ ସେ ଛନ୍ଦି ହୋଇ ମରୁ । ଛାଡ଼୍, ଡୋରି ଛାଡ଼୍ । କେତେ ମଲେ କେତେ ରହିଲେ ହିସାବ କିତାବ କିଛି କରି ନାହିଁ । ଛାଡ଼୍ ଡୋରି ଛାଡ଼, ଯେଉଁ ଦିନ ହିସାବ ହେବ ସେ ଦିନ ଜଣାଯିବ—କୋଟି କୋଟି ଲୋକଙ୍କ ଭିତରୁ କେତେ ହଜାର ମାତ୍ର ଜୀବନ ଦେଇ ସ୍ୱାଧୀନତା ଆଣିଛନ୍ତି । ଛାଡ଼୍ ଡୋରି ଛାଡ଼ ।" କେତେବେଳେ ନିଦରେ ପାଟି କରି କହନ୍ତି, "ଜାଣିଛୁ ତୁ ଜୀବନର ଦୁଇ ପ୍ରକାର ମୂଲ୍ୟ ଅଛି ? ଗୋଟିଏ ନୂଆବର ଆଉ ଗୋଟିଏ ମୂଲ୍ୟଆର । ଏଥର ବୁଝ୍ ସବୁ ଜୀବନର ମୂଲ୍ୟ ଗୋଟିଏ ।"

ଏହିପରି ତାଙ୍କ ଗତିବିଧି ଦେଖି ଜେଲ କର୍ତ୍ତୃପକ୍ଷ ବିଶ୍ୱାସ କରୁଥାନ୍ତି ଯେ, ସେ ପାଗଳ ହୋଇ ଗଲେଣି । ଯେଉଁମାନଙ୍କର ଟିକିଏ ହୃଦୟ ଅଛି ସେମାନେ ଗୃହକର୍ତ୍ତ୍ରୀ ବଜାୟ ରଖିବା ପାଇଁ ଉପରେ କିଛି କହନ୍ତି ନାହିଁ । ମାତ୍ର ଭିତରେ ଦୀର୍ଘ ନିଶ୍ୱାସ ପକାଇ ଭାବନ୍ତି—ଏତେ ବଡ଼ ଲୋକର ଏଦଶା ହେଲା ? ମାତ୍ର ସେମାନଙ୍କ ହୃଦୟର କାର୍ଯ୍ୟ ଏହି ବିଶ୍ୱାସଟିକକଠାରୁ ଆଉ ବେଶୀ ଦୂର ଯାଇ ନ ଥାଏ ।

ଉପରିସ୍ଥ କର୍ତ୍ତୃପକ୍ଷଙ୍କର ଆଦେଶ ହୋଇଥାଏ ଯେ, ଲାଲମୋହନବାବୁଙ୍କୁ ଏକୁଟିଆ ଗୋଟିଏ ଘରେ ଦିନରାତି ଚବିଶ ଘଣ୍ଟା ବନ୍ଦ ରଖିବାକୁ ହେବ । ସେହି ଘରେ ସେ ସବୁ କରିବେ । ଯେ ଫାଶୀ ପାଇବାକୁ ଯାଉଛି ତାର ପୁଣି ସୁବିଧା ଅସୁବିଧା କ'ଣ ? ଏକିକବେଳେ ଦେଖିବାକୁ ହେବ ଯେ,

ଯେ ଫାଶୀରେ ହିଁ ମରୁ । ତା ପୂର୍ବରୁ ସେ ଯେପରି ଅନ୍ୟ କୌଣସି କାରଣରୁ ମରି ନ ଯାଏ, କାରଣ ତା' ହେଲେ ମର୍ଯ୍ୟାଦା ରକ୍ଷା ହେବ ନାହିଁ । ବାସ୍ତବିକ୍ ମନୁଷ୍ୟସମାଜରେ ଏ ଫାଶୀଦଣ୍ଡ ସିନା ମନେ ପକାଇ ଦେଉଛି ଯେ, ମନୁଷ୍ୟ ବର୍ତ୍ତମାନ ସୁଦ୍ଧା ତାର ସେହି ପୂର୍ବ ପ୍ରକୃତି ଭୁଲି ନାହିଁ । ଇତିମଧ୍ୟରେ ହଜାର ହଜାର ବର୍ଷ ଅତିବାହିତ ହୋଇ ଯାଇଥିଲେ ମଧ୍ୟ ଫାଶୀ ପାଇବା ପୂର୍ବରୁ ଯେଉଁ ଦଣ୍ଡିତ ଲୋକଟି ମାସେ ଦୁଇମାସ ବା କେତେକ ସ୍ଥଳରେ ବର୍ଷ ବର୍ଷ କାଳ ଜେଲରେ କଟାଏ, ସେତେବେଳେ ସିନା ତାକୁ ହାଣକୁ ଯିବା ପୂର୍ବରୁ ଛେଳି ମେଣ୍ଢାପରି ବ୍ୟବହାର କରାଯାଏ ।

ପ୍ରଥମ କେତେଦିନ ଲଲମୋହନ ବାବୁ କେବଳ ନିଜର ଉଦ୍ଧାର ଚିନ୍ତା ଛଡ଼ା ଅନ୍ୟ କୌଣସି କଥାକୁ ଭ୍ରୂକ୍ଷେପ କରି ନାହାନ୍ତି । ସେ ଯେ ଗାଧୋଇ ନାହାନ୍ତି, ଅତ୍ୟନ୍ତ ଦୁର୍ଗନ୍ଧ ପୂର୍ଣ୍ଣ ବଖରାଟିରେ ଦିନ ରାତି ବନ୍ଦ ରହୁଛନ୍ତି—ଶୁଖିଲା ଭାତଗଣ୍ଡେ, ଡାଲି ଟିକିଏ ଓ ଶାଗ ମେଞ୍ଚାଏ ଆଣି ତାଙ୍କ ପାଖରେ ରଖି ଦିଆ ହେଉଛି, ପିଇବା ପାଇଁ ପାଣି ସୁଦ୍ଧା ସେ ଘରେ ରଖା-ଯାଇ ନାହିଁ—ଏ ସବୁ କିଛି ତାଙ୍କୁ ଲାଗୁ ନ ଥାଏ । ମାତ୍ର କିଛି ଦିନ ପରେ ଯେତେବେଳେ ଚିନ୍ତାର ଉନ୍ମାଦନା କମି ଆସିଲା, ସେତେବେଳେ ସେ ଧୀରେ ଧୀରେ ଅନୁଭବ କଲେ ଯେ, ତାଙ୍କୁ ବାସ୍ତବିକ୍ ଏକ ନରକ କୁଣ୍ଡରେ ପକାଇ ରଖା ହୋଇଛି । ଯମ ରାଜାଙ୍କର ନାନାବିଧ ଦଣ୍ଡବିଧାନର ବର୍ଣ୍ଣନା ଯେପରି ପୁରାଣରେ ଶୁଣିବାକୁ ମିଳେ, ସେହିପରି ଯାତନା ଭୋଗ ସେ କରୁଛନ୍ତି । ସେ ବିରକ୍ତ ହୋଇ ଉଠିଲେ—ଭାବିଲେ ଜେଲ ପରିଚାଳକଙ୍କୁ କହିବେ । ମାତ୍ର ପୁଣି ଭାବିଲେ ଆଉ କହି ଲାଭ କଅଣ ?—କେତେ ଦିନକୁ କେତେ କଥା ! ଯେତେବେଳେ ବାସ୍ତବିକ୍ ସେ ଘରେ ରହିବା ଅସହ୍ୟ ହେଲା, ସେତେବେଳେ ପରିଚାଳକଙ୍କୁ ଥରେ କହିଲେ, ଘରକୁ ସାଫ୍ ସୁତୁରା କରିବା ପାଇଁ ଓ ଘରେ ପିଇବା ପାଣିର ବ୍ୟବସ୍ଥା ପାଇଁ । ପରିଚାଳକ ମହାଶୟ ନିଜ ଓଠରେ ଅବଜ୍ଞାର ହସଟିଏ ଖେଳାଇ ଦେଇ କହିଲେ, "ଆଉ ତ ପନ୍ଦର ଦିନର କଥା—କୌଣସି ପ୍ରକାରେ ଚଳାଇ ନିଅ ।" ଲଲମୋହନ ବାବୁଙ୍କ ମନରେ ସେହି ପନ୍ଦର ଦିନ କଥାଟି

ଲାଗିଗଲା । 'ପନ୍ଦର ଦିନରେ ସରିଯିବ ସବୁ କଥା ।' ଏହିଠାରୁ ତାଙ୍କର ମନ ଯେ ଗଡ଼ିଗଲା,ସେ ତାଙ୍କର ଘର, ଗୃହାବସ୍ଥା, ସାଧାରଣ ଜୀବନର ଆରମ୍ଭ, ସାଧାରଣ ଜୀବନର ଠିକ ନିଖି ସବୁ କାମ, ନିଶାମଣି, ଏସବୁକୁ ବିଚାରଣ କରି ଶେଷରେ ପହଞ୍ଚିଲା କୁମୁଦନୀ ନିକଟରେ । 'ଭାଗ୍ୟେ ସିନା ମୁଁ ବିବାହ କରି ନାହିଁ, ନହେଲେ ତ ସେ ବିଚାରି ବିଧବା ହୋଇ ଯାଇଥାନ୍ତା ।' ଜୀବନର ଯେ ପଥ ମୁଁ ବାଛି ନେଇ ଥିଲି ସେଥିରେ କାହିଁକି ମୁଁ ମନ ବଳାଇଥିଲି ଦାମ୍ପତ୍ୟ ଜୀବନ ଉପଭୋଗ କରିବି ବୋଲି ! କେତେ ସ୍ନେହ ସେ ମୋଠାରେ ଅଜାଡ଼ି ଦେଇଥିଲା--କେତେ ସ୍ନେହ ମୁଁ ତାକୁ ଅର୍ପଣ କରି•ଥିଲି ଶେଷରେ ସେହି ସିନା ସେ ମୃତ୍ୟୁଶଯ୍ୟାକୁ ଚେନି ରହିବ । ବାସ୍ତବିକ୍ ଦିବ୍ୟସିଂହ. ବାବୁ ଠିକ୍ ପରାମର୍ଶ ଦେଇଥିଲେ, ଯେ ଦେଶ କାମରେ ମାତି ସ୍ୱକୀୟ ଆମୋଦ ପ୍ରମୋଦ ପ୍ରତି ମନ ଦେବା ଠିକ୍ ନୁହେଁ । ସେତେବେଳେ ମନେ ହେଉଥିଲା, ସେ ବାଜେ କଥା ଗପୁଛନ୍ତି ବୋଲି-ମାତ୍ର ବର୍ତ୍ତମାନ ମୁଁ ଦେଖୁଛି ଯେ, ସେ ଠିକ୍ କହୁଥିଲେ ।

ନିଶାମଣି କଣ କରୁଥିବ ? ସେ ମୋ ଖବର ପାଉଥିବ ତ ? କୁମୁଦନୀ ତ ଶିକ୍ଷିତା, ସେ ମନକୁ ବୁଝାଇ ପାରିବ—ମାତ୍ର ନିଶାମଣି ବିଚାରୀ କ'ଣ କରିବ ? ଭାଇ ଭାଉଜ ଏମାନେ ତାକୁ ପଚାରିବେ ତ ? ବିଚାରି କେତେ ଆଶା ପୋଷଣ କରିଥିଲା । କେବଳ ନିରାଶା ଛଡ଼ା ମୁଁ ତାକୁ ଆଉ କିଛି ଦେଇ ନାହିଁ । ଯଦି ମୋର କୁମୁଦନୀ ସହିତ ବିବାହ ହୋଇ ଯାଇଥାନ୍ତା, ତେବେ ସିନା ଆଜୀବନ ଦୁଃଖରେ କେବଳ ମୋରି ନାମରେ ଦୀର୍ଘ ନିଶ୍ୱାସ ପକାଇ ଥାଆନ୍ତା । ଓଃ ! ସେ ଦୁଃଖରୁ ସେ ରକ୍ଷା ପାଇ ଯାଇଛି । କାହିଁକି ବା କିଏ ମୋ ପାଇଁ ଜୀବନ ସାରା ଝୁରି ହେବ ? ନିଶାମଣି ବା କୁମୁଦନୀ ମୋତେ କାଳକ୍ରମେ ଭୁଲିଯିବେ । ଶେଷରେ ଯେ ଯାହା ସୁଖ ଦୁଃଖରେ ରହିବେ । ପ୍ରଥମେ କିଛିଦିନ ଭାଳି ହେବେ; ମାତ୍ର କିଛି ଦିନ ପରେ ସବୁ ଭୁଲିଯିବେ । ତାପରେ ତାଙ୍କ ଜୀବନ ସୁରୁଖୁରୁରେ ଗଡ଼ିବ । ମାତ୍ର କୁମୁଦନୀ କିଛି ଦିନ ପାଇଁ ଭାଳି ହେବ—କାହିଁକି ? ମୋ ପାଇଁ ସିନା ତାର ସ୍ନେହ ଥିଲା । ମୋ ଅନ୍ତେ

ତାର ସେ ଅନ୍ୟ ପଥ କାହିଁକି ନ ଦେଖିବ। ହୁଏତ ସେ ଅନ୍ୟ କାହାର ପ୍ରଣୟ ଇଚ୍ଛା କରିବ ! ମୁଁ ସେଠା ଉପରୁ ଥାଇ ଦେଖୁଥିବି ଯେ, ମୋ ପ୍ରଣୟିନୀ ସହିତ ଅନ୍ୟ ଜଣେ ଆସି ପ୍ରଣୟ ସମ୍ପର୍କ ସ୍ଥାପନ କରିଛି। ଓଃ ! କେତେ ଦୁଃଖ ମୋତେ ଲାଗିବ—ଦେହ ସାରା କଣ୍ଟା ଫୁଟି ଯାଉଥିବ। ମାତ୍ର ଏହି ଅନୁଭୂତି ମୃତ୍ୟୁ ପରେ ମୋର ଥିବ କି ? ଯାହାହେଉ ସେତିକି ମୋର ସାନ୍ତ୍ୱନା—କିନ୍ତୁ ବର୍ତ୍ତମାନ ସେ କଥା ଭାବିଲେ ମୋ ଛାତି ଦହି ହୋଇ ଯାଉଛି। ସେହିପରି ଯଦି ମୁଁ କୁମୁଦିନୀକୁ ବିବାହ କରି ଥାଆନ୍ତି—ନିଶାମଣିର ଛାତି ତ ଜଳି ପୋଡି ଯାଉଥାନ୍ତା। କୁମୁଦିନୀର ଦ୍ୱିତୀୟ ବିବାହ କଳ୍ପନାରେ ମୁଁ ଯେ ସନ୍ତାପ ଅନୁଭବ କରୁଛି ମୋର ବାସ୍ତବିକ ଦ୍ୱିତୀୟ ବିବାହରେ ନିଶାମଣିର ପ୍ରାଣ ରହି ପାରି ନ ଥାନ୍ତା। ନିଶାମଣି ବିମ୍ବୃତ୍ତୀ ଏକ ବିଷମ ସମସ୍ୟାରୁ ରକ୍ଷା ପାଇଛି। ଭାଇଆଁର ଘରେ ବହୁତ ଦୁଃଖ ଭୋଗିବ। ମୋ ଥାଉ ଥାଉ କେତେ ଗଞ୍ଜଣା ସେ ସହୁଥିଲା—ମୋ ଅନ୍ତେ ତା' ଜୀବନ ଦୁର୍ବହ ହୋଇ ଉଠିବ। ଯାହା ହେବାର ହେବ। ମୁଁ ଏସବୁ ଚିନ୍ତାରୁ ପନ୍ଦର ଦିନରେ ମୁକ୍ତ। ତେଣିକି ମୋର ନୂଆ ଜୀବନ। ମାତ୍ର ଥରେ କୁମୁଦିନୀଠାରୁ ବିଦାୟ ନେବି। ଜଗତରେ ଆଉ କାହା ସହିତ ମୋର ସେପରି ଘନିଷ୍ଠ ସମ୍ପର୍କ ନାହିଁ। ସାଧାରଣଙ୍କ ସହିତ ଯେତିକି ସମ୍ପର୍କ ଥିଲା ସେଥିପାଇଁ ସେମାନଙ୍କଠାରୁ ମୃତ୍ୟୁରେହିଁ ବିଦାୟ ନେବି। ନିଶାମଣିଠାରୁ ଦୂରରୁ କେବଳ ଦୀର୍ଘ ନିଶ୍ୱାସରେ ବିଦାୟ ନେଉଛି। ମାତ୍ର କୁମୁଦିନୀଙ୍କଠାରୁ ସାକ୍ଷାତରେ ବିଦାୟ ନେବି। ଥରେ ଦେଖିବି ତାକୁ ଶେଷଥର ପାଇଁ।

ତା'ପରେ ସେ ଜିଦ୍ ଲଗାଇଲେ ଯେ, ସେ କୁମୁଦିନୀଙ୍କ ସହିତ ସାକ୍ଷାତ କରିବେ।

ପ୍ରଥମେ ନାନା ପ୍ରକାର ଆପତ୍ତି କରୁଥିଲେ ମଧ୍ୟ ଶେଷରେ ଡାକ୍ତର କଣ୍ଟ୍ରକ୍ଟ ପକ୍ଷ ରାଜି ହେଲେ। ନିକଟ ସମ୍ପର୍କ ଛଡ଼ା ଅନ୍ୟ କାହାର ସହିତ ସାକ୍ଷାତ୍ କରିବାକୁ ଦିଆ ହେବ ନାହିଁ। ଏଣୁ କୁମୁଦିନୀଙ୍କୁ ନିଜ ସ୍ତ୍ରୀ ବୋଲି ଲାଲମୋହନ ଜଣାଇଥିଲେ।

ଶିଶୁଟିକୁ ନେଇ କପର ଲାଲମୋହନଙ୍କ କୋଳରେ ଥୋଇଦେବେ, ପ୍ରଥମେ ଶିଶୁଟି କପର ଅଚାହ୍ନା ବାଉବ, ତାପରେ ଯେତେବେଳେ ନଜର ବାପା ବୋଲି ଜାଣିବ ସେତେବେଳେ ସେ କଛୁ ନ ବୁଝି ପାରିଲେ ମଧ ତା' ନଜ ଦେହ ଭିତରେ ରକ୍ତର ଯେ ସମ୍ବନ୍ଧ ଅଛି, ସେ ଉଷ୍ଣ ହୋଇ ଉଠିବ । ସେ ବଲ ବଲ କର ବାପା ମୁହଁକୁ ଅନାଇବ । ବାପା ହୁଏତ ତାହାର କପୋଳରେ ଏକ ସ୍ନେହର ଚୁମ୍ବନ ଦେବେ । ସେତେବେଳେ ଶିଶୁ ତା ବାପାଙ୍କୁ ନଶ୍ଚୟ ଚହ୍ନି ପାରିବ । ତା ପରେ ସେ ଶିଶୁଟିକୁ କୁମୁଦନୀ ହାତକୁ ବଢ଼ାଇ ଦେବେ ଓ ରୁଦ୍ଧ କଣ୍ଠରେ କହିବେ, 'ଲଗିଲ ତୁମକୁ' ମୁଁ ଯାଉଛି । ସେତେବେଳେ କ ଘଟଣ ସହବ—ସେ ଦାରୁଣ ବଦାୟ ଦେଖିବା ପାଇଁ—ଏଇଠି କୁମୁଦନୀଙ୍କର ମନ ଛଟପଟ ହୋଇ ଉଠେ । ସେ ଆଉ କଛୁ ଭାବ ପାରନ୍ତି ନାହିଁ । କପର ସେ ନଶାମଣିର ମୃତ୍ୟୁ ଖବର ଶୁଣାଇବେ—କପର ବା ସେ ନଜେ ତାଙ୍କ ଆଗରେ ବ୍ୟବହାର କରିବେ, ଏସବୁ ତାଙ୍କ ମନରେ ଦନରାତ ସବୁବେଳେ ଉଠୁଥାଏ । ମାତ୍ର ଦେଖା ହେବ, ଏହ ଆଶାରେ ସେ ବେଳେ ବେଳେ ଉଲସି ଉଠୁଥାଏ ଓ ତଦ-ନୁସାରେ ନଜକୁ ତୟାର କରୁଥାନ୍ତି ।

• ଯେଉଁ ଦନ ସେ ରଣପୁର ଯିବେ ତାହା ପୂର୍ବଦନ ଖବର କାଗଜ ପଢ଼ସାର ରଖିଦେବା ବେଳେ ଦୈବାତ୍ ତାଙ୍କର ଦୃଷ୍ଟି ପଡଗଲ ବଜ୍ଞାପନ ପୃଷ୍ଠାରେ—ଗୋଟିଏ ବଜ୍ଞାପନ ପ୍ରତି—ତାକୁ ସେ ଭଲ କର ପଢ଼ଲେ ଓ ହଠାତ୍ ଏତେ ରାଗି ଗଲେ ଯେ,କାଗଜକୁ ଚିର ଚିର ଫୋପାଡ଼ ଦେଲେ ।

ସେ ବିଜ୍ଞାପନଟି ଦେଇଛନ୍ତି ହରମୋହନ ବାବୁ—ସେଥିରେ ସାଧାରଣଙ୍କୁ ଜଣାଇ ଦେଇଛନ୍ତି ଯେ, ଲଲମୋହନ ବାବୁଙ୍କ ସ୍ତ୍ରୀ କୁଳ ଛାଡ଼ି ଧର୍ମାନ୍ତର ଗ୍ରହଣ କରି ସବୁ ଅନେକ ଦିନହେଲା ଚାଲି ଯାଇଛନ୍ତି । ଏଣୁ ହରମୋହନ ଓ ଲଲମୋହନଙ୍କ ସମ୍ପତ୍ତିରେ ତାଙ୍କର କୌଣସି ଅଧିକାର ନାହିଁ । "ଗୃହଅନ୍ତେ ସମସ୍ତେ ଜାଣିଲେ ଯେ, ଲଲମୋହନ ଆଉ ଅଳ୍ପଦିନେ ଫାଶୀ ପାଇବେ—ତାପରେ ଅଂଶ ରହିବ ତାଙ୍କ ସ୍ତ୍ରୀଙ୍କର ଓ ସନ୍ତାନର । ସେଥିରୁ ସେମାନଙ୍କୁ ବଞ୍ଚିତ କରିବା ପାଇଁ ଏ ଆଗଭୁରା ସେ ଚାଲିଚନ୍ତି ।

କିବା ସମ୍ପତ୍ତି ସେଥିରୁ ବଞ୍ଚିତ ହେଲେ କାହାର ଅବା କଅଣ ହୋଇଯିବ—ମାତ୍ର ଏତେ ନୀଚ ସ୍ୱାର୍ଥ, ସେମାନେ ମନେ କଲେ ନାହିଁ ଲଲମୋହନ ବାବୁଙ୍କୁ ଦେଖିବା ପାଇଁ—ଥରେ ସେମାନେ ଭାବିଲେ ନାହିଁ ତାଙ୍କର ସ୍ତ୍ରୀ ଓ ସନ୍ତାନ କିପରି ଅଛନ୍ତି ? ଏହି ପଙ୍କରୁ ଲଲମୋହନ ବାବୁଙ୍କ ଭଳି ପଦ୍ମ ସିନା ବାହାରିଛନ୍ତି-ଏହି ସ୍ୱାର୍ଥର କଠିନ ଭୂମିରୁ ନିସ୍ୱାର୍ଥ-ପରତାର କୋମଳ ଲତାଟି ଜନ୍ମ ହେଲା ବା କିପରି ଓ ତାଳପତ୍ର ମେଲାଇ ଚାରିଆଡ଼କୁ ସୁବାସିତ କଲା ବା କିପରି ? ଏହି ତ ଦେଶ—ଜଣେ ଅଧେ ନିଜର କୃତିତ୍ୱ ଯୋଗେ ପର୍ବତ ଶିଖରକୁ ଉଠି ଯାଉଛନ୍ତି—ନ ହେଲେ ସାଧାରଣ ତ ଏହି କ୍ଷୁଦ୍ର ଅନ୍ଧାରର ଦୁଃଖରେ ପଡ଼ି ରହି ଜଗତକୁ ଅନ୍ଧାର ଦେଖୁଛନ୍ତି । ସାଧାରଣକୁ କିପରି ବା ଦୋଷ ଦେଇ ହେବ । ସେହି ସାଧାରଣ ତ ପୁଣି ଦେଶ ପାଇଁ ଗୁଳି ଖାଇ ପ୍ରାଣ ଦେଇଛନ୍ତି ଓ ସର୍ବସ୍ୱ ହରାଉଛନ୍ତି । ମାଁ-ଏ ସେହି ନିନ୍ଦିତ ବ୍ୟକ୍ତି ଲଲମୋହନ ବାବୁଙ୍କ ଭାଇ ହରିମୋହନ—ସେହି ନୀଚ ଓ ସ୍ୱାର୍ଥପର—ଏହିପରି କେତେ ଭାବି ଶେଷରେ ସେ ସାନ୍ତ୍ୱନା ପାଇଲେ ଯେ, ଶିଶୁଟିର ଯା କିଛି ସମ୍ପର୍କ ଅନ୍ୟଠି ଥିଲା ସେ ସୁଦ୍ଧା କଟିଗଲା । ଏଣିକି ସେ ପୂର୍ଣ୍ଣଭାବରେ ତାଙ୍କର ।

ଶିଶୁଟି ପାଇଁ ନୂଆ ଜାମା, ବେକରେ ପିନ୍ଧିବା ସୁନାର ପଦକଲା ହାରଟିଏ କିଣି ତାକୁ ପିନ୍ଧାଇଦେଇ କୁମୁଦିନୀ ଗେଲକରି ହାତରେ ନଚାଇ

ଚାହିଲେ, "ଯିବୁ ତୋ ବାପାକୁ ଦେଖିବୁ ?" ପିଲାଟି ହସୁଥାଏ । ହୁଁ ହୁଁ କରୁଥାଏ । ଶେଷରେ କୁମୁଦିନୀ ରଣପୁର ବାହାରିଲେ ।

ଯେଉଁ ଦିନ ଦେଖା ହେବାର କଥା ସେଦିନ ସକାଳୁ ଯାଇ କୁମୁଦିନୀ ଜେଲ,ଫାଟକ ପାଖରେ ଉପସ୍ଥିତ ହେଲେ । ଜେଲ ଆଗରେ ଗୋଟିଏ ଗଛ-ତଳେ ପିଲାଟିକୁ ନେଇ ବସିଥାନ୍ତି । ବାହାରୁ ସେ ପ୍ରାଚୀର ଆକାର ଦେଖି ଭୟ ପାଉଥାନ୍ତି । ତାଙ୍କର ମନେ ହେଉଥାଏ ଯେପରି ଗୋଟାଏ ଅସୁରପୁରୀ ଭିତରେ ଲାଲମୋହନବାବୁ ଓ ଆହୁରି କେତେ ଲୋକଙ୍କୁ ତାର ଖାଦ୍ୟ ହେବା ପାଇଁ ବନ୍ଦ କରିହୋଇ ରଖାଯାଇଛି । ଉଦ୍‌ବେଗର ସୀମା ନାହିଁ । କେତେବେଳେ ତାଙ୍କୁ ଖବର ଦିଆଯିବ ଦେଖାକରିବା ପାଇଁ । .

ଶେଷରେ ଜେଲ କର୍ମଚାରୀ ଜଣେ ଖବର ଦେଲେ ଜେଲର ବାହାର ପାଖ ଗୋଟିଏ ଝରକା ପାଖକୁ ଯିବା ପାଇଁ । କୁମୁଦିନୀ ଗଲେ, ଝରକାରେ ଲୁହା ଜାଲି ଖୁବ୍ ବହଳ ହୋଇ ଦିଆ ଯାଇଛି । ବାହାରୁ ଆଲୁଅ ପଡୁଥିବାରୁ ଭିତରଟା ବାହାରକୁ ଦେଖାଯାଉ ନାହିଁ । ଭିତରୁ ଲାଲମୋହନ ବାବୁ ଝରକାର ଲୁହା ଜାଲିରେ ଆଘାତ କରି କହିଲେ, "କୁମୁଦିନୀ, ତୁମେ ଆସିଛ ?" କୁମୁଦିନୀଙ୍କୁ ପରିଷ୍କାର କିଛି ଦେଖା ଯାଉ ନ ଥାଏ । ସେ ଜାଲି ପାଖରେ ମୁହଁ ଲଗାଇ ଲାଲମୋହନ ବାବୁଙ୍କ ରୂପକୁ ଦେଖି ଚମକି ଉଠିଲେ ।

ମୁହଁ ଶୁଖିଯାଇ କଳାକାଠ ପଡିଯାଇଛି—ବହୁଦିନରୁ କ୍ଷୌର ହୋଇ ନ ଥିବାରୁ ଦାଢ଼ି ବଢ଼ି ରୂପକୁ ଆହୁରି ବିକୃତ କରିଦେଇଛି । ଲୁଗାପଟା ସବୁ ଅତି ମଇଳା । ଶୁଖିଲା ପଙ୍କୁଆ ପୋଖରୀରେ ପଙ୍କ ଫୁଟିଲା ପରି ଲାଲମୋହନ ବାବୁଙ୍କ ମୁହଁରେ ହସ ଦେଖା ଯାଉଛି ।

କୁମୁଦିନୀ ବାହାରେ ଥାଇ କହିଲେ, "ଏହିପରି ଦେଖାହେବ, ନା ମୁଁ ଭିତରକୁ ଯାଇ ପାରିବି ? ଲାଲମୋହନ ବାବୁ ଫେରି ପଡି ଜେଲ

କର୍ମଚାରୀଙ୍କୁ କହିଲେ, "ଦେଖନ୍ତୁ, ଆଉ ଦୁଇଦିନ ମୋର ପରମାୟୁ । ସେ ବିଚାରୀ ଥରେ ଭିତରକୁ ଆସୁ । ଶେଷଥର ପାଇଁ ବସି ଟିକେ ଆମେ ଦୁହେଁ କଥାବାର୍ତ୍ତା କରୁ—ଏଥିରେ କ୍ଷତି କଅଣ ହେବ ?" ଏତିକି ସେ ଏପରି କରୁଣ ଭାବରେ କହିଲେ ଯେ, କୁମୁଦିନୀ ଆଖିରୁ ଲୁହ ବୋହିଗଲା । ଏକଥା ଜେଲ କର୍ମଚାରୀଙ୍କୁ ମଧ୍ୟ ଲାଗିଲା । ସେ କୁମୁଦିନୀଙ୍କୁ ଭିତରକୁ ଆସିବାକୁ ଅନୁମତି ଦେଲେ । ଲୁଗାପଟା ସବୁ ତଲାସ କରି ତାଙ୍କୁ ସେହି ଘରକୁ ଆସିବାକୁ ଦିଆଗଲା । ଜଣେ ଜେଲ କର୍ମଚାରୀ ଚୌକୀ ଉପରେ ବସି ରହିଲେ ।

କୁମୁଦିନୀଙ୍କୁ ନିକଟରେ ଦେଖି ଲାଲମୋହନ ବାବୁ ତାଙ୍କ କାନ୍ଧରେ ହାତ ପକାଇ ଦେଇ କହିଲେ, "ବସ ଏଇଠି । ଏଠି ବନ୍ଧନ କେହି କାହାକୁ ଦିଅନ୍ତି ନାହିଁ ।" ଦୁହେଁଯାକ ବସି ପଡ଼ିଲେ । ଲାଲମୋହନବାବୁ ବ୍ୟଗ୍ର ହୋଇ ପଚାରିଲେ, "ଏ ପିଲାଟି କିଏ ? ତୁମର ନାରୀରକ୍ଷା କାମ ଭିତରେ ଏଇଟିକୁ କେଉଁଠୁ ପାଇଛ କି କଅଣ ? ମୋର ତ ସବୁ ଖବର ଶୁଣିଥିବ, ଏଣିକି ତୁମର ସମସ୍ୟା ନଷ୍ଟ କରିବାକୁ ଆଉ କେହି ନାହିଁ । ବର୍ତ୍ତମାନ ତୁମେ ଏକ ମନରେ ନାରୀରକ୍ଷା କାମରେ ଲାଗ । ଆଉ ସବୁ ତୁମର ଖବର କଅଣ କହ । ମୁଁ ତ ଏ କେତେମାସ ଭିତରେ କିଛି ଖବର କାହାରି ରଖିନାହିଁ । ଆଜି ସବୁ ଶୁଣି ଯୋଗୁଁରେ ତୋର ଦେବ । ପୁଣି ନୂଆ ଯା କିଛି ହେବାର ହବ ।" ଏତିକି କହୁ କହୁ ଲାଲମୋହନବାବୁଙ୍କ ଆଖି ଛଳ ଛଳ ହୋଇ ଆସିଲା । କୁମୁଦିନୀଙ୍କ ଆଖିରୁ ମଧ୍ୟ ଲୁହ ଗଳି ଆସିଲା । ସେ ଏକ ଧ୍ୟାନରେ ଲାଲମୋହନବାବୁଙ୍କ ମୁହଁକୁ ଅନାଇଥାନ୍ତି । ଯେତେବେଳେ ସେ କଥା କହୁଥାନ୍ତି, ଶିଶୁଟି ଲାଲମୋହନବାବୁଙ୍କ ହାତ ଦେଖାଇ କୁମୁଦିନୀଙ୍କ ଅଡ଼କୁ ଚାହିଁ 'ହେଇ' 'ହେଇ' କହି ତାହା ଭାଷାରେ ସେ କ'ଣ ପଚାରୁଥାଏ । ଲାଲମୋହନ ବାବୁ ପିଲାଟିର ଚିବୁକରେ ହାତମାରି ଗେଲ କଲେ । ପିଲାଟି କିରି କିରି ହୋଇ ହସି ଉଠିଲା । କୁମୁଦିନୀ ପିଲାଟିକୁ ଲାଲମୋହନଙ୍କ ଆଡ଼କୁ ବଢ଼ାଇ ଦେଲେ । ଲାଲମୋହନବାବୁ ପିଲାଟିକୁ ହାତକୁ ନେଇ ପୁଣି ପଚାରିଲେ, ଏହାକୁ କେଉଁଠୁ ପାଇଲ ।"

କୁମୁଦନୀ ମୁହଁ ତଳକୁ କରି କହିଲେ—"ଏଇଟିକୁ ମୁଁ ତୁମକୁ ଉପହାର ଦେବା ପାଇଁ ଆଣିଛି । କଣାମଣି ପଠାଇଛି । ଲାଲମୋହନବାବୁ ବିସ୍ମିତ ହୋଇ ଚାହିଁଲେ । ଟିକିଏ ନୀରବ ରହି କହିଲେ, "କଣାମଣି ପଠାଇଛି ?

କୁମୁଦନୀ ଗମ୍ଭୀର ଭାବରେ କହିଲେ,"ହଁ, ସେ କହିଛି ଏ ତୁମର ।" ଲାଲମୋହନ ବାବୁ ଆହୁରି ବିସ୍ମିତ ହୋଇ କହିଲେ, କଣ ସବୁ କଥା ଶୀଘ୍ର କହ ।" କୁମୁଦନୀ ଟିକିଏ ହସି ଦେଇ କହିଲେ, "ଏ ପରା ତୁମର ପୁଅ ।"

ଲାଲମୋହନବାବୁ ପିଲାଟି ଆଡ଼କୁ ଚାହିଁ, ଅସ୍ପଷ୍ଟ ଭାବରେ କହିଲେ, "ଏ ମଧ୍ୟରେ ପ୍ରାୟ ବର୍ଷେ ହୋଇଗଲାଣି । ମୋତେ ନିଦରୁ ଉଠିଲା ପରି ଜଣା ପଡୁଛି ।" ତାପରେ ଉଚ୍ଚସ୍ୱରରେ କହିଲେ, "କଅଣ ସବୁ କଥା କହ । ଡେରି କର ନାହିଁ । ମୋତେ ଭାରି ଅସ୍ଥିର ବୋଧ ହେଉଛି ।"

ତା ପରେ କୁମୁଦନୀ କଣାମଣିକୁ କପରି ଘରୁ ଆଣିଲେ ଓ କପରି ସନ୍ତାନର ଜନ୍ମ ହେଲା ଏ ସମସ୍ତ କହିଲେ ।

ଗମ୍ଭୀର ହୋଇ ସବୁ ଶୁଣି ଲାଲମୋହନ ବାବୁ ବ୍ୟସ୍ତ ହୋଇ ପଚାରିଲେ, "ସେ ଆସି ତୁମ ପାଖରେ ଥିଲା, ତାକୁ ସାଙ୍ଗରେ ଆଣିଲ ନାହିଁ ? ମୁଁ ଟିକିଏ ଦେଖିଥାଆନ୍ତି ।"

"ସେ ଆଗରୁ ଗଲାଣି ତୁମପାଇଁ ସବୁ ବନ୍ଦୋବସ୍ତ କରି ଦେବା ପାଇଁ ।" ଏତିକି କହି କୁମୁଦନୀ ମୁହଁରେ ଲୁଗା ଦେଇଦେଲେ ।

ଲାଲମୋହନବାବୁ ବ୍ୟସ୍ତ ହୋଇ କହିଲେ, "କାନ୍ଦୁଛ କାହିଁକି ? ଆଜି ମୁଁ କାହାରି କାନ୍ଦଣା ଦେଖିବା ପାଇଁ ଚାହେଁ ନାହିଁ । ଏହି କେତେଟା ମୁହୂର୍ତ୍ତ ଯେତେ ଆନନ୍ଦ ଅଛି ସବୁ ମୋତେ ଦେଇଦଅ ।

ଫାଶୀ କାଠରେ ଛିଡ଼ା ହେବା ପୂର୍ବରୁ ମୋ ମନରେ ଯେପରି ବିନ୍ଦୁଏ ମାତ୍ର ଦୁଃଖ ନ ଥାଏ । କଅଣ ସବୁ ଆନନ୍ଦ ମତେ ଦିଅ ।"

କୁମୁଦିନୀ ରହି ରହି ସମସ୍ତ ଶବରଣୀ କହିଲେ । ଲାଲମୋହନବାବୁ ନୀରବ ହୋଇ ତଳକୁ ଚାହିଁଥାନ୍ତି । ତାଙ୍କ ଅଜାଣତରେ ଆଖିରୁ ଲୁହ ବହି ଯାଉଥାଏ । ତାଙ୍କର କାନ୍ଦିବା ଦେଖି କୁମୁଦିନୀ ମଧ୍ୟ ଲୁହ ଗଡ଼ାଇଲେ ।

ଲାଲମୋହନବାବୁ ଧୀରେ ଧୀରେ କହିଲେ, "ଆଜୀବନ ଉପେକ୍ଷାର ଯଥୋଚିତ ଶାସ୍ତି ସେ ମୋତେ ଦେଇଗଲା ।" ମୃତ୍ୟୁ ପୂର୍ବରୁ ଏହି କେତେଦିନ ସେ ଈଶ୍ୱର ଉପେକ୍ଷା ପାଇଁ ଅନୁତାପ କଲେ । "ମୁଁ ଦୋଷଟାକୁ ଛାଡ଼ାଇ ପାରିବ ? ନାଁ, ନାଁ—ସେ ଦୋଷ ରହିଲା ମୋ ମୁଣ୍ଡ ଉପରେ । ମଲା ପରେ ସୁଦ୍ଧା ମୋ ପଛରେ ଧାଇଁବ, କୁମୁଦିନୀ । ଦେଖୁଛ ତ ? ମୁଁ କେତେ ନିଷ୍ଠୁର, ମୋର ହୃଦୟ କେତେ କଠିନ ? ତୁମର ଭାଗ୍ୟ ଯେ, ତୁମେ ଏ ପାପାଣର ପାଲରୁ ରକ୍ଷା ପାଇଗଲ । ମୁଁ ଭାବୁଥିଲି କଅଣ ଦେଶପାଇଁ, ମୁଁ ମୋର ନର୍ବୋତ୍ତ ଜୀବନ ଦାନ କଲି ବୋଲି । ବର୍ତ୍ତମାନ ମୁଁ ଭାବୁଛି ଏ ନିଷ୍ଠୁରର ଏକମାତ୍ର ନ୍ୟାଯ୍ୟ ଶାସ୍ତି ଫାଶୀ । କଅଣ କହୁଛ କୁମୁଦିନୀ ? ମୃତ୍ୟୁଦଣ୍ଡ ମୋତେ ଉପଯୁକ୍ତ ହୋଇନାହିଁ ?"

କୁମୁଦିନୀ ବାଧା ଦେଇ କହିଲେ, 'ଆଉ କାହିଁକି ସେ କଥା ଚିନ୍ତା କରୁଛ ? ବର୍ତ୍ତମାନ ମନକୁ ପ୍ରସନ୍ନ ରଖ । ଜୀବନର ଭଲ ମନ୍ଦ ସବୁ ଯାହା ହେବାର ହୋଇଯାଇଛି ।" ଏଣିକି— —

ଲାଲମୋହନ ବାବୁ ବାଧା ଦେଇ କହିଲେ,"ହଁ, ଯାହା କହିଲ ଠିକ୍ । ଏଣିକି ଟିକେଟ୍ କାଟି ସାରି ପ୍ଲାଟଫର୍ମରେ ରେଳଗାଡ଼ିକୁ ଅନାଇ ବସିବାର କଥା । କିନ୍ତୁ ନିଶାମଣିକୁ ଯେ ଗୃହଆଡ଼େ ଦେଖୁଛି ।

"ଏହି ଦେଖ, ହାହାକାର ସେ ମୋର ଦେଶ ସେବାକୁ ପରିହାସ କରୁଛି ।" ଏତକି କହି ସେ ଉପରକୁ ଚାହିଁ ରହିଲେ । କୁମୁଦିନୀ ଶିଶୁଟିକୁ ଦେଖାଇ ଦେଇ କହିଲେ,"ଏ ପରି ତୁମର ଆଶୀର୍ବାଦ ମାଗୁଛି ।"

ଲଲମୋହନ ବାବୁ ଶିଶୁଟି ଆଡ଼କୁ ଗୃହିଁ ଦେଇ କହିଲେ, "ମୁଁ ଏହାକୁ କ ଆଶୀର୍ବାଦ ଦେବ ? ଏହାକୁ ମୁଁ ତୁମକୁ ଦେଇ ଦେଉଛି ।" ତୁମେ ଯାହା କହିବ । ମୁଁ ଜାଣେ ତୁମେ ମୋ ସହିତ ବିବାହରେ କାହିଁକି ରାଜି ହୋଇଥିଲ ? ତୁମେ ଗୃହିଁଥିଲ ମାତୃତ୍ୱ । ବର୍ତ୍ତମାନ ସେହି ମାତୃତ୍ୱ ତୁମକୁ ଅର୍ପଣ କରୁଛି ।"

ଏହା ଶୁଣି କୁମୁଦିନୀଙ୍କ କୋହ ଉଠିଲା । ସେ କାନ୍ଦି ପକାଇଲେ । ଲଲମୋହନବାବୁ ଶିଶୁକୁ ଚୁମ୍ବନଟିଏ ଦେଇ କୁମୁଦିନୀଙ୍କ ହାତକୁ ବଢ଼ାଇ ଦେଇ କହିଲେ, "ଏହି ରହିଲା, ମୋର ନିଶାମଣିର ପ୍ରତିନିଧି ।"

କୁମୁଦିନୀ ଧୀରେ ଧୀରେ ଶିଶୁଟିକୁ ହାତକୁ ନେଇ କହିଲେ, "ଏହାକୁ ନେଇ ମୁଁ ଦିବ୍ୟସିଂହ ବାବୁଙ୍କ ଆଶ୍ରମରେ ରହିବି । ତୁମର ପଦ ଚିହ୍ନ ଅନୁସରଣ କରି ଜୀବନର ଶେଷ ପର୍ଯ୍ୟନ୍ତ ଯିବି ।"

ଲଲମୋହନବାବୁ ଉପରକୁ ଗୃହିଁ କହିଲେ, "ନିଶାମଣି ଭାଗ୍ୟବତୀ, ସେ ଗୃଲିଗଲା । ଦୁନିଆରେ ମୋତେ ଦୋଷୀ ସାବ୍ୟସ୍ତ କରିଗଲା ।"

କୁମୁଦିନୀ ଲକ୍ଷ୍ୟ କରୁଥାଆନ୍ତି ଯେ, ଲଲମୋହନଙ୍କର ଆଖି ନିଷ୍ପଲ ହୋଇ ରହିଛି । ସେ ଟିକିଏ ଉଚ୍ଚ ସ୍ୱରରେ କହିଲେ, "ଏହି ଶିଶୁକୁ ଦେଖି ସବୁ ଦୁଃଖ ଭୁଲିବାକୁ ହେବ । ମୋର ସମସ୍ତ ଜୀବନ ଏହି ଶିଶୁଟି ପାଖରେ ଥିଜାଡ଼ି ଦେଇ ଏହାକୁ ତୁମର ଦାନ ବୋଲି ମନେ କରି ମୁଁ ମୋର ଜୀବନ ସାର୍ଥକ କରିବି । ଆଉ ଏ ଜୀବନରେ କୌଣସି ଅଭିଳାଷ ନାହିଁ । ସେହି ଦିବ୍ୟସିଂହ ବାବୁଙ୍କ ଆଶ୍ରମକୁ ଯାଇ ଜନସେବା ଓ ଏ ଶିଶୁଟିର ଲଳନ ପାଳନରେ ଲଗିବି । କୁମୁଦିନୀ ଭାବିଥିଲେ ଯେ, ସେ ଲଲମୋହନ ବାବୁଙ୍କ ମନକୁ ଫେରାଇ ଆଣି କଥାବାର୍ତ୍ତାରେ ଲଗାଇବେ । କେତେ ଆଶା କରି ସାକ୍ଷାତ ଲୋଡ଼ିଥିଲେ । ଶେଷ ସାକ୍ଷାତ ହୁଇ ଗୃରିପଦ ମନଖୁସି କଥା-ବାର୍ତ୍ତା ହେବାର ସେ ଆଶା କରିଥିଲେ । ମାତ୍ର ଲଲମୋହନବାବୁଙ୍କ ମୁହଁ ଧୀରେ ଧୀରେ ବେଶୀ ଶୁଖିଲା ଦେଖାଗଲା । ସେ ଆଖି ତଳକୁ କରି ଥରେ ଶିଶୁଟିକୁ ଅନାଇଲେ । ପୁଣି କୁମୁଦିନୀଙ୍କ ଆଡ଼କୁ ଅନାଇଲେ । ତା'ପରେ

ଅନ୍ୟମନସ୍କ ଭାବରେ କହିଲେ,"ଉଁ, କଅଣ କହିଲ ?" ଦିବ୍ୟସିଂହ ବାବୁଙ୍କ ଆଶ୍ରମ, ହିଁ ସେହିଠାରେ ରହି । ସେ ବଡ଼ ଖାଣ୍ଟି ଲୋକ ।

କିନ୍ତୁ କିନ୍ତୁ ମୁଁ, ମୁଁ—ମୁଁ ଯେ ଅପରାଧୀ । ହତ୍ୟା ଅଭିଯୋଗରେ ଅପରାଧୀ—ମୁଁ ଯେ ନିଶାମଣିକୁ ହତ୍ୟା କରିଛି ।" ଏତିକି କହି ଚମକି ପଡିଲେ । ତାପରେ 'କଅଣ ହେଲା' 'କଅଣ ହେଲା' କହି ଜେଲ କର୍ମଗୃହୀ ଚୌକିରୁ ଉଠି ଆସିଲେ । କୁମୁଦିନୀ ଡର ଡର ହୋଇ ଲଲମୋହନ ବାବୁଙ୍କ ପାଖରୁ ଘୁଞ୍ଚି ଗଲେ । କିନ୍ତୁ ଜେଲ କର୍ମଗୃହୀ ତର୍ଜନ ଗର୍ଜନ କରି କୁମୁଦିନୀଙ୍କୁ ଶୀଘ୍ର ବାହାରକୁ ଚାଲିଯିବାପାଇଁ କହିଲେ ।

କୁମୁଦିନୀ କାନ୍ଦି କାନ୍ଦି ଲଲମୋହନଂ ବାବୁଙ୍କ ମୁଣ୍ଡକୁ ଧୀରେ ଧୀରେ ଉଠାଇବାକୁ ଯିବାବେଳେ ଜେଲ କର୍ମଗୃହୀ ତାଙ୍କୁ ଜୋରରେ ଧକ୍କାଟାଏ ମାରି ଶୀଘ୍ର ଚାଲିଯିବାକୁ କହିଲେ । ଶିଶୁଟି ଅବା ବକା ହୋଇ ଥରେ ଲଲମୋହନ ବାବୁଙ୍କୁ ଥରେ କୁମୁଦିନୀଙ୍କୁ ଅନାଇ ହୁଁ, ହୁଁ କରି ତା'ର ବିସ୍ମୟ ବ୍ୟକ୍ତ କରୁଥାଏ ।

—ଶେଷ—

କଟକ ନବଭାରତ ପ୍ରେସରେ ଶ୍ରୀ ବନମାଳୀ ମିଶ୍ରଙ୍କ ଦ୍ୱାରା ମୁଦ୍ରିତ ।
୧୯୪୭